# ରାଜ୍ୟ ସରକାରଙ୍କ ୪ର୍ଥ ଥର ଶାସନ ଦାୟିତ୍ୱ ଗ୍ରହଣ କରିବାର ଦୁଇବର୍ଷ ପୂର୍ତ୍ତି ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଅଭିଭାଷଣ

ଦୁଇ ବର୍ଷ ପୂର୍ବେ ଆଜିର ଦିନରେ ଆମ ଦଳର ନିର୍ବାଚନ ଇସ୍ତାହାରକୁ ଅନୁମୋଦନ କରି ଆମର ପ୍ରଶାସନିକ ଆଭିମୁଖ୍ୟକୁ ପ୍ରାଥମିକତା ଦେବା ପାଇଁ ଏକ ଐତିହାସିକ ନିଷ୍ପତ୍ତି ନେଇଥିଲୁ । ମୁଁ ବହୁତ ଖୁସି ଯେ ଗତ ଦୁଇବର୍ଷ ମଧ୍ୟରେ ଲୋକଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ ଦିଗରେ ଆମେ ଯଥେଷ୍ଟ ଅଗ୍ରଗତି କରିଛୁ ।

ସମାଜର ସବୁ ବର୍ଗର ଲୋକଙ୍କ ଆଶା ଆକାଂକ୍ଷା ପୂରଣ କରିବା ଦିଗରେ ଆମେ ସଫଳତାର ସହ କାମ କରିଚାଲିଛୁ । କୃଷକ, ମହିଳା, ଯୁବବର୍ଗ ଏବଂ ବିଭିନ୍ନ ଅବହେଳିତ ବର୍ଗର ମୌଳିକ ଆବଶ୍ୟକତା ପୂରଣ କରିବା ହେଉଛି ଆମର ପ୍ରାଥମିକତା । ଆଗାମୀ ଦିନରେ ମୁଁ ବିଭିନ୍ନ ବିଭାଗର କାର୍ଯ୍ୟ ସମୀକ୍ଷା କରିବି ।

ଆମ ସଫଳତାର କେତେକ କ୍ଷେତ୍ର ହେଉଛି –

- ସଫଳତାର ସହିତ ନବକଳେବର କାର୍ଯ୍ୟ ସମ୍ପାଦନ ।
- ୧୦ ଲକ୍ଷ କଚ୍ଚା ଘରକୁ ପକ୍କା ଘର କରି ଅନ୍ୟ ରାଜ୍ୟମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିବା ।
- ୧୨୦ ଲକ୍ଷ ଟନ୍ ଶସ୍ୟ ଅମଳ କରି ୪ ଥର କୃଷିକର୍ମଣ ପୁରସ୍କାର ପାଇବା ।
- ଜାତୀୟ ଖାଦ୍ୟ ସୁରକ୍ଷା ଆଇନ୍ କାର୍ଯ୍ୟକାରୀ କରି ୭୯.୫୯ ଲକ୍ଷ ପରିବାରକୁ ଖାଦ୍ୟ ସୁରକ୍ଷା ଯୋଗାଇ ଦେବା ।
- ୧୦୦ଟି ସ୍ଥାନରେ ଆହାର ଯୋଜନାରେ ଲୋକଙ୍କୁ ସୁଲଭ ଖାଦ୍ୟ ଯୋଗାଇ ଦେବା ।
- ନିରାମୟ ଯୋଜନାରେ ଲୋକଙ୍କୁ ମାଗଣାରେ ଔଷଧ ଯୋଗାଣ ଏବଂ ୬ଟି ମେଡିକାଲ କଲେଜ ସ୍ଥାପନ ।
- ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ପାଇଁ ଅନ୍ୱେଷା କାର୍ଯ୍ୟକ୍ରମ ଜରିଆରେ ଉତ୍ତମ ଶିକ୍ଷା ପ୍ରଦାନ ।
- ପଶ୍ଚିମ ଓଡ଼ିଶାରେ ଯୋଗାଯୋଗ ବ୍ୟବସ୍ଥାର ଉନ୍ନତି ପାଇଁ ୩୬୦୦ କୋଟି ଟଙ୍କା ବିନିଯୋଗରେ ୬୫୦ କିଲୋମିଟର ବିଜୁ ଏକ୍ସପ୍ରେସ୍ ୱେ ନିର୍ମାଣ ଆରମ୍ଭ ।
- ୩ଟି ନୂଆ ସରକାରୀ ବିଶ୍ୱବିଦ୍ୟାଳୟ ସ୍ଥାପନ ।
- କେବିକେ ଅଞ୍ଚଳରେ ମେଗା ଲିଫ୍ଟ ଜଳସେଚନ ପ୍ରକଳ୍ପ ସ୍ଥାପନ ।
- ପାରାଦ୍ୱୀପରେ ପେଟ୍ରୋ କେମିକାଲ କମ୍ପ୍ଲେକ୍ସ ସ୍ଥାପନ ଏବଂ କଳିଙ୍ଗ ନଗର ପ୍ରକଳ୍ପର ଆରମ୍ଭ ।
- ଇଜ୍–ଅଫ୍–ଡୁଇଙ୍ଗ ବିଜିନେସ୍‌ରେ ବିଭିନ୍ନ ସଂସ୍ଥା ଦ୍ୱାରା ଓଡ଼ିଶାକୁ ଉଚ୍ଚ ସ୍ଥାନ ପ୍ରଦାନ । ଆଇ.ପି.ଆର. ୨୦୧୫ ଆମର ଶିଳ୍ପାୟନ ପ୍ରକ୍ରିୟାକୁ ଦ୍ରୁତ ଗତିରେ ଆଗେଇ ନେବ ।
- ଆନ୍ତର୍ଜାତିକ ସ୍ତରର ଦକ୍ଷତା ବିକାଶ ଏବଂ ନିଯୁକ୍ତି ସୁଯୋଗ ସୃଷ୍ଟି ପାଇଁ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ନିଯୁକ୍ତ।
- ଜଙ୍ଗଲ ଅଧିକାର ଆଇନ କାର୍ଯ୍ୟକାରୀ କରିବାରେ ଓଡ଼ିଶା ସାରା ଦେଶରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛି ।
- ମମତା ଯୋଜନାରେ ୨୦ ଲକ୍ଷ ମହିଳା ଉପକୃତ ହୋଇଛନ୍ତି ।

ଓଡ଼ିଶାକୁ କେନ୍ଦ୍ରୀୟ ପାଣ୍ଠି କମିବା ଏବଂ ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟ ସମ୍ମୁଖୀନ ହେବା ସତ୍ତ୍ୱେ ଆମେ ଏହିସବୁ ସଫଳତା ହାସଲ କରିପାରିଛୁ । ମୁଁ ଜାଣିଛି ଆମର ଆହୁରି ସଫଳତା ରହିଛି । ଆଗାମୀ ସମୀକ୍ଷା ବୈଠକରେ ମୁଁ ଆପଣମାନଙ୍କ ପାଖରୁ ଏହିସବୁ ଶୁଣିବାକୁ ପାଇବି ବୋଲି ଆଶା କରୁଛି ।

ଲୋକଙ୍କ ଅଭିଯୋଗ ଶୁଣାଣି ଉପରେ ଆମକୁ ଆହୁରି କିଛି ପଦକ୍ଷେପ ନେବାକୁ ଅଛି । ଏ କ୍ଷେତ୍ରରେ ପ୍ରଯୁକ୍ତି ବିଦ୍ୟାର ବ୍ୟବହାର ଠିକ୍ ଭାବରେ ହେବା ଉଚିତ । ପ୍ରଶାସନର ସମସ୍ତ କ୍ଷେତ୍ରରେ ସୋସିଆଲ ମିଡିଆର ବ୍ୟବହାର ବଢ଼ିବା ଆବଶ୍ୟକ । ଡିଜିଟାଲ ଫାଇଲ ଜରିଆରେ ଆମ ୮୦ ପ୍ରତିଶତ ଅଫିସକୁ କାଗଜ ବିହୀନ କରିପାରିଛୁ । ଆଗାମୀ ୩ ମାସରେ ଏହାକୁ ଶତପ୍ରତିଶତ କରିବା ପାଇଁ ଚେଷ୍ଟା କରିବା ଉଚିତ୍ । ପ୍ରଶାସନରେ ସ୍ୱଚ୍ଛତା ପାଇଁ ଅଧିକ ଉଦ୍ୟମର ଆବଶ୍ୟକତା ରହିଛି ।

ଆମର ଓଡ଼ିଆ ଭାଷା ଏକ ଅତି ସୁନ୍ଦର ଶାସ୍ତ୍ରୀୟ ଭାଷା । ଏହାର ପ୍ରଚାର ପ୍ରସାର ପାଇଁ ମୋ ସରକାର ପ୍ରତିଶ୍ରୁତିବଦ୍ଧ । ଏଥିପାଇଁ ଆଜି ଆମର କେତେକ ନିଷ୍ପତ୍ତି ହେଲା –

- ୨୦୧୬ ଅଗଷ୍ଟ ୧୫ ସୁଦ୍ଧା ସଂଶୋଧିତ ଓଡ଼ିଶା ସରକାରୀ ଭାଷା ଅଧିନିୟମ ୧୯୫୪ କାର୍ଯ୍ୟକାରୀ କରାଯିବ ।
- ଓଡ଼ିଆ ଭାଷା ଓ ସାହିତ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯିବ ।
- ଓଡ଼ିଆ ଭର୍ଚ୍ୟୁଆଲ ଏକାଡେମୀ ମଧ୍ୟ ଖୁବ୍ ଶୀଘ୍ର ପ୍ରତିଷ୍ଠା କରାଯିବ ।
- ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଖାଲି ଥିବା ଓଡ଼ିଆ ଅଧ୍ୟାପକ ପଦବୀ ପୂରଣକୁ ପ୍ରାଥମିକତା ପ୍ରଦାନ ।
- ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ଓ ଫକୀର ମୋହନ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ଭାଷା ସ୍କୁଲ ପ୍ରତିଷ୍ଠା କରାଯାଉଛି ଏବଂ ଓଡ଼ିଆ ପ୍ରଫେସର ଓ ଅନ୍ୟାନ୍ୟ ଶିକ୍ଷକ ପଦବୀ ସୃଷ୍ଟି ପାଇଁ ସରକାରୀ ବିଜ୍ଞପ୍ତି ପ୍ରକାଶ କରାଯାଇଛି ।
- ଓଡ଼ିଆ ଭାଷାରେ ବ୍ୟାସକବି ଫକୀର ମୋହନ ସେନାପତି ବୃତ୍ତି ଆରମ୍ଭ କରାଯାଇଛି ।
- ଜବାହରଲାଲ ନେହରୁ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଚେୟାର ପ୍ରତିଷ୍ଠା ।
- ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ବ୍ୟାପକ ଗବେଷଣା ଓ ପ୍ରକାଶନ ।
- ଓଡ଼ିଆ ଭାଷା ପ୍ରତିଷ୍ଠାନ ଦ୍ୱାରା ନୂଆ ଓଡ଼ିଶା ପ୍ରଶାସନିକ ଶବ୍ଦକୋଷ ପ୍ରକାଶନ କରାଯିବ ।

ମହାପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ଓଡ଼ିଶାର ଆତ୍ମା । ଓଡ଼ିଆ ଭାଷା ଓ ସାହିତ୍ୟ ହେଉଛି ଓଡ଼ିଶାର ହୃଦୟ । ଓଡ଼ିଶାର ଉଚ୍ଚ ସାଂସ୍କୃତିକ ଐତିହ୍ୟର ରକ୍ଷଣାବେକ୍ଷଣ ଓ ଉନ୍ନତି ପାଇଁ ମୋ ସରକାର ସମ୍ପୂର୍ଣ୍ଣଭାବେ ପ୍ରତିଶ୍ରୁତିବଦ୍ଧ ।

୧୯୯୯ ମହାବାତ୍ୟାରେ ଭୁବନେଶ୍ୱର ସମ୍ପୂର୍ଣ୍ଣ ବିଧ୍ୱସ୍ତ ହୋଇଯାଇଥିଲା । ଆଜି ୧୫ ବର୍ଷ ଭିତରେ ସାରା ଦେଶର ଏକ ନମ୍ବର ସ୍ମାର୍ଟ ସିଟି ଭାବରେ ଯୋଗ୍ୟ ବିବେଚିତ ହୋଇଛି । ଏହା ହେଉଛି ସେହି ପରିବର୍ତ୍ତନ, ଯାହା ପାଇଁ ଲୋକମାନେ ଆମ ଉପରେ ବିଶ୍ୱାସ ରଖିଛନ୍ତି । ଆମ ଗାଁ, ଆମ ସହର, କୃଷି ସହିତ ଯୁବକ, ମହିଳା ଓ ଆଦିବାସୀ ବର୍ଗର ସବୁ କ୍ଷେତ୍ର ଓ ସବୁ ବର୍ଗର ପରିବର୍ତ୍ତନ ଜାରି ରହିଛି, ଯାହାକି ଆମକୁ ଏକ ସଶକ୍ତ ଓଡ଼ିଶା ଗଠନ ଦିଗରେ ଆଗେଇ ନେଉଛି ।

ଓଡ଼ିଶାର ଜନସାଧାରଣ ଆମକୁ ବରାବର ଆଶୀର୍ବାଦ ଦେଇଆସିଛନ୍ତି । ଗଣତନ୍ତ୍ରରେ ଲୋକଙ୍କ ଆଶା ଭରସାର ସବୁଠାରୁ ବଡ଼ ପରୀକ୍ଷା ହେଉଛି ନିର୍ବାଚନ । ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି ଯେ ଆପଣମାନେ ଲୋକଙ୍କ ସ୍ୱାର୍ଥ ପାଇଁ ନିର୍ଭୟରେ କାମ କରନ୍ତୁ । ଓଡ଼ିଶାର ଲୋକମାନେ ହେଉଛନ୍ତି ଆମ ପାଇଁ ସବୁକିଛି ଏବଂ ଲୋକଙ୍କ ସ୍ୱାର୍ଥ ପାଇଁ ନିଆଯାଉଥିବା ସବୁ ନିଷ୍ପତ୍ତିକୁ ମୁଁ ସବୁବେଳେ ସମର୍ଥନ କରିବି ।

ଆମେ ସ୍ଲୋଗାନ ନୁହେଁ, କେବଳ ପ୍ରକୃତ କାର୍ଯ୍ୟରେ ହିଁ ବିଶ୍ୱାସ କରୁ ।



## ସଫଳତାର ସହିତ ସମ୍ପନ୍ନ

# ନୂତନ ସହସ୍ରାବ୍ଦର ପ୍ରଥମ ନବକଳେବର

**ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଲୌକିକ ଲୀଳାଖେଳା ବଡ ବିଚିତ୍ରମୟ । ଏହା ମଧ୍ୟରେ ନବକଳେବର ଅନ୍ୟତମ । ନୂତନ ସହସ୍ରାବ୍ଦର ପ୍ରଥମ ନବକଳେବର ୨୦୧୫ ମସିହାରେ ଅତି ଆନନ୍ଦ ମୁଖର ତଥା ଭକ୍ତିପୂର୍ଣ୍ଣ ପରିବେଶ ମଧ୍ୟରେ ଅନୁଷ୍ଠିତ ହୋଇଯାଇଛି। ମହାପ୍ରଭୁଙ୍କର ଏହି ଦିବ୍ୟ ଦାରୁ ଲୀଳା ଦର୍ଶନାର୍ଥେ ଦେଶ ବିଦେଶରୁ ଅଗଣିତ ଭକ୍ତଗଣ ଶ୍ରୀକ୍ଷେତ୍ର ପୁରୀକୁ ଆଗମନ କରିଥିଲେ । ସେମାନଙ୍କ ସୁବିଧା ନିମନ୍ତେ ଓଡିଶା ସରକାରଙ୍କ ତରଫରୁ ବର୍ଷବ୍ୟାପୀ ପ୍ରସ୍ତୁତି କରାଯାଇଥିଲା । ନବକଳେବର ଓ ରଥଯାତ୍ରା ପୂର୍ବରୁ ବ୍ୟାପକ ଭିତ୍ତିଭୂମି ବିକାଶ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ଲକ୍ଷଲକ୍ଷ ଦର୍ଶନାର୍ଥୀଙ୍କ ନିମନ୍ତେ ସମସ୍ତ ପ୍ରକାର ମୌଳିକ ସେବା ଯୋଗାଇ ଦିଆଯାଇଥିଲା । ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ ପକ୍ଷରୁ ଗ୍ରହଣ କରାଯାଇଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ସଂପର୍କରେ ଏଠାରେ ସଂକ୍ଷିପ୍ତ ସୂଚନା ଦିଆଗଲା ।**





- ୨୯ କୋଟି ୩୩ ଲକ୍ଷ ୭୫ ହଜାର ୭୪୬ ଟଙ୍କା ବ୍ୟୟରେ ଜାତୀୟ ରାଜପଥ ୨୦୩ ମାଳତୀପାଟପୁରଠାରୁ କୋଣାର୍କ-ପୁରୀ ଜାତୀୟ ରାଜପଥ ୨୦୩ (କ) ସହିତ ସଂଯୋଗ କରୁଥିବା ନବକଳେବର ରାସ୍ତା-୨ ନିର୍ମାଣ ।
- ୬୩ କୋଟି ୮୭ ଲକ୍ଷ ୮୧ ହଜାର ୫୧ ଟଙ୍କା ବ୍ୟୟରେ ମାଳତୀପାଟପୁରକୁ ପୁରୀ-କୋଣାର୍କ ସହିତ ସଂଯୋଗ କରୁଥିବା କାଂଚିନାଳ ଉପରେ ସୁଦୀର୍ଘ ଓଭର୍‌ବ୍ରିଜ୍ ନିର୍ମାଣ ।
- ୮ କୋଟି ୬୭ ଲକ୍ଷ ୪୯ ହଜାର ୫୭୫ ଟଙ୍କା ବ୍ୟୟରେ ପୁରୁଣା ଜାତୀୟ ରାଜପଥ ୨୦୩ର ବାଟଗାଁରୁ ମେଡିକାଲ୍ ଛକ ପର୍ଯ୍ୟନ୍ତ ଓ ସମଜାଜପୁରଠାରୁ ତୁଳସୀ ଚଉରା ପର୍ଯ୍ୟନ୍ତ ରାସ୍ତାର ଉନ୍ନତିକରଣ ଏବଂ ଅଠରନଳା ନିକଟରେ କଲଭର୍ଟ ନିର୍ମାଣ ।
- ୧୭ କୋଟି ଟଙ୍କା ବ୍ୟୟରେ ଗୋପ-ବାଲିଘାଇ ରାସ୍ତାର ନେତପୁର ନିକଟରେ କୁଶଭଦ୍ରା ନଦୀ ଉପରେ ହାଇ-ଲେଭଲ୍ ବ୍ରିଜ୍ ନିର୍ମାଣ ।
- ୧.୫ କୋଟି ଟଙ୍କା ବ୍ୟୟରେ ବୀରହରେକୃଷ୍ଣପୁରଠାରୁ ବାଲିଗୁଆଳି ପର୍ଯ୍ୟନ୍ତ ରାସ୍ତା ନିର୍ମାଣ ଓ ପ୍ରାୟ ୩୫ ଲକ୍ଷ ଟଙ୍କା ବ୍ୟୟରେ ସ୍ୱର୍ଗଦ୍ୱାରଠାରୁ ପ୍ରାଚୀ ଛକ ପର୍ଯ୍ୟନ୍ତ ରାସ୍ତାର ପୁନଃନିର୍ମାଣ । ଏଥିସହ ଶ୍ରୀକ୍ଷେତ୍ରରେ ୫୯ଟି ସିମେଣ୍ଟ କଂକ୍ରିଟ୍ ରାସ୍ତା ନିର୍ମାଣ ।

- ୭୩.୫ କୋଟି ଟଙ୍କା ବ୍ୟୟରେ ମାଳତୀପାଟପୁରଠାରେ ଏକ ନୂତନ ବସ୍‌ଷ୍ଟାଣ୍ଡ ନିର୍ମାଣ ସହ ଯାତ୍ରୀମାନଙ୍କ ନିମନ୍ତେ ସମସ୍ତ ଆବଶ୍ୟକୀୟ ସୁବିଧା ସୁଯୋଗ ଉପଲବ୍ଧ ।
- ୧୭.୬୪ କୋଟି ଟଙ୍କା ବ୍ୟୟରେ ପୁରୀ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପରିସରରେ ୭ ମହଲା ବିଶିଷ୍ଟ ଅତିରିକ୍ତ ୧୦୦ ଶଯ୍ୟା ଏବଂ ଅତ୍ୟାଧୁନିକ ଚିକିତ୍ସା ସୁବିଧା ସହ ମାତୃ ଓ ଶିଶୁ ଚିକିତ୍ସାଳୟ କାର୍ଯ୍ୟକ୍ଷମ ।
- ୬.୫୮ କୋଟି ଟଙ୍କା ବ୍ୟୟରେ ଯକ୍ଷ୍ମା ଓ ସଂକ୍ରାମକ ରୋଗ ଚିକିତ୍ସାଳୟ ପରିସରରେ ଅତିରିକ୍ତ ୨୦୦ ଶଯ୍ୟା ବିଶିଷ୍ଟ ଚିକିତ୍ସାଳୟ କାର୍ଯ୍ୟକ୍ଷମ । ୬.୧୨ କୋଟି ଟଙ୍କା ବ୍ୟୟରେ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟରେ ୨୦୦ ଅତିରିକ୍ତ ଶଯ୍ୟା ରହିଥିବା ୩ ମହଲା ବିଶିଷ୍ଟ ଚିକିତ୍ସାଳୟ, ୧୩୦ରୁ ଅଧିକ ଆଶୁ ଚିକିତ୍ସାଳୟ ସହ ପୁରୀ ପୌରାଞ୍ଚଳରେ ୪ ଟି ପ୍ରାଥମିକ ଚିକିତ୍ସା କେନ୍ଦ୍ର ପ୍ରତିଷ୍ଠା ।
- ୬ କୋଟି ୨୯ ଲକ୍ଷ ୮ ହଜାର ଟଙ୍କା ବ୍ୟୟରେ ବାଙ୍କୀ ମୁହାଣସ୍ଥିତ ଜଳ ବିଶୋଧନ ପ୍ରକଳ୍ପର ପୁନରୁଦ୍ଧାର । ଏତଦ୍‌ବ୍ୟତୀତ, ଜଳ ନିଷ୍କାସନ ନିମନ୍ତେ ବିଭିନ୍ନ ଡ୍ରେନ୍ ନିର୍ମାଣ ବାବଦରେ ୧୯ କୋଟି ୧୩ ଲକ୍ଷ ୮୨ ହଜାର ଟଙ୍କା ବ୍ୟୟ କରାଯାଇଛି ।
- ପୁରୀର ବାଇଦାସ୍ ନଗରଠାରୁ ମାଳତୀପାଟପୁର ଆଡକୁ ଏବଂ ବାଟଗାଁ ଭାୟା ମଙ୍ଗଳାହାଟ ଦେଇ ହୋଟେଲ୍ ଷ୍ଟର୍ଲିଂ ରୋଡ୍ ପର୍ଯ୍ୟନ୍ତ ୧.୧୯ କୋଟି ଟଙ୍କା ବ୍ୟୟରେ ୧୧ କେଭି ଲାଇନ୍ ଆଲୋକୀକରଣ ବ୍ୟବସ୍ଥା । ୮୮ ଲକ୍ଷ ଟଙ୍କା ବ୍ୟୟରେ ବଡଦାଣ୍ଡରେ ଅତ୍ୟୁଚ୍ଚ ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା ।
- ୩୦ଟି ପ୍ରମୁଖ ପାର୍କିଂ ସ୍ଥଳୀରେ ୪ କୋଟି ୯ ଲକ୍ଷ ଟଙ୍କା ବ୍ୟୟରେ ଏଲ୍.ଇ.ଡି ଆଲୋକ ସହ ହାଇମାକ୍ସ ଟାୱାର୍ ସ୍ଥାପନ । ବାଟଗାଁଠାରୁ ମଙ୍ଗଳାହାଟ ଦେଇ ଯାଇଥିବା ସଡକରେ ୭୩ କୋଟି ଟଙ୍କା ଏବଂ ସମୁଦ୍ରକୂଳ, ଚକ୍ରତୀର୍ଥ ରୋଡ୍ ଓ ଭିଆଇପି ରୋଡ୍‌ରେ ୩.୭୧ କୋଟି ଟଙ୍କା ବ୍ୟୟରେ ଏଲ୍.ଇ.ଡି ଆଲୋକ ବ୍ୟବସ୍ଥା ।
- ୨୦.୭୧ କୋଟି ଟଙ୍କା ବ୍ୟୟରେ ୧୩୨/୩୩ କେଭି ଗ୍ରୀଡ୍ ସବ୍‌ଷ୍ଟେସନ୍, ଶାମୁକା ବ୍ରହ୍ମଗିରି ଓ ଆବଶ୍ୟକ ସ୍ଥଳେ ପୁରୀକୁ ନିର୍ଭରଯୋଗ୍ୟ ବିଦ୍ୟୁତ୍ ସରବରାହ ବ୍ୟବସ୍ଥା ।
- ୧ କୋଟି ୭୮ ଲକ୍ଷ ଟଙ୍କା ବ୍ୟୟରେ ନିମାପଡା ଗ୍ରୀଡ୍‌ର ୧୩୨/୩୩ କେଭି ଲାଇନ୍ ସହ ସମଗରା ଗ୍ରୀଡ୍‌କୁ ସଂଯୁକ୍ତ କରାଯାଇ ସମଗ୍ର ପୁରୀ ଓ ଆଖପାଖ ଅଞ୍ଚଳକୁ ନିରବଚ୍ଛିନ୍ନ ବିଦ୍ୟୁତ୍ ଯୋଗାଣ ବ୍ୟବସ୍ଥା ।
- ୧ କୋଟି ୫୮ ଲକ୍ଷ ଟଙ୍କା ବ୍ୟୟରେ ଅଲାରନାଥ ମନ୍ଦିର ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ରାସ୍ତା ଆଲୋକୀକରଣ ।
- ୧୯୮.୫୮ ଲକ୍ଷ ଟଙ୍କା ବ୍ୟୟରେ କାକଟପୁରସ୍ଥିତ ଦେଉଳି ମଠର ଉନ୍ନତିକରଣ, ୩.୫ କୋଟି ଟଙ୍କା ବ୍ୟୟରେ ନବକଳେବରରେ ଯାତ୍ରୀମାନଙ୍କ ରହଣି ସୁବିଧା ନିମନ୍ତେ ଆଶ୍ରୟସ୍ଥଳ ନିର୍ମାଣ, ୧ କୋଟି ୬୭ ଲକ୍ଷ ୧ ହଜାର ଟଙ୍କା ବ୍ୟୟରେ ପୁରୀରେ ଶୌଚାଳୟ ନିର୍ମାଣ, ୩ କୋଟି ଟଙ୍କା ବ୍ୟୟରେ ବ୍ରହ୍ମଗିରିଠାରେ ଅଲାରନାଥ ମନ୍ଦିର ଓ ପରିସରର ଉନ୍ନତିକରଣ, ୩୧୫.୧୨ ଲକ୍ଷ ଟଙ୍କା ବିନିଯୋଗରେ ପଟ୍ଟନାୟିକିଆଠାରେ ରାସ୍ତାପାର୍ଶ୍ୱ ପର୍ଯ୍ୟଟକ ସୁବିଧା କେନ୍ଦ୍ର 'ଯାଯାବର' ନିର୍ମିତ, ୧.୩୨ ଲକ୍ଷ ଟଙ୍କା ବ୍ୟୟରେ ଅଠରନଳାର ଉନ୍ନତିକରଣ କରାଯାଇଛି । ଏତଦ୍‌ବ୍ୟତୀତ ୨୬.୫୨ ଲକ୍ଷ ଟଙ୍କା ବ୍ୟୟରେ ପୁରୀର ପବିତ୍ର ପୁଷ୍କରିଣୀଗୁଡିକର ଉନ୍ନତିକରଣ, ୩୫.୯୭ ଲକ୍ଷ ଟଙ୍କା ବ୍ୟୟରେ ବଡଦାଣ୍ଡର ଉଭୟ ପାର୍ଶ୍ୱରେ ରହିଥିବା କୋଠାର ସୌନ୍ଦର୍ଯ୍ୟକରଣ, ୬.୫ ଲକ୍ଷ ଟଙ୍କା ବ୍ୟୟରେ ୧୫ଟି ପର୍ଯ୍ୟଟକ ସୂଚନା କେନ୍ଦ୍ର ସହ ନବକଳେବର ରଥଯାତ୍ରା ସଂପର୍କରେ ବିଶ୍ୱବାସୀଙ୍କୁ ସୂଚନା ଦେବା ଉଦ୍ଦେଶ୍ୟରେ ସୋସିଆଲ୍ ମିଡିଆ, ଫେସ୍‌ବୁକ୍ ଓ ଟ୍ୱିଟର୍ ବାବଦରେ ୨୯ ଲକ୍ଷ ୪ ହଜାର ୬୯୮ ଟଙ୍କା ବ୍ୟୟ କରାଯାଇଛି ।



### ଗତ ପାଞ୍ଚ ବର୍ଷରେ ଚାରିଥର ଜାତୀୟ କୃଷି କର୍ମଣ ପୁରସ୍କାରଃ ଶ୍ରେୟ ଓଡ଼ିଶାର କୃଷକମାନଙ୍କର

# କୃଷି ଓ କୃଷକଙ୍କ ସଶକ୍ତିକରଣ ସରକାରଙ୍କ ପ୍ରାଥମିକତା

- ଏହି ବର୍ଷଠୁ ବିହନ ରିହାତି ଅର୍ଥ କୃଷକମାନଙ୍କ ଖାତାରେ ସିଧାସଳଖ ଜମା କରାଯିବ ।
- ବିଜୁ କୃଷକ କଲ୍ୟାଣ ଯୋଜନାରେ ୧ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ମାଗଣା ଚିକିତ୍ସା ପ୍ରଦାନ ବ୍ୟବସ୍ଥାଃ ୫୭ ଲକ୍ଷ ୬୦ ହଜାର ୬୦୫ କୃଷକ ପରିବାର ବୀମାଭୁକ୍ତ ।
- ଗ୍ରାମପଞ୍ଚାୟତମାନଙ୍କରେ ସାମୂହିକ ଗୋଷ୍ଠୀ ଖଳା ନିର୍ମାଣ ଯୋଜନା : ୨୩୪୮ଟି ସମ୍ପୂର୍ଣ୍ଣ ହୋଇଥିବା ବେଳେ ୭୦୦୦ଟି ଖଳା ନିମନ୍ତେ ଲକ୍ଷ୍ୟଧାର୍ଯ୍ୟ ।
- ୧ ଲକ୍ଷ ୯୪ ହଜାର ୩୧୨ ହେକ୍ଟର ଜମିରେ କ୍ଷେତ୍ର ପ୍ରଦର୍ଶନ ଆୟୋଜନ ସହ ୩୫ ହଜାର ଡ଼ିଜେଲ ପମ୍ପସେଟ୍, ୬ ହଜାର ୫୦୦ ଧାନ ଅମଳ ଯନ୍ତ୍ର ଓ ୭୫୦ଟି ଟ୍ରାନ୍ସପ୍ଲାଣ୍ଟର ରିହାତି ଦରରେ ଯୋଗାଣ ।
- ୨୨ ଲକ୍ଷରୁ ଊର୍ଦ୍ଧ୍ୱ କୃଷକଙ୍କୁ ଏସଏମଏସ୍ ମାଧମରେ ଚାଷ ସମ୍ପର୍କୀୟ ତଥ୍ୟ ଓ ପରାମର୍ଶ ପ୍ରଦାନ ।
- ଉଦ୍ୟାନ କୃଷି ଉଦ୍ୟୋଗୀଙ୍କୁ ଜାତୀୟ ଉଦ୍ୟାନ କୃଷି ମିଶନ ସହାୟତା ରାଶି ଉପରେ ୨୦% ଅତିରିକ୍ତ ସହାୟତା ବ୍ୟବସ୍ଥା ।
- ଆଳୁ ଉତ୍ପାଦନରେ ସ୍ୱାବଲମ୍ବୀ ହେବା ଲକ୍ଷ୍ୟରେ ରାଜ୍ୟ ଆଳୁ ମିଶନ ଗଠିତ ।

କୃଷି କ୍ଷେତ୍ରକୁ ସର୍ବଦା ଅଗ୍ରାଧିକାର ଦେଇ ଆସୁଥିବା ରାଜ୍ୟ ସରକାର ଇତିମଧ୍ୟରେ ଏହି କ୍ଷେତ୍ରର ସର୍ବକାଳୀନ ବିକାଶ ପାଇଁ ଏକାଧିକ ନୀତିଗତ ପରିବର୍ତ୍ତନ ଆଣିଛନ୍ତି । ଗତ ୪ ବର୍ଷ ଧରି କୃଷି ପାଇଁ ସ୍ୱତନ୍ତ୍ର ବଜେଟ ପ୍ରସ୍ତୁତ କରାଯିବା ସହିତ ଚଳିତ ବର୍ଷ ପ୍ରଥମଥର ପାଇଁ କୃଷି କ୍ୟାବିନେଟ୍ ଗଠିତ ହୋଇଛି । କୃଷି ବିଭାଗ "କୃଷି ଓ କୃଷକ ସଶକ୍ତିକରଣ ବିଭାଗ" ନାମରେ ନାମିତ ହୋଇଛି । ଓଡ଼ିଶାର ଅର୍ଥନୀତିର ପ୍ରମୁଖ ଆଧାର ତଥା ପ୍ରାୟ ୬୦ ଶତାଂଶ ଲୋକଙ୍କର ଜୀବିକାର୍ଜନର ମୁଖ୍ୟ ଉତ୍ସ କୃଷିକୁ ରାଜ୍ୟର ବିକାଶ ଏଜେଣ୍ଡାରେ ସଦାସର୍ବଦା ଶୀର୍ଷରେ ରଖାଯାଇଛି । ମରୁଡ଼ି ତଥା ଅନ୍ୟାନ୍ୟ ବିପର୍ଯ୍ୟୟ ଏବଂ ବିଭିନ୍ନ ପ୍ରତିବନ୍ଧକକୁ ପ୍ରତିହତ





କରି ଓଡ଼ିଶାର ଚାଷୀକୁଳ ରାଜ୍ୟର କୃଷି ବିକାଶରେ ମନପ୍ରାଣ ଦେଇଛନ୍ତି ଓ ବର୍ଷ ପରେ ବର୍ଷ ଉତ୍ପାଦନ ବଢ଼ାଇ ଚାଲିଛନ୍ତି । ଚାଷୀଭାଇମାନେ ଖାଦ୍ୟଶସ୍ୟ ଉତ୍ପାଦନରେ ଉଲ୍ଲେଖନୀୟ ସଫଳତା ଆଣି ଗତ ୫ ବର୍ଷରେ ରାଜ୍ୟ ପାଇଁ ଆଣି ଦେଇଛନ୍ତି ଚାରି ଚାରି ଥର ଜାତୀୟ 'କୃଷି କର୍ମଣ ପୁରସ୍କାର' । ୨୦୧୪–୧୫ ମସିହାରେ ରେକର୍ଡ଼ ପରିମାଣର ୧୧୮ ଲକ୍ଷ ମେଟ୍ରିକ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ ହୋଇ ପାରିଥିଲା ବେଳେ ୨୦୧୫–୧୬ରେ ଏହି ପରିମାଣ ୧୨୦ ଲକ୍ଷ ମେଟ୍ରିକ୍ ଟନ୍‌କୁ ଟପିଛି ।

ବିଗତ ଦୁଇ ବର୍ଷ ମଧ୍ୟରେ ବିହନ ପ୍ରତିବଦଳ ହାର ୩୧.୪୫ ପ୍ରତିଶତରୁ ୩୭ ପ୍ରତିଶତକୁ ବୃଦ୍ଧି ପାଇଛି । ୭ ଲକ୍ଷ ୮୩ ହଜାର ମୃତ୍ତିକା ସ୍ୱାସ୍ଥ୍ୟ କାର୍ଡ଼ ବଣ୍ଟନ ସହ ୬ ଲକ୍ଷ ୨୮ ହଜାର ହେକ୍ଟର ଜମିରେ ମାଗଣା ବିହନ ବିଶୋଧନ କରାଯାଇଛି । ମୁଖ୍ୟମନ୍ତ୍ରୀଙ୍କ ମରୁଡ଼ି ପ୍ୟାକେଜ୍‌ରେ ୩ ଲକ୍ଷ ୫୪ ହଜାର ୭୭୫ ଡ଼ାଲି ମିନି କିଟ୍, ୯୯ ହଜାର ୫୦୦ ତୈଳବୀଜ ମିନି କିଟ୍ ଓ ୩୪ ହଜାର ୪୭୨ ପାଣି ପମ୍ପସେଟ୍ ଯୋଗାଇ ଦିଆଯାଇଛି । ଜାତୀୟ ଖାଦ୍ୟ ନିରାପତ୍ତା ମିଶନରେ ୧ ଲକ୍ଷ ହେକ୍ଟରରୁ ଊର୍ଦ୍ଧ୍ୱ ଜମିରେ କ୍ଷେତ୍ର ପରିଦର୍ଶନ, ୪୭ ହଜାର ୫୦୦ ସ୍ପ୍ରେୟର, ୧୬୦୦ ସ୍ପ୍ରିଂକ୍‌ଲର ସେଟ୍ ଓ ୧୦ ହଜାର ୭୭୦ ପାଣି ପମ୍ପସେଟ୍ ରିହାତି ଦରରେ ଯୋଗାଇ ଦିଆଯାଇଛି ।

'ଜଳନିଧି' ଯୋଜନାରେ କୃଷକମାନଙ୍କୁ ୫୦ ରୁ ୭୫ ପ୍ରତିଶତ ରିହାତି ଦିଆଯାଉଛି ।

କୃଷି ଯନ୍ତ୍ରପାତି ବ୍ୟବହାରରେ ଓଡ଼ିଶା ଆଗରେ ଅଛି । ରାଜ୍ୟ କୃଷି ନୀତି–୨୦୧୩ରେ ଏଥିପାଇଁ ବିଶେଷ ବ୍ୟବସ୍ଥା କରାଯାଇଥିବାରୁ ଏହା ଫଳପ୍ରଦ ହୋଇଛି । ୨୦୧୫–୧୬ ଆର୍ଥିକ ବର୍ଷରେ ରାଜ୍ୟ ସରକାର ନିଜସ୍ୱ ପାଣ୍ଠିରୁ ୨୫୫ କୋଟି ୬୬ ଲକ୍ଷ ଟଙ୍କା କୃଷି ଯନ୍ତ୍ରପାତିର ପ୍ରସାର ପାଇଁ ଦେଇଛନ୍ତି ।

# ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ପ୍ରଥମ ମେଗା ଲିଫ୍ଟ୍ ପଏଣ୍ଟ୍ ଲୋକାର୍ପିତ

## ୨୦୧୯ ସୁଦ୍ଧା ୧୦ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ଲକ୍ଷ୍ୟ

୨୦୧୯ ସୁଦ୍ଧା ୧୦ ଲକ୍ଷ ହେକ୍ଟର ଜମିକୁ ଅଧିକ ଜଳସେଚନ ସୁବିଧା ଯୋଗାଇ ଦେବାର ଲକ୍ଷ୍ୟକୁ କାର୍ଯ୍ୟକାରୀ କରିବା ପାଇଁ ଗତ ୨ ବର୍ଷ ମଧ୍ୟରେ ୩୩୪୫ କୋଟି ଟଙ୍କା ବ୍ୟୟରେ ୭୫ଟି ମେଗା ଉଠାଜଳସେଚନ ପ୍ରକଳ୍ପର କାର୍ଯ୍ୟ ଆରମ୍ଭ ହୋଇସାରିଛି ଏବଂ ଇତିମଧ୍ୟରେ ୩ ଲକ୍ଷ ହେକ୍ଟର ଚାଷ ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଛି ।



ଗତ ଫେବୃଆରୀ ୧୮ ତାରିଖରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ କଳାହାଣ୍ଡି ଜିଲ୍ଲା କେସିଙ୍ଗା ବ୍ଲକ୍ ଅନ୍ତର୍ଗତ ଉତ୍‌କେଲାଠାରେ ୨୬.୯୫ କୋଟି ଟଙ୍କାରେ ନିର୍ମିତ ଓ ବଲାଙ୍ଗୀର ଜିଲ୍ଲାର ଗୁଡ଼୍‌ଭେଲାଠାରେ ୧୩.୨୬ କୋଟି ଟଙ୍କା ବ୍ୟୟରେ ନିର୍ମିତ ୨ଟି ମେଗା ଉଠାଜଳସେଚନ ପ୍ରକଳ୍ପ ଉଦ୍‌ଘାଟନ କରିଛନ୍ତି । ୨୦୨୦ ସୁଦ୍ଧା ରାଜ୍ୟରେ ୧୭୫ଟି ମେଗା ଲିଫ୍ଟ ପଏଣ୍ଟ କାର୍ଯ୍ୟକାରୀ ହେବ ।

୨୦୧୫–୧୬ ଆର୍ଥିକ ବର୍ଷରେ ୧୯୩୬ଟି ଅଚଳ ଉଠା ଜଳସେଚନ ପ୍ରକଳ୍ପକୁ ସଚଳ କରାଯାଇଥିବା ବେଳେ ୨୬,୨୫୩ଟି ଗଭୀର ନଳକୂପ, ୨୧୪୪ଟି ଗୋଷ୍ଠୀ ଉଠାଜଳସେଚନ ପ୍ରକଳ୍ପ ହିତାଧିକାରୀମାନଙ୍କୁ ହସ୍ତାନ୍ତର କରାଯାଇଛି ।

ବିଗତ ୨ ବର୍ଷରେ ମୋଟ୍ ୩୪୪୬ଟି ଚେକ୍ ଡ୍ୟାମ୍ ନିର୍ମାଣ କରାଯାଇଛି । ରାଜ୍ୟର ୫ଟି ସହରର ପ୍ରାୟ ୬୪୫ଟି ସରକାରୀ–ବେସରକାରୀ କୋଠାରେ ବର୍ଷା ଜଳ ଅମଳ ପ୍ରକଳ୍ପ କାର୍ଯ୍ୟକାରୀ ହୋଇଛି ।

୯୩୬ଟି ଜଳାଶୟର ପୁନରୁଦ୍ଧାର ସାଙ୍ଗକୁ ୫୧ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର କେନାଲ ଲାଇନିଂ କାର୍ଯ୍ୟ ଅବ୍ୟାହତ ରହିଛି । ଆସନ୍ତା ୫ ବର୍ଷ ମଧ୍ୟରେ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ଜଳ ନିଷ୍କାସନ ନାଳୀର ଉନ୍ନତିକରଣ ପାଇଁ ୧୦୦୦ କୋଟି ଟଙ୍କା ବିନିଯୋଗ କରାଯିବ । ୨୦୧୫–୧୬ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମରେ ୧୫୨୦୦୦ ହେକ୍ଟର ଚାଷଜମି ଜଳପ୍ଲାବନରୁ ମୁକ୍ତ ହୋଇପାରିଛି । କୃଷିର ବିକାଶ ନିମନ୍ତେ ଜଳସେଚନ କ୍ଷେତ୍ରରେ ରାଜ୍ୟର ଉତ୍ସାହଜନକ ଅଗ୍ରଗତି ବିଭିନ୍ନ ମହଲରେ ପ୍ରଶଂସିତ ହୋଇଛି ।

୨୦୧୫–୧୬ରେ ଇନ୍ଦ୍ରାବତୀ ବୃହତ ଜଳସେଚନ ପ୍ରକଳ୍ପର ସମ୍ପ୍ରସାରଣ କରାଯାଇ ୪୫ଟି କ୍ଷୁଦ୍ର ଓ ୩ଟି ବୃହତ ଉଠାଜଳସେଚନ ପ୍ରକଳ୍ପ କାର୍ଯ୍ୟ ସମ୍ପନ୍ନ ହୋଇଥିବାରୁ ଜଳସେଚନ ସୁବିଧା ବ୍ୟାପକ ହୋଇଛି ।

# କ୍ୟାନସର୍ ରୋଗୀଙ୍କ ଚିକିତ୍ସା ପାଇଁ 'ନିରାମୟ' ଯୋଜନାରେ ମାଗଣା ଔଷଧ




- **ଏ ବର୍ଷ ପାଇଁ ଅଗଷ୍ଟ ୧ ସୁଦ୍ଧା ଔଷଧ ଏବଂ ନିଦାନ ସରଞ୍ଜାମ କିଣା ସରିବା ପାଇଁ ନିଷ୍ପତ୍ତି ।**
- **ଆଚାର୍ଯ୍ୟ ହରିହର ଆଞ୍ଚଳିକ କର୍କଟ କେନ୍ଦ୍ରରୁ ପରୀକ୍ଷାମୂଳକ ଭାବରେ ଆରମ୍ଭ କରାଯିବ ରୋଗୀଙ୍କ ପାଇଁ ମେଡ଼ିସିନ୍ ପାସବୁକ୍ ।**
- **ସମସ୍ତ ସ୍ୱାସ୍ଥ୍ୟକେନ୍ଦ୍ରରେ ସର୍ବନିମ୍ନ ସାଧାରଣ ପରୀକ୍ଷା ସୁବିଧା ପାଇଁ ଯୋଜନା, ରେଡ଼ିଓଲୋଜି ଏବଂ ପ୍ୟାଥୋଲାବ୍ ଉପଲବ୍ଧ ହେବ ସବୁ ସ୍ୱାସ୍ଥ୍ୟକେନ୍ଦ୍ରରେ ।**




କ୍ୟାନସର, ଥାଲାସେମିଆ ଓ ରକ୍ତଶିକୁଳୀ ପରି ଦୁରାରୋଗ୍ୟ ବ୍ୟାଧିର ଚିକିତ୍ସା ପାଇଁ ରାଜ୍ୟ ସରକାର ଏବେ 'ନିରାମୟ' ଯୋଜନାରେ ମାଗଣା ଔଷଧ ଯୋଗାଇ ଦେଇ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଏକ ନୂଆ ଅଧ୍ୟାୟ ସୃଷ୍ଟି କରିଛନ୍ତି ।

ଗତ ବର୍ଷ ଅପ୍ରେଲ ୨୮ ତାରିଖ ଦିନ ଓଡ଼ିଶା ରାଜ୍ୟ ଔଷଧ ନିଗମ ଓ 'ନିରାମୟ' ଯୋଜନାର ଶୁଭାରମ୍ଭ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ କହିଥିଲେ ଯେ ଔଷଧ ଅଭାବରୁ ରାଜ୍ୟରେ କୌଣସି ଲୋକଙ୍କୁ ମୃତ୍ୟୁ ମୁଖରେ ପଡ଼ିବାକୁ ଦିଆଯିବ ନାହିଁ । ପରେ ପରେ ମଇ ପହିଲା ଦିନ କ୍ୟାପିଟାଲ ହସ୍ପିଟାଲ୍‌ରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଏବଂ ଏସ୍.ସି.ବି.ମେଡ଼ିକାଲ କଲେଜ, କଟକରେ ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କ ଦ୍ୱାରା ଏହି ଯୋଜନାର ଉଦ୍‌ଘାଟନ କରାଯିବା ପରେ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟଗୁଡ଼ିକରେ ଜିଲ୍ଲା ଯୋଜନା କମିଟିର ଅଧ୍ୟକ୍ଷମାନେ ଏହି ଯୋଜନାର ଶୁଭାରମ୍ଭ କରିଥିଲେ ।

ଇତିମଧ୍ୟରେ ୩୨ଟି ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ, ୩ଟି ମେଡ଼ିକାଲ କଲେଜ, ୪ଟି ଆଞ୍ଚଳିକ ହସ୍ପିଟାଲ୍, ୨୭ଟି ସବ୍‌ଡ଼ିଭିଜନାଲ୍ ହସ୍ପିଟାଲ୍ ଏବଂ ୩୭୭ଟି ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରରେ ମୋଟ ୪୮୯ଟି 'ନିରାମୟ' ଔଷଧ ବିତରଣ କେନ୍ଦ୍ର କାର୍ଯ୍ୟକ୍ଷମ ହୋଇଛି ।

ଏହି ୪୮୯ଟି ଔଷଧ ବିତରଣ କେନ୍ଦ୍ର ମଧ୍ୟରୁ ୬୨ଟି କେନ୍ଦ୍ରରେ ଦିନରାତି ଜନସାଧାରଣଙ୍କୁ ଔଷଧ ବିତରଣ ସେବା ଯୋଗାଇ ଦିଆଯାଉଛି । କମ୍ପ୍ୟୁଟର ସହାୟତାରେ ଏହିସବୁ କେନ୍ଦ୍ରଗୁଡ଼ିକର କାର୍ଯ୍ୟଦକ୍ଷତା ନିୟମିତ ଭାବେ ମନିଟରିଂ କରାଯାଉଛି ।

ଗତ ଫେବୃଆରୀ ମାସରେ 'ନିରାମୟ' ଯୋଜନାର ପରିଚାଳନା ଦାୟିତ୍ୱ ନେଇଥିବା ଓଡ଼ିଶା ରାଜ୍ୟ ଔଷଧ ନିଗମ ଦ୍ୱାରା ସମସ୍ତ ଜିଲ୍ଲାରେ ଔଷଧ ବିତରଣ କେନ୍ଦ୍ରଗୁଡ଼ିକ ସଠିକ୍ ଭାବରେ ପରିଚାଳନା କରିବା ପାଇଁ ଆବଶ୍ୟକୀୟ ତାଲିମ ସମ୍ପୂର୍ଣ୍ଣ ପ୍ରଦାନ କରାଯାଇଛି । ବର୍ଷକ ଭିତରେ ରାଜ୍ୟର ପ୍ରାୟ ୬୦ ଲକ୍ଷରୁ ଊର୍ଦ୍ଧ୍ୱ ଲୋକ 'ନିରାମୟ' ଯୋଜନାରେ ମିଳୁଥିବା ୪୨୧ ପ୍ରକାରର ଔଷଧ ଦ୍ୱାରା ବହୁଳ ଭାବରେ ଉପକୃତ ହୋଇଛନ୍ତି ।

ରାଜ୍ୟବାସୀଙ୍କୁ ଉପଯୁକ୍ତ ମାନର ଔଷଧ ଯୋଗାଇ ଦେବା କ୍ଷେତ୍ରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ସରକାରଙ୍କ ଦ୍ୱାରା ପ୍ରତିବଦ୍ଧତାର ସହିତ ଆରମ୍ଭ କରାଯାଇଥିବା ଏକ ବଳିଷ୍ଠ ପଦକ୍ଷେପ । ସମଗ୍ର ଜାତୀୟ ଖୁସି ସୂଚକାଙ୍କ ବୃଦ୍ଧି ନିମନ୍ତେ ସ୍ୱାସ୍ଥ୍ୟସେବାର ଯଥେଷ୍ଟ ଭୂମିକା ଥିବାବେଳେ 'ନିରାମୟ' ରାଜ୍ୟବାସୀଙ୍କ ପାଇଁ ବେଶ୍ ଉପକାରୀ ସାବ୍ୟସ୍ତ ହୋଇଛି । ଦେଶର ଅନ୍ୟାନ୍ୟ ରାଜ୍ୟମାନେ 'ନିରାମୟ'ର ଏଭଳି ସଫଳତାକୁ ଭୂୟସୀ ପ୍ରଶଂସା କରିଛନ୍ତି । ଏହି ଯୋଜନା ଯେଭଳି ଯଥାଶୀଘ୍ର ସେହି ସଫଳତାର ସହିତ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ତରକୁ ସମ୍ପ୍ରସାରିତ ହୋଇ ରାଜ୍ୟବାସୀଙ୍କୁ ତୃଣମୂଳ ସ୍ତରରେ ଆବଶ୍ୟକତା ବେଳେ ଔଷଧ ଯୋଗାଣ କରାଯାଇପାରିବ ଏବେ ସେ ଦିଗରେ ତତ୍ପର ।

# ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ନିର୍ମାଣ ଶ୍ରମିକ ପେନ୍ସନ୍ ଯୋଜନାର ଶୁଭାରମ୍ଭ

- **ନିର୍ମାଣ ଶ୍ରମିକ ପରିବାରର ପିଲାମାନଙ୍କ ପାଇଁ ଏବେ ଷଷ୍ଠ ଶ୍ରେଣୀରୁ ଶିକ୍ଷା ସହାୟତା**
- **ପରିବର୍ଦ୍ଧିତ ହେଲା ଅନେକ ଗୁରୁତ୍ୱପୂର୍ଣ୍ଣ ସହାୟତା ରାଶି**



କୋଠାବାଡି ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକଙ୍କ ସୁରକ୍ଷା ଓ କଲ୍ୟାଣ ନିମନ୍ତେ ରାଜ୍ୟ ସରକାର ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଛନ୍ତି । ଓଡ଼ିଶା କୋଠାବାଡି ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକଙ୍କ କଲ୍ୟାଣ ନିମନ୍ତେ ଓଡ଼ିଶା ରାଜ୍ୟ ନିର୍ମାଣ ଶ୍ରମିକ ବୋର୍ଡ ଗଠନ କରାଯାଇଛି । ଶ୍ରମିକମାନଙ୍କ କଲ୍ୟାଣ ପାଇଁ ବିଭିନ୍ନ ଯୋଜନା ହାତକୁ ନିଆଯାଇଛି । ନିର୍ମାଣ ଶ୍ରମିକମାନଙ୍କ ପାଇଁ ୧ଲକ୍ଷ ୫୦ ହଜାର ଟଙ୍କାରେ ପକ୍କାଘର, ସେମାନଙ୍କ ପୁଅଝିଅଙ୍କ ପାଇଁ ବର୍ଦ୍ଧିତ ଏବଂ ସଂପ୍ରସାରିତ ଶିକ୍ଷା ସହାୟତା, ଯନ୍ତ୍ରପାତି ଓ ଉପକରଣ କିଣିବା ପାଇଁ ସହାୟତା, ସାଇକେଲ, ନିରାପତ୍ତା ଉପକରଣ ସହାୟତା, ବିବାହ ଓ

- **୩ ବର୍ଷ ଧରି ପଞ୍ଜିକୃତ ନିର୍ମାଣ ଶ୍ରମିକଙ୍କ ପାଇଁ ୧.୫୦ ଲକ୍ଷ ଟଙ୍କାର ୫୦ ହଜାର ପକ୍କାଘର, ଆରମ୍ଭ ହେଲା ନୂଆ 'ନିର୍ମାଣ ଶ୍ରମିକ ପକ୍କାଘର ଯୋଜନା'**
- **ପ୍ରସୂତିକାଳୀନ ସହାୟତା ରାଶି ୮ ହଜାରରୁ ୧୦ ହଜାରକୁ ବୃଦ୍ଧି**
- **ମଧୁବାବୁ ପେନ୍ସନ୍ ଯୋଜନା ଢାଞ୍ଚାରେ ଆରମ୍ଭ ହେଲା ନୂଆ ନିର୍ମାଣ ଶ୍ରମିକ ପେନ୍ସନ୍ ଯୋଜନା**
- **ଅଣସଂଗଠିତ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଶ୍ରମଜୀବୀଙ୍କ ପାଇଁ ୫ କୋଟି ଟଙ୍କାର ସହାୟତା ଘୋଷଣା**

ପ୍ରସୂତିକାଳୀନ ସହାୟତା, ଦକ୍ଷତା ଅଭିବୃଦ୍ଧି ପ୍ରଶିକ୍ଷଣ ନିମନ୍ତେ ଦୈନିକ ପ୍ରୋତ୍ସାହନ, ଚିକିତ୍ସା ସହାୟତା, ମୃତ୍ୟୁକାଳୀନ ଓ ଅନ୍ତ୍ୟେଷ୍ଟିକ୍ରିୟା ନିମନ୍ତେ ସହାୟତା ଏବଂ ଦୁର୍ଘଟଣାଜନିତ ସହାୟତାର ବ୍ୟବସ୍ଥା କରାଯାଇଛି ।

ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ ଅଧୀନରେ ପ୍ରାୟ ୧୫ ଲକ୍ଷ ଶ୍ରମିକଙ୍କୁ ପଞ୍ଜୀକୃତ କରାଯାଇଛି ଓ ପ୍ରାୟ ୩.୭୫ ଲକ୍ଷ ହିତାଧିକାରୀଙ୍କୁ ବିଭିନ୍ନ ସହାୟତା ଆକାରରେ ୧୫୦ କୋଟିରୁ ଅଧିକ ଟଙ୍କା ପ୍ରଦାନ କରାଯାଇଛି । ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ଓ କଲ୍ୟାଣ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିବା ବିଭିନ୍ନ ଶ୍ରମିକ ସଂଗଠନର କର୍ମକର୍ତ୍ତାଙ୍କୁ 'ବିଜୁ ଶ୍ରମିକ ବନ୍ଧୁ' ସମ୍ମାନ ପ୍ରଦାନ କରାଯାଉଛି । ୩ଟି ପୌରାଞ୍ଚଳରେ ନିର୍ମାଣ ଶ୍ରମିକଙ୍କ ପାଇଁ ବିଶ୍ରାମାଗାର ମଞ୍ଜୁର କରାଯାଇଛି ।

ବିକାଶ ପ୍ରକ୍ରିୟାରେ ଶ୍ରମିକମାନଙ୍କର ଅତୁଳନୀୟ ଅବଦାନକୁ ସ୍ୱୀକାର କରି ରାଜ୍ୟ ସରକାର ସେମାନଙ୍କ ସୁରକ୍ଷା ଓ କଲ୍ୟାଣ ନିମନ୍ତେ ବହୁବିଧ ପଦକ୍ଷେପ ଗ୍ରହଣ କରୁଛନ୍ତି । ଶିଶୁ ଶ୍ରମିକ ସମସ୍ୟାର ଉପଯୁକ୍ତ ମୁକାବିଲା ତଥା ଏହି ପ୍ରଥାକୁ ବନ୍ଦ କରିବା ପାଇଁ ସରକାର ସେମାନଙ୍କ ଉଦ୍ଧାର, ଶିକ୍ଷାଦାନ ଓ ଥଇଥାନ ପାଇଁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଅନ୍ୟ ରାଜ୍ୟଗୁଡ଼ିକୁ ଯାଉଥିବା ଶ୍ରମିକମାନଙ୍କ ସୁରକ୍ଷା ଓ କଲ୍ୟାଣ ନିମନ୍ତେ ୪ଟି ଜିଲ୍ଲାରେ ଦେଶାନ୍ତରୀ ଶ୍ରମିକ ପଞ୍ଜୀକରଣ ପ୍ରକଳ୍ପ କାର୍ଯ୍ୟକାରୀ ହୋଇଛି । ନିର୍ମାଣ ଶ୍ରମିକମାନଙ୍କ ନିମନ୍ତେ ଏକାଧିକ କଲ୍ୟାଣକାରୀ ଯୋଜନା ମାଧ୍ୟମରେ ସେମାନଙ୍କୁ ସାମାଜିକ–ଅର୍ଥନୈତିକ ମୁଖ୍ୟଧାରାରେ ସାମିଲ କରିବା ପାଇଁ ସରକାର ନିରନ୍ତର ଉଦ୍ୟମରତ ।

# ପର୍ଯ୍ୟାୟକ୍ରମେ ସବୁ ବ୍ଲକ୍‌କୁ ହେବ ସଂପ୍ରସାରଣ

**ଗ୍ରାମାଞ୍ଚଳରେ ଗୁଣାତ୍ମକ ଶିକ୍ଷା**

## ୨୦୧୬ ଶିକ୍ଷା ବର୍ଷରୁ ରାଜ୍ୟର ୧୦୦ଟି ବ୍ଲକ୍‌ରେ କାର୍ଯ୍ୟକ୍ଷମ ହେଲା 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ'

ଗ୍ରାମାଞ୍ଚଳ ଛାତ୍ରଛାତ୍ରୀମାନଙ୍କୁ ତାଙ୍କ ନିଜ ବ୍ଲକ୍‌ରେ ସିବିଏସ୍‌ଇ ମାଧ୍ୟମ ଗୁଣାତ୍ମକ ଶିକ୍ଷା ଯୋଗାଇ ଦେବା ପାଇଁ ଓଡ଼ିଶା ସରକାରଙ୍କର ଅଭିନବ ପଦକ୍ଷେପ ହେଉଛି 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ' ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଗତ ଅପ୍ରେଲ ୫ ତାରିଖ ଦିନ ପ୍ରଥମ ପର୍ଯ୍ୟାୟରେ ୧୪ଟି ଅନଗ୍ରସର ଶିକ୍ଷା ଜିଲ୍ଲାର ୧୦୦ଟି ବ୍ଲକ୍‌ରେ ଶହେଟି 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ' ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ଲୋକାର୍ପଣ

- **ପ୍ରତି ବ୍ଲକ୍‌ରେ ପ୍ରତିଷ୍ଠା ହେବ 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ' ।**
- **ସିବିଏସ୍‌ଇ ଢ଼ାଞ୍ଚାରେ ପାଠପଢ଼ା ସାଙ୍ଗକୁ ସଂଗୀତ, କମ୍ପ୍ୟୁଟର ଓ କ୍ରୀଡା ଦକ୍ଷତାର ବିକାଶ ।**
- **ପ୍ରତି ବର୍ଷ ଗୁଣାତ୍ମକ ଶିକ୍ଷାଲାଭ କରିବେ ୧.୭୫ ଲକ୍ଷରୁ ଅଧିକ ଛାତ୍ରଛାତ୍ରୀ ।**
- **ଛାତ୍ରାବାସ ସୁବିଧା, ମାଗଣା ସ୍କୁଲ ୟୁନିଫର୍ମ ଏବଂ ପାଠ୍ୟପୁସ୍ତକ ସହିତ ଉତ୍ତମ ପରିବେଶରେ ଯୋଗାଇ ଦିଆଯିବ ଏହି ଗୁଣାତ୍ମକ ଶିକ୍ଷା ।**

କରିଛନ୍ତି । ଚଳିତ ଶିକ୍ଷା ବର୍ଷରୁ ଏହି ବିଦ୍ୟାଳୟଗୁଡ଼ିକରେ ଷଷ୍ଠ, ସପ୍ତମ ଓ ଅଷ୍ଟମ ଶ୍ରେଣୀରେ ଶିକ୍ଷାଦାନ ଆରମ୍ଭ କରାଯାଇଛି । ଗ୍ରାମାଞ୍ଚଳ ଛାତ୍ରଛାତ୍ରୀଙ୍କୁ ମାଗଣାରେ ସିବିଏସ୍‌ଇ ମାଧ୍ୟମ ଗୁଣାତ୍ମକ ଶିକ୍ଷା ଯୋଗାଇଦେବା ନିମନ୍ତେ ଉଦ୍ଦିଷ୍ଟ ଆଦର୍ଶ ବିଦ୍ୟାଳୟରେ କେନ୍ଦ୍ରୀୟ ବିଦ୍ୟାଳୟ ଢାଞ୍ଚାରେ ପାଠପଢ଼ା ସହିତ ସଂଗୀତ ଓ କଳା ଶିକ୍ଷା, କମ୍ପ୍ୟୁଟର ଶିକ୍ଷା, କ୍ରୀଡା ଏବଂ ଅନ୍ୟାନ୍ୟ ଆକର୍ଷଣୀୟ ସୁବିଧାସୁଯୋଗ ରହିବ । ମାଗଣା ସ୍କୁଲ ୟୁନିଫର୍ମ ସହିତ ପାଠ୍ୟପୁସ୍ତକ, ବିଜ୍ଞାନ, ଗଣିତ ଓ ଇଂରାଜୀ ଶିକ୍ଷା ପ୍ରତି ଦିଆଯିବ ବିଶେଷ ଗୁରୁତ୍ୱ, ବିଦ୍ୟାଳୟ ପାଠ୍ୟକ୍ରମରେ ଓଡ଼ିଆ ରହିବ ଏକ ବାଧ୍ୟତାମୂଳକ ବିଷୟ ଭାବରେ । ଏହା ଫଳରେ ଗ୍ରାମାଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ମିଳିବ ପାଠପଢିବାର ପ୍ରକୃଷ୍ଟ ବାତାବରଣ ଏବଂ ଏଥିପାଇଁ ସେମାନଙ୍କ ପିତାମାତାଙ୍କୁ କୌଣସି ଅର୍ଥ ବ୍ୟୟ କରିବାକୁ ପଡିବ ନାହିଁ ।

ଚଳିତ ଶିକ୍ଷା ବର୍ଷରୁ 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ'ରେ ନାମ ଲେଖାଇବା ପାଇଁ ଆବେଦନ କରିଥିଲେ ୯୦ ହଜାର ଛାତ୍ରଛାତ୍ରୀ । ସେମାନଙ୍କ ମଧ୍ୟରୁ ପ୍ରବେଶିକା ପରୀକ୍ଷାରେ କୃତକାର୍ଯ୍ୟ ହୋଇ 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ'ରେ ନାମ ଲେଖାଇଛନ୍ତି ଗ୍ରାମାଞ୍ଚଳର ୨୪ ହଜାର ଛାତ୍ରଛାତ୍ରୀ । ପରବର୍ତ୍ତୀ ପର୍ଯ୍ୟାୟରେ ରାଜ୍ୟର ସବୁ ବ୍ଲକ୍‌ରେ ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା ହେବା ପରେ ପ୍ରତିବର୍ଷ ଗୁଣାତ୍ମକ ଶିକ୍ଷାଲାଭ କରିବାର ସୁଯୋଗ ପାଇବେ ୧ ଲକ୍ଷ ୭୫ ହଜାରରୁ ଅଧିକ ଗ୍ରାମାଞ୍ଚଳ ଛାତ୍ରଛାତ୍ରୀ ।

ଗ୍ରାମାଞ୍ଚଳ ଛାତ୍ରଛାତ୍ରୀମାନଙ୍କର ବୌଦ୍ଧିକ ବିକାଶ ଏବଂ ସୃଜନଶୀଳତାର ଉପଯୁକ୍ତ ପରିପ୍ରକାଶ ନିମନ୍ତେ ଆଦର୍ଶ ବିଦ୍ୟାଳୟ ଏକ ଅଭିନବ ପଦକ୍ଷେପ । ଭବିଷ୍ୟତ ନିର୍ମାଣ ନିମନ୍ତେ ସଶକ୍ତ ହେବାକୁ ଏହି ବିଦ୍ୟାଳୟ ପ୍ରେରଣା ଦେବ । ହଜାର ହଜାର ଗ୍ରାମୀଣ ଛାତ୍ରଛାତ୍ରୀ 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ'ର ପ୍ରାଙ୍ଗଣରୁ ଯୁଗୋପଯୋଗୀ ଶିକ୍ଷାଲାଭ କରି ଆଗକୁ ବଢ଼ିବେ । ସେମାନେ ପବ୍ଲିକ୍ ସ୍କୁଲ ପିଲାଙ୍କ ଭଳି ପିନ୍ଧିବେ, ପଢ଼ିବେ ଓ ବଢ଼ିବେ, ନିଜ ପିତାମାତାଙ୍କ ସ୍ୱପ୍ନ ସାର୍ଥକ କରିବେ । ସେଇଥିପାଇଁ ରାଜ୍ୟବାସୀଙ୍କୁ ଦେଇଥିବା ପ୍ରତିଶ୍ରୁତିର ପରିପୂରଣ କରି ଗ୍ରାମାଞ୍ଚଳରେ ଏହି ଗୁଣାତ୍ମକ ସିବିଏସ୍‌ଇ ମାଧ୍ୟମ ଅଭିନବ ବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା ଆରମ୍ଭ କରିଛନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ।

# ଅନ୍ୱେଷା : ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ଗୁଣାତ୍ମକ ଶିକ୍ଷାର ନୂତନ ପରିଭାଷା




- ଓଡ଼ିଶାର ୧୭ଟି ଜିଲ୍ଲାର ସହରାଞ୍ଚଳ ତଥା ଜିଲ୍ଲା ସଦର ମହକୁମାରେ ସ୍ଥାପିତ ଅଗ୍ରଣୀ ଘରୋଇ ଶିକ୍ଷାନୁଷ୍ଠାନରେ ପ୍ରତିବର୍ଷ ୫୦୦୦ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀମାନଙ୍କୁ ପ୍ରଥମ ଶ୍ରେଣୀରେ ନାମ ଲେଖା ।
- ଛାତ୍ରଛାତ୍ରୀ ପିଛା ସର୍ବାଧିକ ୨୫,୦୦୦/– ଟଙ୍କା ବାର୍ଷିକ ସ୍କୁଲ୍ ଫି ଆକାରରେ ରାଜ୍ୟ ସରକାର ସମ୍ପୃକ୍ତ ବିଦ୍ୟାଳୟମାନଙ୍କୁ ପ୍ରଦାନ କରିବେ ।
- ଛାତ୍ରଛାତ୍ରୀମାନଙ୍କୁ ମାଗଣାରେ ପୁସ୍ତକ, ପୋଷାକ ଓ ସ୍କୁଲ୍ ବସ୍ ସୁବିଧା ଯୋଗାଇ ଦିଆଯିବ ।
- ରାଜ୍ୟ ସରକାର ଏହି ପିଲାମାନଙ୍କୁ ସହରାଞ୍ଚଳ ଛାତ୍ରାବାସ ସୁବିଧା ଯୋଗାଇବା ସହ ରହିବା ଓ ଖାଇବା ଖର୍ଚ୍ଚ ବାବଦକୁ ଛାତ୍ରବୃତ୍ତି ପ୍ରଦାନ କରିବେ ।
- ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଗଠିତ ଏକ ଜିଲ୍ଲାସ୍ତରୀୟ କମିଟି ଦ୍ୱାରା ଘରୋଇ ଶିକ୍ଷାନୁଷ୍ଠାନର ଯୋଗ୍ୟତା ତଥା ଭିତ୍ତିଭୂମି ସୁବିଧାକୁ ଆଧାର କରି ଅଗ୍ରଣୀ ଘରୋଇ ବିଦ୍ୟାଳୟ ଚୟନ କରାଯିବ ।

# ଓଡ଼ିଶା ସରକାରଙ୍କ 'ଓଡ଼ିଶା ଶିକ୍ଷା ଋଣ ସୁଧ ରିହାତି ଯୋଜନା'



- ଚଳିତ ବର୍ଷଠାରୁ ଆର୍ଥିକ ଦୁର୍ବଳ ବର୍ଗର ଛାତ୍ରଛାତ୍ରୀଙ୍କୁ ପ୍ରାଣକୃଷ୍ଣ ପରିଜା ଛାତ୍ରବୃତ୍ତି ।
- ଓଡ଼ିଆରେ ୯୦ରୁ ଅଧିକ ନମ୍ବର ରଖିଲେ ଫକୀର ମୋହନ ବୃତ୍ତି ଓ ସିଭିଲ ସର୍ଭିସ ପ୍ରିଲିମିନାରୀରେ କୃତକାର୍ଯ୍ୟ ହେଲେ କୋଚିଂ ଓ ସହାୟତା ପ୍ରଦାନ ।
- ଅନାଥ ଛାତ୍ରଛାତ୍ରୀଙ୍କୁ ଉଚ୍ଚଶିକ୍ଷା ସୁଯୋଗ ଦେବା ପାଇଁ ସେମାନଙ୍କୁ + ୨ରୁ ସ୍ନାତକୋତ୍ତର ପର୍ଯ୍ୟନ୍ତ ମାଗଣା ଶିକ୍ଷାଦାନ ।

**ଉଚ୍ଚ ଶିକ୍ଷାର ଅଭିବୃଦ୍ଧି ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ**

- ➢ **୮ଟି ଜିଲ୍ଲାରେ ନୂଆ ମଡେଲ୍ ଡିଗ୍ରୀ କଲେଜ**
- ➢ **୨୦୦୦୦ ଛାତ୍ରୀଙ୍କ ଆବାସିକ ସୁବିଧା ପାଇଁ ହଷ୍ଟେଲ ନିର୍ମାଣ**
- ➢ **ଅନାଥ ଛାତ୍ରଛାତ୍ରୀଙ୍କୁ ଯୁକ୍ତ ୨ରୁ ପିଜି ଯାଏଁ ମାଗଣା ଶିକ୍ଷାଦାନ**

- ଶିକ୍ଷାଋଣ କ୍ଷେତ୍ରରେ ଛାତ୍ରମାନଙ୍କୁ ୪ ଓ ଛାତ୍ରୀମାନଙ୍କୁ ୬ ପ୍ରତିଶତ ରିହାତି ମିଳିବ ।
- ଫକୀର ମୋହନ ବିଶ୍ୱବିଦ୍ୟାଳୟରେ ଉର୍ଦ୍ଦୁ ଓ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟରେ ସାନ୍ତାଳୀ ବିଷୟରେ ଶିକ୍ଷାଦାନ ସାଙ୍ଗକୁ ସେଠାରେ ସ୍କୁଲ ଅଫ୍ ଲାଙ୍ଗୁଏଜ୍ ପ୍ରତିଷ୍ଠା ହେବ ।
- ଚଳିତ ବର୍ଷ ବିଶ୍ୱବିଦ୍ୟାଳୟ ଓ କଲେଜ ଛାତ୍ରୀମାନଙ୍କ ରହିବା ପାଇଁ ୨୦ ହଜାର ଶଯ୍ୟା ବିଶିଷ୍ଟ ହଷ୍ଟେଲ୍ ନିର୍ମାଣ କରାଯିବ ।
- 'ବିଜୁ ଯୁବ ସଶକ୍ତିକରଣ ଯୋଜନା'ରେ + ୨ ଉତ୍ତୀର୍ଣ୍ଣ ୧୫ ହଜାର ଛାତ୍ରଛାତ୍ରୀଙ୍କୁ ପ୍ରତିବର୍ଷ ମାଗଣାରେ ଲାପ୍‌ଟପ୍ ଦିଆଯାଇଛି । ମହାବିଦ୍ୟାଳୟର ଛାତ୍ରୀମାନଙ୍କୁ ଆତ୍ମରକ୍ଷା କୌଶଳ ତାଲିମ ପ୍ରଦାନ କରାଯାଇଛି ।
- ଗତ ଶିକ୍ଷା ବର୍ଷରେ ୨୪ ହଜାରରୁ ଉର୍ଦ୍ଧ୍ୱ ଛାତ୍ରଛାତ୍ରୀଙ୍କୁ ବୃତ୍ତି ଆକାରରେ ୨୨କୋଟିରୁ ଅଧିକ ଟଙ୍କା ପ୍ରଦାନ କରାଯାଇଛି ।
- ପରୀକ୍ଷା ପଦ୍ଧତିର ପୁନର୍ବିନ୍ୟାସ କରାଯାଇ ଅଧିକ ସ୍ୱଚ୍ଛତା ନିମନ୍ତେ ଉଦ୍ୟମ ହୋଇଛି ।
- ଇତିମଧ୍ୟରେ ରମାଦେବୀ ମହିଳା ମହାବିଦ୍ୟାଳୟ(ଭୁବନେଶ୍ୱର), ଖଲ୍ଲିକୋଟ ମହାବିଦ୍ୟାଳୟ (ଗଞ୍ଜାମ), ଗଙ୍ଗାଧର ମେହେର ମହାବିଦ୍ୟାଳୟ (ସମ୍ବଲପୁର)କୁ ବିଶ୍ୱବିଦ୍ୟାଳୟର ମାନ୍ୟତା ଦିଆଯାଇଛି ।

## ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ

- ♦ ୧୦ ହଜାର ଛାତ୍ରଛାତ୍ରୀଙ୍କୁ ପ୍ରତିବର୍ଷ ମିଳୁଛି ଛାତ୍ରବୃତ୍ତି ।
- ♦ ପ୍ରଥମ ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ସବୁ ଛାତ୍ରଛାତ୍ରୀଙ୍କୁ ମାଗଣା ପାଠ୍ୟପୁସ୍ତକ ।
- ♦ ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ଛାତ୍ରଙ୍କ ବ୍ୟତୀତ ସମସ୍ତଙ୍କ ପାଇଁ ମାଗଣା ପୋଷାକ ।

- ବାଳିକା ଶିକ୍ଷା ପ୍ରତି ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଇ ରାଜ୍ୟରେ ଖୋଲାଯାଇଛି ୧୮୨ଟି କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ ଏବଂ ୧୮୨୦୦ ଛାତ୍ରଛାତ୍ରୀଙ୍କୁ ଦିଆଯାଉଛି ଆବାସିକ ଶିକ୍ଷା ।



- ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଯୋଗୁଁ ରକ୍ଷା କରାଯାଇପାରୁଛି ଲିଙ୍ଗଗତ ସମାନତା ଏବଂ ବିଦ୍ୟାଳୟରେ ଉପସ୍ଥାନ ।
- ମାଗଣା ସାଇକେଲ ଯୋଗାଣ କାର୍ଯ୍ୟକ୍ରମରେ ଉପକୃତ ହୋଇଛନ୍ତି ୫,୪୦,୦୧୨ ଛାତ୍ରଛାତ୍ରୀ ।
- ଏଣିକି ନବମ ଶ୍ରେଣୀର ଛାତ୍ରଛାତ୍ରୀଙ୍କୁ ଏହି କାର୍ଯ୍ୟକ୍ରମରେ ସାମିଲ କରାଯାଇ ୧୦,୭୬,୯୨୪ ସ୍କୁଲ ପିଲାଙ୍କୁ ଯୋଗାଇ ଦିଆଯିବ ମାଗଣା ସାଇକେଲ ।
- ସ୍ୱତନ୍ତ୍ର ଧ୍ୟାନ ଆବଶ୍ୟକ କରୁଥିବା ୧୦୨୪୬୧ ପିଲାଙ୍କୁ ବିଦ୍ୟାଳୟରେ ନାମ ଲେଖାଯାଇଛି ।
- ୨୧୦୦ରୁ ଅଧିକ ଦୃଷ୍ଟିବାଧିତ ପିଲାଙ୍କୁ ବ୍ରେଲି ବହି, ୧୩୦୦୦ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କୁ ସହଚର ରକ୍ଷୀ ଏବଂ ୬୪୬୫ ଜଣଙ୍କୁ ପରିବହନ ଭତ୍ତା ପ୍ରଦାନ କରାଯାଇଛି ।

## ଜାତୀୟ ସ୍ତରରେ ରାଜ୍ୟ ଉଚ୍ଚ ପ୍ରଶଂସିତ

# ଗ୍ରାମୀଣ ଓଡ଼ିଶାରେ ଗତ ଦୁଇବର୍ଷରେ ୧୦ ଲକ୍ଷ ପକ୍କାଘର



ଓଡ଼ିଶାରେ ଗତ ଦୁଇ ବର୍ଷରେ ୧୦ ଲକ୍ଷ ପକ୍କାଘର ନିର୍ମାଣ କରାଯାଇଛି । ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନାରେ ରାଜ୍ୟ ସରକାରଙ୍କ ସଫଳତା ସାରା ଭାରତରେ ପ୍ରଶଂସିତ ହୋଇଛି । ଆଗକୁ ପ୍ରତିବର୍ଷ ଅନ୍ତତଃ ୫ ଲକ୍ଷ ପକ୍କା ଘର ନିର୍ମାଣ ପାଇଁ ସରକାର କାର୍ଯ୍ୟକ୍ରମ ଜାରି ରଖିଛନ୍ତି, ଯାହାଫଳରେ ରାଜ୍ୟର ସବୁ କଚ୍ଚା ଘରକୁ ପକ୍କା ଘରରେ ପରିଣତ କରିବାର ସଂକଳ୍ପ ସାକାର ହୋଇପାରିବ ।

ସାମାଜିକ, ଅର୍ଥନୈତିକ ଓ ଜାତିଗତ ସର୍ଭେ ତଥ୍ୟ ଭିତ୍ତିରେ ରାଜ୍ୟର ୪୪ ଲକ୍ଷ ପରିବାରଙ୍କୁ ଚିହ୍ନଟ କରାଯାଇ ପର୍ଯ୍ୟାୟକ୍ରମେ ଏଥିରେ ସାମିଲ କରାଯାଉଛି । ସବୁ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବା ଲକ୍ଷ୍ୟରେ ରାଜ୍ୟ ସରକାର ଅନ୍ୟ ଯୋଜନା ସହ ରାଜ୍ୟର ନିଜସ୍ୱ ପାଣ୍ଠିରୁ ବିଜୁ ପକ୍କାଘର ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଗୃହ ନିର୍ମାଣରେ ହିତାଧିକାରୀଙ୍କୁ ସିଧାସଳଖ ସାମିଲ କରାଯିବା ସହ କିସ୍ତିୱାରୀ ଅର୍ଥ ବ୍ୟାଙ୍କ ଆକାଉଣ୍ଟକୁ ଯାଉଛି । ଏକ ସ୍ୱଚ୍ଛ ପ୍ରକ୍ରିୟାରେ ହିତାଧିକାରୀ ଚୟନ କରାଯାଉଛି । ପ୍ରତିଟି

ଗୃହ ନିର୍ମାଣକୁ ତଦାରଖ କରିବା ପାଇଁ ସରକାର ବିଶେଷ ବ୍ୟବସ୍ଥା କରିଛନ୍ତି । ଏହା ସହିତ ଗୃହ ନିର୍ମାଣ ସାମଗ୍ରୀ ଯୋଗାଣ ଓ ରାଜମିସ୍ତ୍ରୀ ନିଅଣ୍ଟ ପୂରଣ ପାଇଁ ତାଲିମ ଆଦି କାର୍ଯ୍ୟକ୍ରମ ମଧ୍ୟ କରାଯାଉଛି । ହିତାଧିକାରୀମାନେ ଯେମିତି ଗୃହ ନିର୍ମାଣ ଶୀଘ୍ର କରିବେ ସେଥିପାଇଁ ସରକାର ପ୍ରୋତ୍ସାହନ ମଧ୍ୟ ଦେଉଛନ୍ତି । ୪ ମାସରେ ଘର କଲେ ୧୦,୦୦୦ ଟଙ୍କା ଓ ୬ ମାସରେ ଘର କଲେ ୫୦୦୦ ଟଙ୍କା ଦିଆଯାଉଛି, ଯାହାଫଳରେ ହିତାଧିକାରୀଙ୍କ ମଧ୍ୟରେ ଅପୂର୍ବ ଉତ୍ସାହ ଦେଖାଦେଇଛି ।

ଓଡ଼ିଶାର ଗ୍ରାମ୍ୟ ଗୃହ ନିର୍ମାଣ କାର୍ଯ୍ୟକ୍ରମକୁ ଭାରତ ସରକାର ପ୍ରଶଂସା କରିବା ଓ ଅନ୍ୟ ରାଜ୍ୟମାନେ ଏହାକୁ ମଡେଲ ଭାବରେ ଗ୍ରହଣ କରିବା ଓଡ଼ିଶା ପାଇଁ ଗର୍ବର କଥା ।

୬୦ ଦଶକରେ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ରାଜ୍ୟର ସମସ୍ତ କଚ୍ଚା ଘରକୁ ଅନ୍ତତଃ ଟାଇଲ ଛପର ଘରରେ ପରିଣତ କରିବାକୁ ଯୋଜନା କରିଥିଲେ । ''ଟାଇଲ ଛପର ଘର, ନିଆଁକୁ ନଥାଏ ଡର'' - ତାଙ୍କର ଏହି ସ୍ୱପ୍ନ ପୂରଣରେ ରାଜ୍ୟ ସରକାର ଆଉ ପାଦେ ଆଗେଇ ଯାଇଛନ୍ତି ।

# ଭିନ୍ନକ୍ଷମଙ୍କ ପାଇଁ ଆଶ୍ରୟ ସୁରକ୍ଷା: ରାଜ୍ୟ ସରକାରଙ୍କ ପ୍ରାଥମିକତା

ପକ୍କାଘର ତ ସମସ୍ତଙ୍କ ପାଇଁ ଦରକାର । ତେବେ ଭିନ୍ନକ୍ଷମଙ୍କ ପାଇଁ ପକ୍କାଘରର ଗୁରୁତ୍ୱ ସବୁଠାରୁ ଅଧିକ । ଭିନ୍ନକ୍ଷମ ପରିବାରକୁ ପକ୍କାଘର ଖଣ୍ଡେ ମିଳିଗଲେ, ମୁଣ୍ଡ ଗୁଞ୍ଜିବା ପାଇଁ ଜୀବନ ସାରାର ଚିନ୍ତା ଏକାଦିନକେ ଦୂର ହୋଇଯାଏ, ସମାଜରେ ଅନ୍ୟ ପାଞ୍ଚଜଣଙ୍କ ଭଳି ମୁଣ୍ଡଟେକି ଆଗକୁ ଚାଲିବା ପାଇଁ ମନରେ ଉତ୍ସାହ ଆସିଯାଏ । ରାଜ୍ୟ ସରକାର ଗ୍ରାମାଞ୍ଚଳରେ ପକ୍କାଘର ନିର୍ମାଣ ପ୍ରକ୍ରିୟାରେ ଭିନ୍ନକ୍ଷମଙ୍କୁ ପ୍ରାଥମିକତା ଦେବା ଏକ ଦୂରଦୃଷ୍ଟିସଂପନ୍ନ ଚିନ୍ତାଧାରାର ପରିଚାୟକ ।



ଝାରସୁଗୁଡା ଜିଲ୍ଲାର କୋଲାବିରା ଗାଁର ପ୍ରମୋଦ ରାଣା ପକ୍କାଘର ଖଣ୍ଡେ ପାଇ ବେଶ୍ ଖୁସି । ପକ୍କାଘର ଖଣ୍ଡେ ମଣିଷର ଦୃଷ୍ଟିଭଙ୍ଗୀ ଓ ଚିନ୍ତାଧାରାକୁ କିଭଳି ବଦଳାଇ ଦିଏ ଓ ମନ ଭିତରେ ଏକ ସକାରାତ୍ମକ ଆଭିମୁଖ୍ୟ ଆଣିଥାଏ ତାହା ପ୍ରମୋଦ ରାଣାଙ୍କ ଭଳି ଲୋକଙ୍କୁ ଦେଖିଲେ ବେଶ୍ ବୁଝିହେବ । କେବଳ ସେ ନୁହନ୍ତି, ତାଙ୍କ ଭଳି ଅନେକ ଲୋକଙ୍କୁ ଭେଟିଲେ, ସେମାନଙ୍କର ଖୁସି ଦେଖିଲେ ରାଜ୍ୟ ସରକାରଙ୍କ ଏହି ଉଦ୍ୟମ ଯେ ସେମାନଙ୍କର ସଶକ୍ତିକରଣ ପାଇଁ ଏକ ଉଲ୍ଲେଖନୀୟ ପଦକ୍ଷେପ, ଏହା ନିଃସନ୍ଦେହରେ କୁହାଯାଇ ପାରିବ । ରାଜ୍ୟରେ ଏପର୍ଯ୍ୟନ୍ତ ୧୮,୪୪୧ ଜଣ ଭିନ୍ନକ୍ଷମଙ୍କୁ ପକ୍କାଘର ଯୋଗାଇ ଦିଆଯାଇଛି । ଅନୁଗୋଳ ଜିଲ୍ଲାରେ ୪୮୫, ବାଲେଶ୍ୱରରେ ୯୨୨, ବରଗଡରେ ୭୦୬, ଭଦ୍ରକରେ ୪୮୧, ବଲାଙ୍ଗୀରରେ ୭୮୬, ବୌଦ୍ଧରେ ୨୦୧, କଟକରେ ୭୭୭, ଦେବଗଡରେ ୧୬୧, ଢେଙ୍କାନାଳରେ ୪୯୯, ଗଜପତିରେ ୩୫୬, ଗଞ୍ଜାମରେ ୧୩୦୪, ଜଗତସିଂହପୁରରେ ୨୩୨, ଯାଜପୁରରେ ୫୯୦, ଝାରସୁଗୁଡାରେ ୨୩୦, କଳାହାଣ୍ଡିରେ ୮୬୧, କନ୍ଧମାଳରେ ୪୬୪, କେନ୍ଦ୍ରାପଡାରେ ୫୧୪, କେନ୍ଦୁଝରରେ ୯୪୫, ଖୋର୍ଦ୍ଧାରେ ୪୩୪, କୋରାପୁଟରେ ୮୭୩, ମାଲକାନଗିରିରେ ୪୦୨, ମୟୂରଭଞ୍ଜରେ ୧୬୪୩, ନବରଙ୍ଗପୁରରେ ୭୫୧, ନୟାଗଡରେ ୩୫୭, ନୂଆପଡାରେ ୫୨୭, ପୁରୀରେ ୫୩୩, ରାୟଗଡାରେ ୬୦୬, ସମ୍ବଲପୁରରେ ୪୮୧, ସୋନପୁରରେ ୨୬୨ ଓ ସୁନ୍ଦରଗଡ ଜିଲ୍ଲାରେ ୧୦୫୯ ଜଣ ଭିନ୍ନକ୍ଷମ ହିତାଧିକାରୀ ପରିବାରକୁ ପକ୍କାଘର ଯୋଗାଇ ଦେଇଛନ୍ତି ଓଡ଼ିଶା ସରକାର । ଗ୍ରାମାଞ୍ଚଳର ସବୁ ଯୋଗ୍ୟ ଭିନ୍ନକ୍ଷମ ହିତାଧିକାରୀ ପରିବାର ପାଇଁ ଖଣ୍ଡେ ଖଣ୍ଡେ ପକ୍କାଘର ଯୋଗାଇ ଦେବା କାର୍ଯ୍ୟକ୍ରମ ଜାରି ରଖିଛନ୍ତି ରାଜ୍ୟ ସରକାର, ସେମାନଙ୍କ ପାଇଁ ଆଶ୍ରୟ ସୁରକ୍ଷା, ସରକାରଙ୍କ ପ୍ରାଥମିକତା ।

# ବଣ୍ଡାଙ୍କ ପାଇଁ ବିଜୁ ପକ୍କାଘର, ଆପଦଗ୍ରସ୍ତ ଜନଜାତିଙ୍କୁ ଆଶ୍ରୟ ସୁରକ୍ଷା

## ଜନଜାତିମାନଙ୍କୁ ଦିଆଯାଇଥିବା ଘର ମଧ୍ୟରୁ ରାଜ୍ୟର ୧୩ଟି ଆଦିମ ଆପଦଗ୍ରସ୍ତ ଜନଜାତିଙ୍କୁ ୯,୬୪୮ଟି ପକ୍କାଘର ଯୋଗାଇ ଦିଆଯାଇଛି



ମାଲକାନଗିରି ଜିଲ୍ଲାର ମୁଦୁଲିପଡା ଓ ଅଂଡ୍ରାହାଉସ ଗ୍ରାମପଞ୍ଚାୟତ ଆଦିମ ଆପଦଗ୍ରସ୍ତ ଜନଜାତି ବଣ୍ଡାମାନଙ୍କ ପାଇଁ ସୁପରିଚିତ । ବଣ୍ଡାମାନଙ୍କ ଜୀବନ ଶୈଳୀ, ସେମାନଙ୍କ ପାରମ୍ପରିକ ଶୈଳୀରେ ନିର୍ମିତ ଗୃହ ଏଯାଏଁ ସେମାନଙ୍କ ପରିଚୟ ପାଲଟିଥିଲା । ଏବେ ସେଥିରେ ପରିବର୍ତ୍ତନ ଆସିଛି, ଗାଁ ଗାଁରେ ଛାତଘରମାନ ମୁଣ୍ଡ ଟେକିଠିଆହେଉଛି, ଲାଗୁଛି ଯେମିତି ଆଧୁନିକତାର ଛାପ ସେମାନଙ୍କ ଜନଜୀବନକୁ ବହୁଳ ଭାବରେ ପ୍ରଭାବିତ କରୁଛି । ପକ୍କାଘର ନିର୍ମାଣ ସେ ଅଞ୍ଚଳର ସାମାଜିକ ଓ ସାଂସ୍କୃତିକ ଜୀବନକୁ ନୂଆ ଅର୍ଥ ଆଣି ଦେଇଛି । ଅସୁରକ୍ଷିତ ପାରମ୍ପରିକ ଘର ବଦଳରେ ପକ୍କାଘର ପାଇ ଏହି ସଂପ୍ରଦାୟର ପରିବାରଗୁଡିକ ବେଶ୍ ଖୁସିରେ ଅଛନ୍ତି ଏବଂ ଏହି ପ୍ରଭାବୀ ପରିବର୍ତ୍ତନର ଶ୍ରେୟ ରାଜ୍ୟ ସରକାରଙ୍କୁ ଅର୍ପଣ କରିଛନ୍ତି ।

**ବିଗତ ୨ ବର୍ଷ ମଧ୍ୟରେ ସଂପୂର୍ଣ୍ଣ କରାଯାଇଥିବା ୧୦ ଲକ୍ଷ ଘର ମଧ୍ୟରୁ ୧ଲକ୍ଷ ୯୮ ହଜାର ୫୪୩ ଘର ଅନୁସୂଚିତ ଜାତି ଏବଂ ୪ ଲକ୍ଷ ୨ହଜାର ୫୧୪ ଘର ଅନୁସୂଚିତ ଜନଜାତି ବର୍ଗର ହିତାଧିକାରୀ ପରିବାରକୁ ମିଳିଛି ।**

**ଆଶ୍ରୟ ସୁରକ୍ଷା ପାଇଥିବା ଏହି ପରିବାରଗୁଡିକର ସାମାଜିକ ସ୍ଥିତିରେ ଏବେ ଆଖିଦୃଶିଆ ପରିବର୍ତ୍ତନ ପରିଲକ୍ଷିତ ହେବାରେ ଲାଗିଛି ।**

ଏଇ ଦୁଇ ପଞ୍ଚାୟତର ପ୍ରାୟ ୧୮୧୯ ପରିବାରଙ୍କୁ ଘର ଯୋଗାଇ ଦିଆଯିବ । ବର୍ତ୍ତମାନ ସୁଦ୍ଧା ୯୭୪ ପରିବାରଙ୍କୁ ଏହି ଘର ଯୋଗାଇ ଦିଆ ସରିଲାଣି । କେବେ ବି ଛାତ ଘରେ ରହିନଥିବା ବଣ୍ଡା ପରିବାରଙ୍କ ଖୁସି କହିଲେ ନସରେ ।

କେବଳ ଏମାନେ ନୁହଁନ୍ତି, ଓଡ଼ିଶାର ୧୩ଟି ଆଦିମ ଜନଜାତିଙ୍କ କଲ୍ୟାଣ ପାଇଁ ସରକାର ମଧ୍ୟ ଅନୁରୂପ ବ୍ୟବସ୍ଥା କରିଛନ୍ତି । ପକ୍କାଘର ଯେ କେବଳ ଏକ ଘର ନୁହେଁ: ଜନଜାତିଙ୍କୁ ମୁଖ୍ୟସ୍ରୋତର ସୁବିଧାସୁଯୋଗ ପହଞ୍ଚାଇବା ପାଇଁ ରାଜ୍ୟ ସରକାରଙ୍କର ଆନ୍ତରିକ ଉଦ୍ୟମ, ଏହା ସେ ଅଞ୍ଚଳକୁ ଯାଇ ଥରେ ବୁଲି ଆସିଲେ ବେଶ୍ ଭଲ ଭାବରେ ବୁଝିହେବ ।

◆◆◆

# ପକ୍କାଘର ତିଆରି ପାଇଁ ରାଜମିସ୍ତ୍ରୀ ତାଲିମ ପ୍ରଦାନ



କୋରାପୁଟ ଜିଲ୍ଲାର ପଟ୍ଟାଙ୍ଗୀ ବ୍ଲକ୍‌ର ପାନସଲପାଡୁ ଗାଁର ଲୋକମାନଙ୍କୁ ରାଜ୍ୟ ସରକାର ଯେତେବେଳେ ପକ୍କା ଘର ଦେବାକୁ ଆଗେଇ ଆସିଲେ, ସେତେବେଳେ ଗାଁ ଲୋକେ ଖୁସିରେ ନାଚି ଉଠିଲେ । ପକ୍କାଘର ସେମାନଙ୍କ ପାଇଁ ସ୍ୱପ୍ନ । ସରକାର ପକ୍କାଘର କରିବାକୁ ପଇସା ଦେଲେ । ହେଲେ ପାରମ୍ପରିକ ଘର ତିଆରିରେ ଅଭ୍ୟସ୍ତ ଏଇ ଲୋକମାନଙ୍କର ପକ୍କା ଘର ନିର୍ମାଣ ଉପରେ ବିଶେଷ ଧାରଣା ନାହିଁ । ଏହି ଅଞ୍ଚଳରେ ଏତେ ସଂଖ୍ୟକ ରାଜମିସ୍ତ୍ରୀ ମଧ୍ୟ ନାହାନ୍ତି ଯେହେତୁ ରାଜମିସ୍ତ୍ରୀଙ୍କ ପାଇଁ ଆଗରୁ ଏଭଳି କାମ ମଧ୍ୟ ନଥିଲା । ସରକାର ସ୍ଥାନୀୟ ଲୋକଙ୍କୁ ରାଜମିସ୍ତ୍ରୀ ତାଲିମ ଦେବାର ବ୍ୟବସ୍ଥା କଲେ । ରାଜମିସ୍ତ୍ରୀ ତାଲିମ ପାଇଁ ଆଗ୍ରହ ମଧ୍ୟ ପ୍ରକାଶ ପାଇଲା । ରାଜମିସ୍ତ୍ରୀ ତାଲିମ ସମୟରେ ହିଁ ୨୧ଟି ପକ୍କାଘର କାମ ଶେଷ ହେଲା ଶିକ୍ଷାନବିଶମାନଙ୍କ ଦ୍ୱାରା । ଏବେ କେବଳ ପଟ୍ଟାଙ୍ଗୀ ନୁହେଁ, ସମଗ୍ର କୋରାପୁଟରେ ରାଜମିସ୍ତ୍ରୀଙ୍କ ଅଭାବ ପାଇଁ ଆଉ ଘର ତିଆରି ଅଟକୁ ନାହିଁ । ତାଲିମପ୍ରାପ୍ତ ରାଜମିସ୍ତ୍ରୀମାନେ କୋରାପୁଟ ବାହାରକୁ ମଧ୍ୟ ଗଲେଣି । ଭଲରେ ଦି'ପଇସା ରୋଜଗାର କରିବାକୁ ସକ୍ଷମ ହେଲେଣି ।

- **ରାଜମିସ୍ତ୍ରୀମାନଙ୍କ ପାଇଁ ୧୫ ଦିନର ପ୍ରଶିକ୍ଷଣ**
- **ପ୍ରତ୍ୟେକ ତାଲିମ୍ ନେଉଥିବା ରାଜମିସ୍ତ୍ରୀଙ୍କୁ କିଟ୍ ଓ ଷ୍ଟାଇପେଣ୍ଡ**
- **ଏହି ଦକ୍ଷତା ବିକାଶ ପ୍ରଶିକ୍ଷଣ ମାଧ୍ୟମରେ ରାଜ୍ୟରେ ସୃଷ୍ଟି ହେଲେଣି ୧୬୮୧୮ ନୂତନ ରାଜମିସ୍ତ୍ରୀ**

ରାଜ୍ୟ ସରକାର ସାରା ଓଡ଼ିଶାରେ ଯେଉଁଠି ଯେଉଁଠି ଆବଶ୍ୟକତା ଅଛି ସେଠି ରାଜମିସ୍ତ୍ରୀ ତାଲିମ ପ୍ରଦାନ କରୁଛନ୍ତି । ଅନେକ ଲୋକ ତାଲିମ ନେଉଛନ୍ତି, କୁଶଳୀ ରାଜମିସ୍ତ୍ରୀ ଭାବରେ ଢେର କାମ ପାଉଛନ୍ତି। ଆଜି ଗ୍ରାମାଞ୍ଚଳରେ ବାସଗୃହ ନିର୍ମାଣରେ ଯେଉଁ ଅଗ୍ରଗତି ସାଧିତ ହୋଇଛି, ତା'ର ମୂଳରେ ଅଛି ଏଇ ଦକ୍ଷତା ବିକାଶ ଉପକ୍ରମ । ରାଜ୍ୟ ସରକାରଙ୍କ ଏହି କାର୍ଯ୍ୟକ୍ରମ ଜାତୀୟ ସ୍ତରରେ ବେଶ ପ୍ରଶଂସିତ ହୋଇଛି । ଅନେକ ରାଜ୍ୟ ଏହି ଧାରାରେ ଯିବାକୁ ଆରମ୍ଭ କଲେଣି ।

**ସାତଭାୟାକୁ ସ୍ୱତନ୍ତ୍ର ଦୃଷ୍ଟି**

# ବିପର୍ଯ୍ୟୟ ପ୍ରଭାବିତଙ୍କୁ 'ବିଜୁ ପକ୍କାଘର'

ବଙ୍ଗୋପସାଗର କୂଳରେ ଥିବା କେନ୍ଦ୍ରାପଡା ଜିଲ୍ଲାର ରାଜନଗର ବ୍ଲକ୍‌ର ସାତଭାୟା ଗ୍ରାମପଞ୍ଚାୟତର ସାତଭାୟା, କାହ୍ନୁପୁର, ବରାହୀପୁର, ରବୀନ୍ଦ୍ରପଲ୍ଲୀ ଓ ମଗରକଂଦା ଗାଁର ୫୭୧ ପରିବାରକୁ ୯ କି.ମି. ଦୂର ବଗପାଟିଆରେ ଥଇଥାନ କରାଯାଇଛି ଏବଂ ସମସ୍ତଙ୍କ ପାଇଁ ଯୋଗାଇ ଦିଆଯାଇଛି ସରକାରଙ୍କ ରାଜସ୍ୱ ବିଭାଗ ତରଫରୁ ୧୦ ଡିସିମିଲ ଘରଡିହ ଏବଂ ପଞ୍ଚାୟତିରାଜ ବିଭାଗ ତରଫରୁ ବିଜୁ ପକ୍କାଘର(ସ୍ୱତନ୍ତ୍ର) ଯୋଜନାରେ ଘର । ସବୁ ଘରଗୁଡିକର ନିର୍ମାଣ କାର୍ଯ୍ୟ ଏବେ ଦ୍ରୁତ ଗତିରେ ଆଗେଇ ଚାଲିଛି ।

ସାତଭାୟାର ଏହି ପରିବାରଗୁଡ଼ିକୁ ଘରଡିହ ଜମିର ଉନ୍ନତିକରଣ ପାଇଁ ରାଜ୍ୟ ବିପର୍ଯ୍ୟୟ ପ୍ରଶମନ କର୍ତ୍ତୃପକ୍ଷଙ୍କ ତରଫରୁ ୧୦ ହଜାର ହିସାବରେ ଟଙ୍କା ଦିଆଯାଇଛି ଏବଂ ମହାତ୍ମା ଗାନ୍ଧୀ ନରେଗା ଯୋଜନାରେ ନିଜ ଘର ତିଆରି ପାଇଁ ମଜୁରୀ ବାବଦକୁ ଅର୍ଥ ଯୋଗାଇ ଦିଆଯାଉଛି । ସାତଭାୟାବାସୀ ଏବେ 'ବିଜୁ ପକ୍କାଘର' ଛାତ ତଳେ ସୁରକ୍ଷିତ ।

କେବଳ ସାତଭାୟା ନୁହେଁ, ରାଜ୍ୟର ଅନ୍ୟ ସ୍ଥାନରେ ମଧ୍ୟ ପ୍ରାକୃତିକ ବିପର୍ଯ୍ୟୟ ପ୍ରଭାବିତ ଲୋକମାନଙ୍କୁ ବିଜୁ ପକ୍କାଘର(ସ୍ୱତନ୍ତ୍ର) ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଛି । ୨୦୧୨-୧୩ରୁ ଆରମ୍ଭ ହୋଇଥିବା ଏହି ଯୋଜନାରେ ୨୦୧୫-୧୬ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୧୪,୧୯୬ ଜଣ ହିତାଧିକାରୀ ଉପକୃତ ହୋଇଛନ୍ତି ।

ବିଜୁ ପକ୍କାଘର ଯୋଜନା ଓଡ଼ିଶାର ଗାଁ ଗଣ୍ଡାରେ ଆଶ୍ରୟ ସୁରକ୍ଷାର ଏକ ପ୍ରମୁଖ ମାଧ୍ୟମ ପାଲଟିଛି । ଏହା ମାଧ୍ୟମରେ ଦିନ ପରେ ଦିନ କଚ୍ଚାଘରକୁ ପକ୍କାଘରରେ ପରିଣତ କରାଯିବାର ସ୍ୱପ୍ନ ସାକାର ହେବାରେ ଲାଗିଛି ।

# ସଂଖ୍ୟାଲଘୁଙ୍କ ପାଇଁ ପକ୍କାଘର

ଭଦ୍ରକ ଜିଲ୍ଲାର ଗୁଜିଦରଡା ଗାଁରେ ବସବାସ କରୁଛନ୍ତି ସଂଖ୍ୟାଧିକ ସଂଖ୍ୟାଲଘୁ ଗୋଷ୍ଠୀର ଲୋକ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଆର୍ଥିକ ଦୃଷ୍ଟିରୁ ଦୁର୍ବଳ, କୃଷି ଶ୍ରମିକ ଓ ଅନ୍ୟାନ୍ୟ ଛୋଟମୋଟ କାମ କରି ପେଟ ପୋଷନ୍ତି । ସେଠି ସେକ୍ ଅଜଗର, ରାଜୀବ ସାହାଙ୍କ ଭଳି ଅନେକ ଲୋକଙ୍କୁ ରାଜ୍ୟ ସରକାର ଯୋଗାଇ ଦେଇଛନ୍ତି ପକ୍କାଘର । ଛାତ ଘର ଖଣ୍ଡେ ଯେ ଜଣେ ଶ୍ରମଜୀବୀର ଆତ୍ମବିଶ୍ୱାସ ବଢାଇ ଦେଇପାରେ, ତାହା ଏଇଭଳି ହିତାଧିକାରୀ ଏବଂ ତାଙ୍କ ପରିବାରବର୍ଗଙ୍କୁ ଭେଟିଲେ ବେଶ୍ ଜାଣିହେବ । ନିଜ ଜୀବନକାଳ ମଧ୍ୟରେ ଖଟିଖଟି ପକ୍କାଘରଟିଏ କରିବା ସ୍ୱପ୍ନ ଥିଲା ସେମାନଙ୍କ ପାଇଁ । ସରକାରଙ୍କ ପକ୍କାଘର ଯୋଜନା ତାଙ୍କ ସାରା ଜୀବନର ଆୟ ବଂଚେଇ ଦେଲା, ଏବେ ପକ୍କାଘର ଖଣ୍ଡେ ମିଳିଯିବା ପରେ ସେମାନେ ନିଜ ପିଲା ଓ ପରିବାରର ଅନ୍ୟାନ୍ୟ ଆବଶ୍ୟକତା ପ୍ରତି ଧ୍ୟାନ ଦେଇପାରିବେ ।




୯୯୫୫ ଜଣ ସଂଖ୍ୟାଲଘୁ ହିତାଧିକାରୀ ପରିବାରକୁ ଇତିମଧ୍ୟରେ ପକ୍କାଘର ଯୋଗାଇ ଦିଆଯାଇଛି । ଅନୁଗୋଳ ଜିଲ୍ଲାରେ ୪୦, ବାଲେଶ୍ୱରରେ ୫୬୬, ବରଗଡରେ ୬୨, ଭଦ୍ରକରେ ୪୯୧, ବଲାଙ୍ଗୀରରେ ୯୮, ବୌଦ୍ଧରେ ୮, କଟକରେ ୧୦୮୭, ଦେବଗଡରେ ୨୧୨, ଢେଙ୍କାନାଳରେ ୧୫, ଗଜପତିରେ ୧୨୬୩, ଗଞ୍ଜାମରେ ୧୫୫, ଜଗତସିଂହପୁରରେ ୨୦୬, ଯାଜପୁରରେ ୮୧୬, ଝାରସୁଗୁଡାରେ ୨୩, କଳାହାଣ୍ଡିରେ ୧୭୧, କନ୍ଧମାଳରେ ୨୯୩, କେନ୍ଦ୍ରାପଡାରେ ୩୬୭, କେନ୍ଦୁଝରରେ ୧୨୧, ଖୋର୍ଦ୍ଧାରେ ୫୫୨, କୋରାପୁଟରେ ୧୬୧, ମାଲକାନଗିରିରେ ୩୬, ମୟୂରଭଞ୍ଜରେ ୧୨୮୫, ନବରଙ୍ଗପୁରରେ ୧୩୭, ନୟାଗଡରେ ୨୯, ନୂଆପଡାରେ ୪୭, ପୁରୀରେ ୩୯୬, ରାୟଗଡାରେ ୧୩୪, ସମ୍ବଲପୁରରେ ୧୫୯, ସୋନପୁରରେ ୧୨ ଏବଂ ସୁନ୍ଦରଗଡ ଜିଲ୍ଲାରେ ୧୦୧୩ ସଂଖ୍ୟାଲଘୁ ହିତାଧିକାରୀ ପରିବାରଙ୍କୁ ପକ୍କାଘର ଯୋଗାଇ ଦିଆଯାଇଛି ।

ରାଜ୍ୟରେ ଗ୍ରାମ୍ୟ ଗୃହ ନିର୍ମାଣ କାର୍ଯ୍ୟକ୍ରମରେ ସବୁ ବର୍ଗର ଲୋକଙ୍କୁ ସାମିଲ କରାଯାଇଛି । ରାଜ୍ୟର ସବୁ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବାର ଉଦ୍ୟମ ଜାରି ରଖିଛନ୍ତି ରାଜ୍ୟ ସରକାର । ରାଜ୍ୟର ସବୁ ଆର୍ଥିକ ଦୃଷ୍ଟିରୁ ଦୁର୍ବଳ ପରିବାରଙ୍କୁ ପର୍ଯ୍ୟାୟକ୍ରମେ ଗ୍ରାମାଞ୍ଚଳ ପକ୍କା ଗୃହ ନିର୍ମାଣ କାର୍ଯ୍ୟକ୍ରମରେ ସାମିଲ କରିବା ପାଇଁ ଲକ୍ଷ୍ୟ ରଖିଛନ୍ତି ।

◆◆◆

# ପକ୍କାଘର ସହିତ ସର୍ବନିମ୍ନ ମୌଳିକ ସୁବିଧା ପ୍ରଦାନ

## ଉଦାହରଣ ପାଲଟିଛି ସାନପଥରା ଗାଁ

ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ବ୍ଲକ୍ ଅନ୍ତର୍ଗତ ବଡ଼କୋଦଣ୍ଡା ଗ୍ରାମପଞ୍ଚାୟତର ସାନପଥରା ଗାଁରେ ରହୁଥିଲେ ୨୦ଟି କୁଷ୍ଠରୋଗରୁ ଆରୋଗ୍ୟ ଲାଭ କରିଥିବା ପରିବାର । ଛୋଟ ଛୋଟ ଆଜ୍‌ବେଷ୍ଟସ୍ ଘରେ ରହୁଥିବା ଏହି ପରିବାରଗୁଡ଼ିକ ଫାଇଲିନ୍ ବାତ୍ୟାରେ ଘର ଭାଙ୍ଗିଗଲା ପରେ ପ୍ରାୟତଃ ଗୃହଶୂନ୍ୟ ହୋଇଯାଇଥିଲେ । ନା ଥିଲା ଆଶ୍ରୟ ନା ଥିଲା କେହି ସାହା ଭରସା ।

ରାଜ୍ୟ ସରକାର ଏହି ପରିବାରଗୁଡ଼ିକ ପାଇଁ ଏକ ଅଭିନବ ଯୋଜନା କଲେ । ଗୃହ ନିର୍ମାଣ ଯୋଜନାରେ ଘର ତିଆରି କରାଗଲା । ସ୍ୱଚ୍ଛ ଭାରତ ମିଶନରେ ପାଇଖାନାର ବ୍ୟବସ୍ଥା ହେଲା । ନିଜ ଘର ନିର୍ମାଣରେ ଶ୍ରମଦାନ ବାବଦକୁ ୯୦ ଦିନର ମଜୁରୀ ମହାତ୍ମା ଗାନ୍ଧୀ ନରେଗାରେ ମଞ୍ଜୁର କରାଗଲା ଏବଂ ଏହା ସହିତ ସୌର ଶକ୍ତି ଚାଳିତ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ମଧ୍ୟ ନିର୍ମାଣ କରାଗଲା । ମୋଟ ୨୬ ଲକ୍ଷ ୨୦ ହଜାର ଟଙ୍କା ବିନିଯୋଗରେ ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ସମନ୍ୱୟ ଅଣାଯାଇ ୨୦ ଜଣଙ୍କୁ ଥଇଥାନ କରାଗଲା । ଏବେ ସେମାନେ ଖୁବ୍ ଆନନ୍ଦରେ ନିରାପଦ ଛାତ ତଳେ ରହୁଛନ୍ତି ।

କେବଳ ସାନପଥରା ଗାଁ ନୁହେଁ, ଏମିତି ଅନେକ ଗାଁ ଓଡ଼ିଶାରେ ଅଛି, ଯେଉଁଠି ଓଡ଼ିଶା ସରକାର ଏହିଭଳି ସ୍ୱତନ୍ତ୍ର ବ୍ୟବସ୍ଥା କରିଛନ୍ତି । ହିତାଧିକାରୀଙ୍କ ସ୍ଥିତିକୁ ବିଚାର କରି ଯୋଜନାଗୁଡ଼ିକୁ ଏକାଠି କରି ତାଙ୍କ ନିକଟରେ ପହଞ୍ଚାଇଛନ୍ତି । ଖାଲି ଘର କରିବା ପାଇଁ ନୁହେଁ, ଯୋଗାଯୋଗ, ପାନୀୟ ଜଳ ଏବଂ ପରିମଳ ବ୍ୟବସ୍ଥାର ମଧ୍ୟ ସୁବନ୍ଦୋବସ୍ତ କରାଯାଉଛି । ଯେମିତି ଜଣେ ଜୀବନଯାପନ ପାଇଁ ସର୍ବନିମ୍ନ ସୁବିଧାସୁଯୋଗ ପାଇବ ଏହା କେବଳ ସମ୍ଭବ ହୋଇଛି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ସରକାରଙ୍କର ଦୃଢ଼ ଇଚ୍ଛାଶକ୍ତି ଯୋଗୁଁ ।

# 'ଆହାର' ଯୋଜନାରେ ରାଜ୍ୟର ସବୁ ଜିଲ୍ଲାରେ ସୁଲଭ ରନ୍ଧା ଖାଦ୍ୟ



ପ୍ରତି ଜିଲ୍ଲାର ପ୍ରମୁଖ ସହରାଞ୍ଚଳରେ 'ଆହାର' କେନ୍ଦ୍ର କାର୍ଯ୍ୟକ୍ଷମ ।

ଦୈନିକ ପ୍ରାୟ ୬୦ ହଜାରରୁ ଅଧିକ ଲୋକ 'ଆହାର' ଦ୍ୱାରା ଉପକୃତ ।

ମାତ୍ର ପାଞ୍ଚ ଟଙ୍କାରେ ପରିଷ୍କାର, ପରିଚ୍ଛନ୍ନ ପରିବେଶରେ ଯୋଗାଇ ଦିଆଯାଉଛି ପୁଷ୍ଟିକର ସୁଲଭ ଆହାର ।

ମାତ୍ର ୫ ଟଙ୍କାରେ ପେଟପୂରା ଭାତ, ଡାଲମା ଯୋଗାଇ ଦେଇ ସହରାଞ୍ଚଳକୁ ବିଭିନ୍ନ କାମରେ ଆସୁଥିବା ଅଭାବୀ ଲୋକମାନଙ୍କ ଖାଇବା ଚିନ୍ତା ଦୂର କରିବା ପାଇଁ ଓଡ଼ିଶା ସରକାରଙ୍କ ନୂଆ କାର୍ଯ୍ୟକ୍ରମ 'ଆହାର' । ଗତବର୍ଷ ଅପ୍ରେଲ ପହିଲା ଓଡ଼ିଶା ଦିବସରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ରାଜ୍ୟର ୫ଟି ମହାନଗରରେ ୨୧ଟି 'ଆହାର' କେନ୍ଦ୍ରର ଶୁଭାରମ୍ଭ

କରିଥିଲେ। ଏବର୍ଷ ଅପ୍ରେଲ ୧୪ ତାରିଖ ଓଡ଼ିଆ ନୂଆ ବର୍ଷ ଅବସରରେ ମୁଖ୍ୟମନ୍ତ୍ରୀ ଆଉ ୧୦୨ଟି 'ଆହାର' କେନ୍ଦ୍ର ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ଲୋକାର୍ପଣ କଲେ ।

ଆରମ୍ଭ ହେବା ଦିନଠାରୁ 'ଆହାର' ଯୋଜନା ବେଶ୍ ଲୋକପ୍ରିୟ ହୋଇଛି । ନିତିଦିନିଆ କାମ ପାଇଁ ସହରକୁ ଆସୁଥିବା ଅଭାବୀ ଲୋକଙ୍କୁ ୫ ଟଙ୍କା ମୂଲ୍ୟରେ ସରକାରଙ୍କ ତରଫରୁ ଭାତ ଆଉ ଡାଲମା 'ଆହାର' କେନ୍ଦ୍ରରେ ଯୋଗାଇ ଦିଆଯାଉଛି ।

**ଖାଦ୍ୟ ସୁରକ୍ଷା ନିମନ୍ତେ ରାଜ୍ୟବାସୀଙ୍କ ନିକଟରେ ପ୍ରତିବଦ୍ଧ ଓଡ଼ିଶା ସରକାର**

ସୁଲଭ ମୂଲ୍ୟରେ ରନ୍ଧାଖାଦ୍ୟ ଯୋଗାଇ ଦେବା କାର୍ଯ୍ୟକ୍ରମ 'ଆହାର' ଏବେ ରାଜ୍ୟର ୩୦ଟି ଜିଲ୍ଲାର ୬୨ଟି ସହରାଞ୍ଚଳ ଏବଂ ୪୪ଟି ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପରିସରରେ କାର୍ଯ୍ୟ କରୁଛି । ବର୍ଷକୁ ୨ କୋଟି ଲୋକଙ୍କୁ ୫ ଟଙ୍କାରେ ଭାତ ଡାଲମା ଯୋଗାଇ ଦେଇପାରୁଥିବା ଏହି 'ଆହାର' କେନ୍ଦ୍ରମାନଙ୍କରେ ପ୍ରତିଦିନ ୬୦ ହଜାରରୁ ଊର୍ଦ୍ଧ୍ୱ ଲୋକ ଉପକୃତ ହେଉଛନ୍ତି । ଖାଦ୍ୟ ପ୍ରସ୍ତୁତିଠାରୁ ପରିବେଷଣ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ପରିଷ୍କାର, ପରିଚ୍ଛନ୍ନତା ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯାଉଛି । ୩୦ଟି ମୁଖ୍ୟ ରୋଷେଇଶାଳାରୁ ଆହାର କେନ୍ଦ୍ରକୁ ଖାଇବା ନେବା ଆଣିବା କରିବା ପାଇଁ ୬୫ଟି ସ୍ୱତନ୍ତ୍ର ଗାଡିର ବ୍ୟବସ୍ଥା କରାଯିବା ସହିତ ବିଶୁଦ୍ଧ ପିଇବା ପାଣିର ବ୍ୟବସ୍ଥା ପ୍ରତି 'ଆହାର' କେନ୍ଦ୍ରରେ କରାଯାଇଛି । ରବିବାରକୁ ଛାଡି ସପ୍ତାହର ଅନ୍ୟ ୬ ଦିନ ୧୧ଟାରୁ ୩ଟା ପର୍ଯ୍ୟନ୍ତ ସିସିଟିଭିର ଯାଞ୍ଚ ପ୍ରକ୍ରିୟା ମଧ୍ୟରେ ଲୋକଙ୍କୁ ଅତି ଯତ୍ନର ସହିତ ରନ୍ଧା ଖାଦ୍ୟ ପରିବେଷଣ କରାଯାଉଛି । ସରକାରଙ୍କୁ ୫ ଟଙ୍କାର ସହଯୋଗ ଦେଲେ ମିଳୁଛି ପେଟପୂରା ଆହାର, ସେପଟେ କଷ୍ଟ ଅର୍ଜିତ ଧନରୁ ହେଉଛି ଖାଇବା ଖର୍ଚ୍ଚ ବାବଦ ସଂଚୟ । ସେଇଥି ପାଇଁ ତ ଲୋକପ୍ରିୟ ଆମ ସରକାରଙ୍କ ଏହି ଯୋଜନା 'ଆହାର' । ସିଏ ଟଙ୍କିକିଆ ଚାଉଳ ହେଉ କିମ୍ବା ହେଉ ଜାତୀୟ ଖାଦ୍ୟ ସୁରକ୍ଷା ଯୋଜନାର ପ୍ରଣୟନ ଅବା 'ଆହାର' ।

# ବିଜୁ ଏକ୍ସପ୍ରେସ୍ ୱେ

## କେ.ବି.କେ. ଓ ପଶ୍ଚିମ ଓଡ଼ିଶାର ସାମାଜିକ ଏବଂ ଅର୍ଥନୈତିକ ଜୀବନରେଖା

ଦକ୍ଷିଣ ଓଡ଼ିଶା ଏବଂ ପଶ୍ଚିମ ଓଡ଼ିଶାର ଦ୍ରୁତ ଉନ୍ନତି ନିମନ୍ତେ କୋରାପୁଟ ଜିଲ୍ଲାର ସୀମାନ୍ତରେ ଚାନ୍ଦିଲିଠାରୁ ରାଉରକେଲା ପର୍ଯ୍ୟନ୍ତ ୮ଟି ଜିଲ୍ଲା କୋରାପୁଟ, ନବରଙ୍ଗପୁର, କଳାହାଣ୍ଡି, ନୂଆପଡା, ବରଗଡ, ସମ୍ବଲପୁର, ଝାରସୁଗୁଡା ଏବଂ ସୁନ୍ଦରଗଡ ଜିଲ୍ଲାର ଦୁର୍ଗମ, ପଛୁଆ ତଥା ମାଓ ଅଧ୍ୟୁଷିତ ଅଞ୍ଚଳ ଦେଇ ୩୬୦୦ କୋଟିରୁ ଅଧିକ ଟଙ୍କା ବ୍ୟୟରେ ନିର୍ମିତ ହେଉଛି ଅତ୍ୟାଧୁନିକ ମାନର ୪ ଲେନ୍ ବିଶିଷ୍ଟ ୬୫୬ କି.ମି. ଦୈର୍ଘ୍ୟ ବିଶିଷ୍ଟ ନୂତନ 'ବିଜୁ ଏକ୍ସପ୍ରେସ୍ ୱେ' । ଗୁଣାତ୍ମକ ରାସ୍ତା ସଂଯୋଗୀକରଣ କ୍ଷେତ୍ରରେ ଏହା ରାଜ୍ୟ ସରକାରଙ୍କ ଏକ ଯୁଗାନ୍ତକାରୀ ପଦକ୍ଷେପ।

ଛତିଶଗଡର ଜଗଦଲପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ଏକ ଅର୍ଥନୈତିକ କରିଡର ସୃଷ୍ଟି କରିବା ଲକ୍ଷ୍ୟରେ ନିର୍ମାଣାଧୀନ ତ୍ୱରିତ ରାଜପଥ ଏହି ଅଞ୍ଚଳର ଉନ୍ନତ ମାନର ରାସ୍ତାର ଅଭାବକୁ ପୂରଣ କରିବ । ଏହା ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ସୀମାନ୍ତବର୍ତ୍ତୀ ସ୍ଥାନ ଯଥା ଚାନ୍ଦିଲି, ବୋରିଗୁମ୍ମା, ନବରଙ୍ଗପୁର, ପାପଡାହାଣ୍ଡି, ଆମ୍ପାଣି, ଧର୍ମଗଡ, ସିନାପାଲି, ଭେଲା, ନୂଆପଡା, ପାଇକମାଳ, ପଦ୍ମପୁର, ସୋହେଲା, ବରଗଡ, ସମ୍ବଲପୁର, ଝାରସୁଗୁଡା, ସୁନ୍ଦରଗଡ ଓ ରାଉରକେଲାକୁ ସଂଯୁକ୍ତ କରିବ । ସତୁରୀ ଦଶକର ପ୍ରାରମ୍ଭରେ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଦୈତାରୀ–ପାରାଦୀପ ଏକ୍ସପ୍ରେସ୍ ହାଇୱେ ନିର୍ମାଣ ଏକ ସମୟୋଚିତ ଏବଂ ବଳିଷ୍ଠ ପଦକ୍ଷେପ ପ୍ରମାଣିତ ହେଲାପରି, ସେହି ମହାନ ଜନନାୟକଙ୍କ ନାମରେ ନାମିତ 'ବିଜୁ ଏକ୍ସପ୍ରେସ୍ ୱେ' ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ଅର୍ଥନୈତିକ ଏବଂ ସାମାଜିକ ସଶକ୍ତିକରଣରେ ସହାୟକ ହେବ । ଏହା ଜନସାଧାରଣଙ୍କ ଜୀବନଯାପନକୁ ସହଜ ଓ ସୁନ୍ଦର କରିପାରିବା ସହିତ 'ବିଜୁ ଏକ୍ସପ୍ରେସ୍ ୱେ' ଦେଇ ଓଡ଼ିଶାର ପ୍ରଗତିର ରଥ ଆଗେଇ ଯିବ ।

# ୨୦୨୫ ସୁଦ୍ଧା ଶିଳ୍ପ କ୍ଷେତ୍ରରେ ବିନିଯୋଗ ହେବ ୨.୫ ଲକ୍ଷ କୋଟି ଟଙ୍କା

ଶିଳ୍ପ ବିକାଶ ହେଉଛି ଅଭିବୃଦ୍ଧି ଓ ଜୀବନଧାରା ସମୁନ୍ନତିର ଲକ୍ଷଣ । ଓଡ଼ିଶାର ଖଣିଜ ସମ୍ପଦ, ଜଳ ସମ୍ପଦ ଓ କୁଶଳୀ ମାନବ ସମ୍ବଳ ବଳରେ ରାଜ୍ୟ ଶିଳ୍ପ କ୍ଷେତ୍ରରେ ସମଗ୍ର ଦେଶରେ ୭ମ ସ୍ଥାନରେ ପହଞ୍ଚିଛି । ରାଜ୍ୟ ସରକାରଙ୍କର ଏହା ଏକ ଅନନ୍ୟ ସଫଳତା । ଭାରତ ସରକାର ଓ ବିଶ୍ୱବ୍ୟାଙ୍କ୍ ଏହି ମାନ୍ୟତା ପ୍ରଦାନ କରିଛନ୍ତି ।



ଇସ୍ପାତ କ୍ଷେତ୍ରରେ ପ୍ରସିଦ୍ଧ ଟାଟା ଷ୍ଟିଲ୍ କଳିଙ୍ଗନଗରଠାରେ ତା'ର ଇସ୍ପାତ ଉତ୍ପାଦନ ଆରମ୍ଭ କରିଛି ଓ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଏହାକୁ ଉଦ୍‌ଘାଟନ କରିବା ଶିଳ୍ପ କ୍ଷେତ୍ରରେ ଏକ ଅର୍ଥପୂର୍ଣ୍ଣ ସଫଳତା ।

- **କଳିଙ୍ଗନଗରରେ ଟାଟାଷ୍ଟିଲର ଉତ୍ପାଦନ ଆରମ୍ଭ**
- **୨୦୨୫ ସୁଦ୍ଧା ଶିଳ୍ପରେ ୨.୫ ଲକ୍ଷ କୋଟି ଟଙ୍କାର ନିବେଶ**
- **୧୧ ଜିଲ୍ଲାରେ ନୂଆ ଶିଳ୍ପାଞ୍ଚଳ ପ୍ରତିଷ୍ଠା**
- **ଆବଶ୍ୟକୀୟ ଜମି ପାଇଁ ଲ୍ୟାଣ୍ଡ ବ୍ୟାଙ୍କ୍**

ଶିଳ୍ପନୀତି ୨୦୧୫ ପ୍ରଣୟନ ସାଙ୍ଗକୁ ସିଙ୍ଗିଲ୍ ୱିଣ୍ଡୋ କ୍ଲିଅରାନ୍ସ ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ ଉଦ୍ୟୋଗୀମାନେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଆଗ୍ରହ ପ୍ରକାଶ କରିଛନ୍ତି । ୨୦୧୪-୧୫ରେ ମୁମ୍ବାଇଠାରେ ଅନୁଷ୍ଠିତ 'ଓଡ଼ିଶା ଇନ୍‌ଭେଷ୍ଟର ମିଟ୍' ସଫଳ ହୋଇଛି ଓ ରାଜ୍ୟରେ ୭୦ ହଜାର କୋଟି ଟଙ୍କାର ପୁଞ୍ଜି ବିନିଯୋଗ ପାଇଁ ପ୍ରସ୍ତାବ ରହିଛି । ୨୦୧୪-୧୫ ଓ ୨୦୧୫-୧୬ରେ ୫୦,୦୦୦କୋଟି ଟଙ୍କାରୁ ଊର୍ଦ୍ଧ୍ୱ ପୁଞ୍ଜି ନିବେଶ ପାଇଁ ବିଭିନ୍ନ ପ୍ରକଳ୍ପକୁ ଅନୁମୋଦନ ମିଳିଛି । ରାଜ୍ୟ ସରକାରଙ୍କ ପ୍ରବର୍ତ୍ତିତ ଇ-ବିଜ୍ ଅଭିନବ ବ୍ୟବସ୍ଥାରେ ୧୧ଗୋଟି ଶିଳ୍ପ ସମ୍ପୃକ୍ତ ସେବା ଓ ଅନୁମୋଦନ ତ୍ୱରାନ୍ୱିତ ହୋଇଛି । ଅଣୁ, କ୍ଷୁଦ୍ର ଓ ମଧ୍ୟମ ଧରଣର ଶିଳ୍ପ ସହ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଅନୁଗୋଳ, ବାଲେଶ୍ୱର, କଟକ, ଝାରସୁଗୁଡା, ସମ୍ବଲପୁର, ଜଗତସିଂହପୁର, ଖୋର୍ଦ୍ଧା, ସୁନ୍ଦରଗଡ, ଭଦ୍ରକ, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାରେ ନୂଆ ଶିଳ୍ପାଞ୍ଚଳ ଗଢି ଉଠିବ ।

ଚଳିତବର୍ଷ ଚୀନ୍, ବ୍ରିଟେନ୍ ଓ ଇସ୍ରାଏଲ୍‌ରେ ଶିଳ୍ପ ଓ ପୁଞ୍ଜି ନିବେଶ ସମ୍ପର୍କିତ ରୋଡ୍ ସୋ ଆୟୋଜନ ସମେତ ଶିଳ୍ପ ପ୍ରତିଷ୍ଠା ପାଇଁ ଆବଶ୍ୟକୀୟ ଜମିକୁ ନେଇ ଏକ ଲ୍ୟାଣ୍ଡ ବ୍ୟାଙ୍କ ପ୍ରତିଷ୍ଠା ଓ ଶିଳ୍ପ ସମ୍ପର୍କିତ ତଥ୍ୟ ଏବଂ ସେବା ଉପଲବ୍ଧି ନିମନ୍ତେ ମୋବାଇଲ ପ୍ରୟୋଗ ବ୍ୟବସ୍ଥା ଇତ୍ୟାଦି ରାଜ୍ୟ ସରକାରଙ୍କ ବଳିଷ୍ଠ ପଦକ୍ଷେପ ।

# ଇଲେକ୍‌ଟ୍ରୋନିକ୍ସ ଏବଂ ସୂଚନା ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ସଫଳତା

ଇଲେକ୍‌ଟ୍ରୋନିକ୍ସ ଏବଂ ସୂଚନା ପ୍ରଯୁକ୍ତି ବିଦ୍ୟା ବିଭାଗକୁ ଏକାଧିକ ପ୍ରମୁଖ ସଫଳତା ମିଳିଛି । ଟାଟା କନ୍‌ସଲଟାନ୍‌ସି ସର୍ଭିସେସ (ଟିସିଏସ୍) କଳିଙ୍ଗ ପାର୍କ ୪୫ ଏକର ପରିମିତ ଜମି ଉପରେ ପ୍ରତିଷ୍ଠିତ ଏବଂ ବର୍ତ୍ତମାନ ଏହା ୪୦୦୦ ସିଟ୍ ବିଶିଷ୍ଟ ଏକକ ଗ୍ଲୋବାଲ ନେଟ୍‌ୱାର୍କ ଡେଲିଭରି ମଡ଼େଲ ଭିତ୍ତିରେ କାର୍ଯ୍ୟ କରୁଅଛି । ଇନ୍‌ଫୋସିସ୍ ଏହାର ଦ୍ୱିତୀୟ କ୍ୟାମ୍ପସ୍ ଇନ୍‌ଫୋଭ୍ୟାଲିରେ ଆରମ୍ଭ କରିଛି, ଯାହାଦ୍ୱାରା ୫୦୦୦ ଆଇ.ଟି. ଇଂଜିନିୟର ନିକଟ ଭବିଷ୍ୟତରେ



ଭୁବନେଶ୍ୱରରେ କାର୍ଯ୍ୟ କରିପାରିବେ । ମାଇଣ୍ଡ ଟ୍ରି କଳିଙ୍ଗ ୨୦ ଏକର ପରିମିତ ଜମି ଉପରେ ପ୍ରତିଷ୍ଠା କରାଯାଇଛି ଏବଂ ୮୦୦ ଯୁବ ଆଇ.ଟି. ବୈଷୟିକବିତ୍‌ଙ୍କୁ ନିଯୁକ୍ତି ଦିଆଯାଇଛି । ଟେକ୍ ମହିନ୍ଦ୍ରାର ନୂତନ ଆଇ.ଟି. ବ୍ଲକ୍ ପ୍ରତିଷ୍ଠା କରାଯାଇଛି, ଯେଉଁଥିରେ ୬୧୫ ଜଣ ଆଇ.ଟି. ଇଂଜିନିୟର ନିଯୁକ୍ତି ପାଇଛନ୍ତି । ରାଜ୍ୟର ଦ୍ୱିତୀୟ ଆଇ.ଟି. ପାର୍କ ଇନ୍‌ଫୋଭ୍ୟାଲି ଭୁବନେଶ୍ୱର ନିକଟରେ ୬୧୫ ଏକର ପରିମିତ ଜମିରେ ପ୍ରତିଷ୍ଠିତ ହୋଇଛି । ଏଥିମଧ୍ୟରୁ ୨୬୨.୫୨ ଏକର ଜମିରେ ଏକ ଏସ.ଇ.ଜେଡ୍ ସ୍ଥାପନ କରାଯାଇଛି ଏବଂ ୨୧୫ ଏକର ଜମିରେ ଇ.ଏସ୍.ଡ଼ି.ଏମ୍. ପାର୍କ ପ୍ରତିଷ୍ଠା କରାଯାଉଛି । ଆଗାମୀ ବର୍ଷକ ମଧ୍ୟରେ ରାଜ୍ୟରେ ୪ଗୋଟି ନୂତନ ଏସ୍.ଟି.ପି.ଆଇ. ସ୍ଥାପନ କରାଯିବ । ଏହା ରାଜ୍ୟର ଯାଜପୁର, ସମ୍ବଲପୁର, କୋରାପୁଟ (ଜୟପୁର) ଏବଂ ଅନୁଗୁଳଠାରେ ପ୍ରତିଷ୍ଠା କରାଯିବ ।

## ୨୦୧୯ ସୁଦ୍ଧା ସବୁ ଘରକୁ ବିଜୁଳି ଶକ୍ତି

# ଗତ ଦୁଇ ବର୍ଷରେ ବିଦ୍ୟୁତ୍ ଉପଭୋକ୍ତାଙ୍କ ସଂଖ୍ୟା ବଢ଼ିଛି ୧୧.୫୦ ଲକ୍ଷ

ବର୍ତ୍ତମାନ ସୁଦ୍ଧା ରାଜ୍ୟର ୬୨ ଲକ୍ଷ ଘରକୁ ବିଜୁଳି ଶକ୍ତି ଯୋଗାଇ ଦିଆଯାଇଛି ଏବଂ ୨୦୧୯ ସୁଦ୍ଧା ରାଜ୍ୟର ସବୁ ପରିବାରକୁ ବିଜୁଳି ଶକ୍ତି ଯୋଗାଇ ଦିଆଯିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ନିଷ୍ପତ୍ତି ନେଇଛନ୍ତି ।



ବିଜୁଳି ଶକ୍ତି ଆଧୁନିକ ଜୀବନଶୈଳୀ ଓ ପ୍ରଗତିର ଆଧାର । ଏଣୁ ଉଚ୍ଚମାନର ନିରବଚ୍ଛିନ୍ନ ବିଜୁଳି ଯୋଗାଣ ପାଇଁ ରାଜ୍ୟ ସରକାର ପର୍ଯ୍ୟାପ୍ତ ବ୍ୟବସ୍ଥା କରୁଛନ୍ତି । ବିଜୁ ଗ୍ରାମଜ୍ୟୋତି ଓ ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନାରେ

- **ପ୍ରତିବର୍ଷ ବିଦ୍ୟୁତ୍ ଉପଭୋକ୍ତାଙ୍କ ସଂଖ୍ୟା ହାରାହାରି ୬ ଲକ୍ଷ ହିସାବରେ ବୃଦ୍ଧି ପାଉଛି ।**
- **୨୦୧୯ ସୁଦ୍ଧା ରାଜ୍ୟର ସବୁ ଘରକୁ ବିଜୁଳି ସେବା ଯୋଗାଣ ଲକ୍ଷ୍ୟ ।**
- **୨୪ ଘଣ୍ଟିଆ ନିରବଚ୍ଛିନ୍ନ ବିଦ୍ୟୁତ୍ ଶକ୍ତି ଯୋଗାଣ ଉପରେ ଗୁରୁତ୍ୱ ।**
- **ଏବର୍ଷ ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ହୋଇନାହିଁ ବିଦ୍ୟୁତ୍ କାଟ୍ ।**

ସରକାର ନିଜସ୍ୱ ପାଣ୍ଠିରୁ ବିଦ୍ୟୁତୀକରଣ କାର୍ଯ୍ୟ ଜାରି ରଖିଛନ୍ତି । ଦେଶୀ ଯୋଜନାରେ ୧୦,୦୦୦ ଟ୍ରାନ୍ସଫର୍ମର ସ୍ଥାପନ ହେଉଛି। ୨୦୧୯ ସୁଦ୍ଧା ରାଜ୍ୟରେ ବିଦ୍ୟୁତ୍ ଶକ୍ତି ୬୮୦୦ ମେଗାୱାଟକୁ ବୃଦ୍ଧି କରାଯିବାର ପ୍ରସ୍ତାବ ଥିବାରୁ ଏହାର ପରିବହନ ପାଇଁ ୬୩ଟି ଉଚ୍ଚଶକ୍ତି ସମ୍ପନ୍ନ ଗ୍ରୀଡ୍ ସବ୍‌ଷ୍ଟେସନ ସ୍ଥାପନ ସହିତ ୫୮୦୦ ସର୍କିଟ କି.ମି. ବିଦ୍ୟୁତ୍ ଲାଇନ୍ ଟଣାଯାଉଛି ଓ ୧୧ ହଜାର ଏମଭିଏ ଟ୍ରାନ୍ସଫର୍ମରଗୁଡ଼ିକର କ୍ଷମତା ବୃଦ୍ଧି କରାଯାଉଛି । ଚଳିତ ବର୍ଷ ୧୧ଟି ୨୨୦ କେଭି ଓ ୧୩୨ କେଭି ଗ୍ରୀଡ୍ ଷ୍ଟେସନ କାର୍ଯ୍ୟକ୍ଷମ ହୋଇଛି । କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ପାଇଁ ସ୍ୱତନ୍ତ୍ର ଫିଡର ବ୍ୟବସ୍ଥା କରାଯାଇଛି, ଯେଉଁଥିରେ ଚଳିତ ବର୍ଷ ୧୯ଟି ଫିଡରକୁ କାର୍ଯ୍ୟକ୍ଷମ କରାଯିବ । ଭୁବନେଶ୍ୱରରେ ୧୬୦ କୋଟି ଟଙ୍କା ବିନିଯୋଗରେ ୨୦୦ କି.ମି. ଭୂତଳ କେବ୍‌ଲିଂ ବ୍ୟବସ୍ଥା ହେବା ସହ ୪୦୦୦ କୋଟି ଟଙ୍କା ବ୍ୟୟରେ ଆଉ ୫୦୦ଟି ୩୩/୧୧ କେଭି ସବ୍‌ଷ୍ଟେସନ ନିର୍ମାଣ କରାଯାଉଛି । ୨୦୧୯ ସୁଦ୍ଧା ସବୁ ଘରକୁ ୨୪ ଘଣ୍ଟିଆ ବିଜୁଳି ସେବା ଯୋଗାଣ ଓ ଓଡ଼ିଶାକୁ ବିଦ୍ୟୁତ୍ ବଳକା ରାଜ୍ୟରେ ପରିଣତ କରିବା ଲକ୍ଷ୍ୟ ୨୦୧୯ ସୁଦ୍ଧା ହାସଲ କରିବା ପାଇଁ ରାଜ୍ୟ ସରକାର ବଦ୍ଧପରିକର ।

# ଅପହଞ୍ଚ ଇଲାକାରେ 'ବ୍ୟାଙ୍କ ଅନ୍ ହ୍ୱିଲ୍' ସେବା

ରାଜ୍ୟର ଦୁର୍ଗମ ଓ ଅପହଞ୍ଚ ଇଲାକାରେ କୃଷକମାନଙ୍କୁ ବ୍ୟାଙ୍କ ସେବା ଯୋଗାଇ ଦେବା ନିମନ୍ତେ ଭ୍ରାମ୍ୟମାଣ ବ୍ୟାଙ୍କ (ବ୍ୟାଙ୍କ ଅନ୍ ହ୍ୱିଲ୍) ଆରମ୍ଭ କରାଯାଇଛି । ଋଣ ମିଳିବା ଫଳରେ ସାହୁକାର ଓ ମହାଜନ ଶୋଷଣରୁ ମୁକ୍ତି ମିଳିବା ସହିତ ଆର୍ଥିକ ନେଣଦେଣ ପାଇଁ ଏପରି ସୁବିଧା ବଡକଥା । ଗତବର୍ଷ ସେପ୍ଟେମ୍ବର ୯ ତାରିଖ ଦିନ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଉଦ୍‌ଘାଟିତ ହେବା ପରେ ଭ୍ରାମ୍ୟମାଣ ବ୍ୟାଙ୍କ ଗାଡି ଗଡିଲା କୋରାପୁଟ୍, ମୟୂରଭଞ୍ଜ, ମାଲ୍‌କାନଗିରି, ନବରଙ୍ଗପୁର, ରାୟଗଡା, କଳାହାଣ୍ଡି, ନୂଆପଡା, କେନ୍ଦୁଝର, ସୁନ୍ଦରଗଡ, ସମ୍ବଲପୁର, ଢେଙ୍କାନାଳ, ବୌଦ୍ଧ, କନ୍ଧମାଳ ଓ ନୟାଗଡ ଜିଲ୍ଲାର ପଛୁଆ ଏବଂ ଅପହଞ୍ଚ ଇଲାକାରେ ।




ଏପରି ଭ୍ରାମ୍ୟମାଣ ବ୍ୟାଙ୍କ ସେବା ମିଳିବା ଫଳରେ ଲୋକମାନେ ବ୍ୟାଙ୍କ ଖାତା ଖୋଲି ଟଙ୍କା ଜମା ଓ ଉଠାଣ କରୁଛନ୍ତି, କୃଷିଋଣ ପାଉଛନ୍ତି । ସ୍ମାର୍ଟକାର୍ଡ୍ ଜରିଆରେ ସେମାନଙ୍କ ପ୍ରାପ୍ୟ ନଗଦ ଆକାରରେ ମିଳୁଛି, ପୁଣି ଛାତ୍ରଛାତ୍ରୀମାନଙ୍କ ବୃତ୍ତିଠୁଁ ଆରମ୍ଭ କରି ବାର୍ଦ୍ଧକ୍ୟ ଭତ୍ତା ଯାଏଁ ସେହିଠାରେ ମିଳୁଛି । ଏବେ ରାଜ୍ୟରେ ୨୦ଟି ଭ୍ରାମ୍ୟମାଣ ବ୍ୟାଙ୍କ ଗାଡି କାମ କରୁଛି । ବିଶେଷ କରି ବ୍ୟାଙ୍କ ଶାଖା ନଥିବା ସ୍ଥାନମାନଙ୍କରେ ଏସବୁ ଗାଡି ଏଟିଏମ୍ ଓ କିଓସ୍କ ସୁବିଧା ସହ ଲୋକଙ୍କର ବଡ ଉପକାର କରିପାରୁଛି । ବ୍ୟାଙ୍କସେବା ସହିତ ସମବାୟ ବିଭାଗ ଅନ୍ୟାନ୍ୟ କାର୍ଯ୍ୟକ୍ରମ ହାତକୁ ନେଇଛି । ଚଳିତ ବର୍ଷ ବିଭିନ୍ନ ପ୍ରାଥମିକ କୃଷିଋଣ ସମବାୟ ସମିତିଗୁଡିକରେ କମ୍ପ୍ୟୁଟରୀକରଣ କରାଯିବ, ଫଳରେ ନେଣଦେଣ ଓ ହିସାବ କାମ ହୋଇଯିବ ସରଳ ଓ ଶୀଘ୍ର । ନିୟମିତ ସମବାୟ ଋଣ ପରିଶୋଧ କରୁଥିବା ଚାଷୀମାନଙ୍କ ପାଇଁ ସମବାୟ ବିଭାଗ ସୁଧହାର କମାଇଛନ୍ତି । ଚଳିତ ଖରିଫ ଋତୁରେ ପ୍ରାଥମିକ କୃଷିଋଣ ସମବାୟ ସମିତିମାନେ ୬ ହଜାର କୋଟି ଟଙ୍କାର ଫସଲ ଋଣ ଯୋଗାଇ ଦେବେ । ୭୨୫୯ଟି ପ୍ରାଥମିକ କୃଷିଋଣ ସମବାୟ ସମିତିର ଅଫିସ୍ ଘର ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇଛି । କୃଷକମାନଙ୍କ ପାଇଁ ଧାନଖଳା ନିମନ୍ତେ କଂକ୍ରିଟ୍ ଚଟାଣ, ଅଣ ଧାନ ସଂରକ୍ଷଣ ପାଇଁ ଗୋଦାମ ଘର ଓ ବିଭିନ୍ନ ସ୍ଥାନରେ ୧୦ଟି ବହୁମୁଖୀ ଶୀତଳ ଭଣ୍ଡାର ନିର୍ମାଣ ପାଇଁ ସମବାୟ ବିଭାଗ ପଦକ୍ଷେପ ନେଇଛି । ସମବାୟର ଶକ୍ତିକୁ ନେଇ ଲୋକଙ୍କୁ ସଶକ୍ତ କରିବା ନିମନ୍ତେ ରାଜ୍ୟ ସରକାର ଆନ୍ତରିକ ଉଦ୍ୟମ ଜାରି ରଖିଛନ୍ତି ।



# ସ୍ମୃତି ଓ ଅନୁଭୂତିରେ ବିଜୁବାବୁ

**ସୁରେନ୍ଦ୍ରନାଥ ନାୟକ**

ଉତ୍କଳ ଜନନୀର ବରପୁତ୍ର ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ହୋଇପାରନ୍ତି ଭାରତୀୟ ରାଜନୀତିରେ ଝଡର ଇଗଲ୍ କିମ୍ବା ଇଣ୍ଡୋନେସିଆର ଭୂମିପୁତ୍ର, ସୋଭିଏତ ରୁଷର ଯୁଦ୍ଧ କ୍ଷେତ୍ରର ବୀର । କିନ୍ତୁ ମୋ ପାଇଁ ସେ ଖାଲି ମୋ ମନର ବିଜୁବାବୁ । ପାରାଦ୍ୱୀପ ବନ୍ଦରଠାରୁ ଆରମ୍ଭ କରି ନାଲ୍କୋ, ମିଗ୍ ବିମାନ କାରଖାନା, ସୈନିକ ସ୍କୁଲ, ଚୌଦ୍ୱାରର ଓଟିଏମ୍, ବଡବିଲର କଳିଙ୍ଗ ଆଇରନ୍ ୱାର୍କସ୍, ରାଉରକେଲାର ଇସ୍ପାତ କାରଖାନା, ତାଳଚେରର ତାପଜ ବିଦ୍ୟୁତ୍ ପ୍ରକଳ୍ପ ଓ ବାଲିମେଳାର ଜଳ ବିଦ୍ୟୁତ୍ ପ୍ରକଳ୍ପ ଭଳି ଓଡ଼ିଶାର ବିକାଶ ମାନଚିତ୍ରରେ ତାଙ୍କର ଅମଳିନ ସନ୍ତକ ରହିଯାଇଛି ଅଭୁଲା ସ୍ମୃତି ହୋଇ । ଓଡ଼ିଆ ଜାତି ପ୍ରାଣରେ ଚେତନା ଜାଗ୍ରତ କରି ଓଡ଼ିଶାକୁ ତାହାର ହୃତଗୌରବ ଫେରାଇ ଆଣିବା ଲାଗି ବିଜୁବାବୁଙ୍କ ସଂଘର୍ଷମୟ ଜୀବନର ଇତିହାସ ଏ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ଦିଗବାରେଣୀ ହୋଇ ରହିଥିବ । ଏତେବଡ ବିଶାଳ ବ୍ୟକ୍ତିତ୍ୱଙ୍କର ଖୁବ୍ ନିକଟ ବଳୟରେ ପ୍ରାୟ ଚାରି ଦଶନ୍ଧି ଧରି ନିରବଚ୍ଛିନ୍ନଭାବେ କାମ କରିବାର ଅପୂର୍ବ ସୁଯୋଗ ମୋ ଜୀବନକୁ ଧନ୍ୟ କରିଛି ସତ, କିନ୍ତୁ କେବେହେଲେ ସେ ବ୍ୟକ୍ତିତ୍ୱର ବିଶାଳତା କିମ୍ବା ଗଭୀରତା ମାପିବାର ସାମାନ୍ୟ ଚେଷ୍ଟା ମୁଁ କରିନାହିଁ ।




ବିଜୁବାବୁଙ୍କ ରାଜନୈତିକ ଜୀବନର ପୂର୍ବ କଥା । ତାଙ୍କ ଚିନ୍ତା, ଚେତନା, ବିକାଶର ନକ୍ସା ଯେ ସାଧାରଣ ଭାରତୀୟ ଚିନ୍ତାଧାରାଠାରୁ ଊର୍ଦ୍ଧ୍ୱରେ ଥିଲା, ତାହା ତାଙ୍କ ୟୁନେସ୍କୋ ମାଧ୍ୟମରେ ପ୍ରତିଷ୍ଠା କରିଥିବା 'କଳିଙ୍ଗ ପ୍ରାଇଜ୍', ଯାହା ବିଜ୍ଞାନର ପ୍ରସାର, ବୈଜ୍ଞାନିକ ଚିନ୍ତାଧାରା, ବୈଜ୍ଞାନିକ ଲେଖା ପାଇଁ ପୁରସ୍କାର ଥିଲା । ଏପର୍ଯ୍ୟନ୍ତ ଚବିଶଟି ଦେଶର ପଞ୍ଚଷଠୀ ଜଣ ଯୋଗ୍ୟ ବ୍ୟକ୍ତି ଏହି ପୁରସ୍କାର ପାଇବାରେ ସଫଳ ହୋଇଛନ୍ତି । ଏହା ବ୍ୟତୀତ ଯେକୌଣସି ମେଧାବୀ ଛାତ୍ର ତାଙ୍କ ନଜରକୁ ଆସୁଥିଲା ତାକୁ ଆର୍ଥିକ ସାହାଯ୍ୟ ଦେଇ ତା'ର ଭବିଷ୍ୟତ ଗଢିବା ଦିଗରେ ସହାୟତା କରିବାରେ ସେ କେବେ କୁଣ୍ଠାବୋଧ କରୁନଥିଲେ । ମୋର ବ୍ୟକ୍ତିଗତ ଅନୁଭୂତିରୁ ଜାଣିଛି ମୁଁ ତାଙ୍କ ପାଖକୁ ନେଇଥିବା ମେଧାବୀ ଛାତ୍ର ରିକ୍ତ ହସ୍ତରେ

ଫେରିନି । 'କଳିଙ୍ଗ ପ୍ରାଇଜ୍' କେବଳ ଏକ ମେଧାବୃତ୍ତି ନଥିଲା, ଏହା ସ୍ୱତନ୍ତ୍ର ଦିଗରେ ସୃଷ୍ଟି ହୋଇ ଜନ ସମୂହ ବିକାଶ ଦିଗରେ ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ ଥିଲା । ସ୍ୱାଧୀନତା ଆନ୍ଦୋଳନ ସମୟଠାରୁ ପ୍ରାୟ ୬୦ ବର୍ଷ ଧରି ବିଜୁବାବୁ ସକ୍ରିୟ ରାଜନୀତିରେ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ରହିଥିଲେ । ରାଜନୀତି ଥିଲା ତାଙ୍କ ପାଇଁ ସେବା ତଥା ସଂଗ୍ରାମ ଓ ବିକାଶର ଏକ ମାଧ୍ୟମ । ଦଳୀୟ ରାଜନୀତିର ସଂକୀର୍ଣ୍ଣ ଗଣ୍ଡିରୁ ବାହାରି ସାଧାରଣ ଲୋକଙ୍କ ଆର୍ଥିକ ଓ ସାମାଜିକ ବିକାଶର ଚିନ୍ତାରେ ସେ ନିଜକୁ ଜଡିତ କରି ରଖୁଥିଲେ । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସମସ୍ତଙ୍କୁ ଆପଣାର କରିନେବାର ଏକ ଈଶ୍ୱରୀୟ କଳା ତାଙ୍କଠାରେ ରହିଥିଲା । ଆଉ ତାକୁ ପାଥେୟ କରି ସେ ଯେଉଁ ସମୃଦ୍ଧ ଓଡ଼ିଶା ଗଠନ ପାଇଁ ନିରବଚ୍ଛିନ୍ନ ଉଦ୍ୟମ ଚଳାଇଥିଲେ ତାହାର ପ୍ରତିଛବି ଆଜି ଚାରିଆଡେ ଉଦ୍‌ଭାସିତ । ତେବେ ଏ କ୍ଷେତ୍ରରେ ଅନେକ ସମ୍ଭାବନା ଥିବା ବେଳେ ଆଉ ଅନେକ କାମ ବାକି ରହିଛି ।

ବିଜୁ ବାବୁଙ୍କ ସହ ମୋର ସମ୍ପର୍କ କ୍ଷୀର–ନୀର ଭଳି । ଷାଠିଏ ଦଶକରୁ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ରାଜନୈତିକ କ୍ଷେତ୍ରରେ ଆସିବା ପରଠାରୁ ୧୯୯୭ରେ ତାଙ୍କର ମହାପ୍ରୟାଣ ପର୍ଯ୍ୟନ୍ତ ସୁଖ–ଦୁଃଖ, ବିପଦ–ଆପଦର ଯେତେ ମହାବାତ୍ୟା ବହିଲେ ବି ତାଙ୍କଠାରୁ ମୁଁ କେବେ ଅଲଗା ହୋଇନାହିଁ । ଡିଗ୍ରୀ ପାଇଁ ଉଚ୍ଚଶିକ୍ଷାର ବାରଣ୍ଡା ମାଡିନଥିବା ମୋ ଭଳି ଏକ ସାଧାରଣ ପରିବାରରୁ ଆସିଥିବା ଜଣେ ସାମାନ୍ୟ କର୍ମୀଙ୍କୁ ସେ ଯେଭଳି ଆପଣେଇ ନେଇଥିଲେ ତାହାର ସ୍ମୃତି ଅନେକ । ଦୀର୍ଘ ବର୍ଷର ଏହି ସମ୍ପର୍କ ମଧ୍ୟରେ ସେ ପୁତ୍ରବତ୍ ସ୍ନେହାସିକ୍ତ ଶାସନ ଡୋରିରେ ମୋ ଭଳି ଅନେକଙ୍କୁ ବାନ୍ଧି ରଖୁଥିଲେ । ଆମ ତ୍ରୁଟିବିଚ୍ୟୁତିକୁ ସୁଧାରିବା ପାଇଁ ସେ ଯେମିତି ସାମୟିକ ବିରକ୍ତ ହେଉଥିଲେ ସେହିପରି ଭଲ କାମ କଲେ ଆମକୁ ପ୍ରୋତ୍ସାହନ ସହ ସୁରକ୍ଷା ମଧ୍ୟ ଦେଉଥିଲେ । ବାସ୍ତବରେ ମୋର ରାଜନୈତିକ ଜୀବନରେ ବିଜୁବାବୁ ଥିଲେ ପ୍ରେରଣାର ଅଫୁରନ୍ତ ଉତ୍ସ । ତାଙ୍କ ଜନ୍ମ ଶତବାର୍ଷିକୀ ଅବସରରେ ଅନେକ ତିକ୍ତ ମଧୁର ସ୍ମୃତି ଏବେ ବି ମୋତେ ରୋମାଞ୍ଚିତ କରୁଛି । ସେଥିରୁ ଅଳ୍ପ କେତୋଟିକୁ ନେଇ ଏ ଆଲେଖ୍ୟ । ବ୍ରିଟିଶ୍ ବିରୋଧରେ ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ ଓ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ପରି ସ୍ୱାଧୀନତା ସଂଗ୍ରାମୀଙ୍କୁ ବ୍ରିଟିଶ୍ ଯୁଦ୍ଧ ବିମାନରେ ବମ୍ବେ, ଦିଲ୍ଲୀ ପ୍ରଭୃତି ଗୁପ୍ତ ସ୍ଥାନମାନଙ୍କୁ ନେବା ଆଣିବା କାର୍ଯ୍ୟ ଦକ୍ଷତାର ସହିତ ସେ କରିଥିଲେ ।

ଏକ ପ୍ରଶ୍ନୋତ୍ତରରେ ଲେଖିକା ଗୀତା ମେହେଟ୍ଟାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ କହିଥିଲେ ଯେ ଜଣେ ବ୍ରିଟିଶ ସେନାଧ୍ୟକ୍ଷ ତାଙ୍କୁ 'ବ୍ଲଡି ନେଟିଭ୍' କହିବାଟା ତାଙ୍କୁ ସବୁଠାରୁ ଅଧିକ ବାଧିଥିଲା । ଏମିତିକି ପିଲାଦିନେ ବ୍ରିଟିଶ ସର୍ଜେଣ୍ଟଙ୍କଠାରୁ ମାଡ ଖାଇ ମୁଣ୍ଡରେ ଛଅ ଇଞ୍ଚ ଫାଟ ହେବାଠାରୁ ଅଧିକ । ଲମ୍ବା ସମୟ ଧରି ସଲିଟାରୀ କନ୍‌ଫାଇନ୍‌ମେଣ୍ଟ ମଧ୍ୟ ଏତେ ଆଘାତ ଦେଇ ନଥିଲା । ବିଜୁବାବୁ କ୍ରୋଧରେ ଜର୍ଜରିତ ହୋଇଥିଲେ । ସେ ଉଚ୍ଚପଦସ୍ଥ କମାଣ୍ଡରଙ୍କୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେଇ ବିମାନରୁ ଓହ୍ଲାଇପଡି କହିଥିଲେ, ମୋତେ ଅପମାନ ଦେଲେ ମୁଁ ସହିପାରିବି କିନ୍ତୁ ମୋ ଜାତିକୁ ନୁହେଁ । ଆପଣ ଅନ୍ୟ ଅଣଭାରତୀୟ ପାଇଲଟ୍‌ଙ୍କ ଦ୍ୱାରା ଯାଇପାରନ୍ତି । ବିଜୁବାବୁଙ୍କ ଏହି ନିର୍ଭୀକ ବକ୍ତବ୍ୟ ଶୁଣି ଉଚ୍ଚପଦସ୍ଥ କମାଣ୍ଡରଙ୍କ ମୁହଁ ଲଜ୍ଜାରେ ଝାଉଁଳି ପଡିଥିଲା ।

କଟକରୁ ପାରାଦ୍ୱୀପ ପର୍ଯ୍ୟନ୍ତ ମୋଟର ଉପଯୋଗୀ ରାସ୍ତା ନଥିବାରୁ ଶିଳାନ୍ୟାସ ପାଇଁ କୁଜଙ୍ଗର ଅନନ୍ତପୁର ଲକ୍‌ଠାରୁ ଜଳପଥରେ ଯନ୍ତ୍ରଚାଳିତ ବୋଟ୍‌ରେ ପ୍ରଧାନମନ୍ତ୍ରୀ ପାରାଦ୍ୱୀପ ଯାଇଥିଲେ । ତାଙ୍କ ସହିତ ବିଜୁବାବୁ ଓ ନୀଳମଣି ବାବୁ ମଧ୍ୟ ଯାତ୍ରା କରିଥିଲେ । ନୀଳମଣି ବାବୁ ତାଙ୍କ ଆତ୍ମଜୀବନୀରେ ଏହି ଯାତ୍ରା ସମୟରେ ପ୍ରଧାନମନ୍ତ୍ରୀ ଓ ବିଜୁବାବୁଙ୍କ ମଧ୍ୟରେ ହୋଇଥିବା ଅଭାବନୀୟ କଥୋପକଥନର ଯେଉଁ ବିବରଣୀ ଦେଇଛନ୍ତି, ତାହା ଏଠାରେ ଉଦ୍ଧାର କରୁଛି ।

'ନେହେରୁ ଡେକ୍ ଉପରେ ଚେୟାରରେ ହାଲୁକା ମନରେ ବସି ବିଶ୍ରାମ ନେଉଥାନ୍ତି । ଏହି ସମୟରେ ବିଜୁବାବୁ ବନ୍ଦର ନକ୍ସା ଓ କାଗଜପତ୍ର ଧରି ତାଙ୍କ ପାଖରେ ଉପସ୍ଥିତ ହୋଇ ଓଡ଼ିଶାର ଅଭିବୃଦ୍ଧି ଏବଂ ଉନ୍ନୟନ ସମ୍ବନ୍ଧୀୟ ବିବରଣୀ ଦେଖାଇବାକୁ ଉଦ୍ୟମ କରିଥିଲେ । ହଠାତ୍ ନେହେରୁ ଚିଡିଯାଇ ବିରକ୍ତ ସ୍ୱରରେ କହିଲେ– You damn fool. you have no sense of proportion. I am having a little relaxation and you chose to distrub me. କିନ୍ତୁ ବିଜୁବାବୁ ଘାବରେଇ ନଯାଇ ପାଟି କରି କହିଥିଲେ 'A slight

glance of the Prime Minister at this can change the fate of this backward State and you are reluctant to do that. After Nehru, will India have a Prime Minister who will rise above his own State interest and look to the interest of poor state like Odisha." ଏକଥା ଶୁଣି ନେହେରୁ ଠୋ ଠୋ ହସି ଉଠି କହିଲେ, "Oh ! you know the trick" ତା'ପରେ ସେ ହସି ହସି ନକ୍ସାଗୁଡିକୁ ଦେଖିଥିଲେ ଓ ନୋଟ୍‌ଟି ମଧ୍ୟ ପଢିଥିଲେ । ଏହି ଘଟଣାଟି ଓଡ଼ିଶା ପାଇଁ ଯେଉଁ ସୁଯୋଗ ଆଣି ଦେଇଥିଲା ତାହାର ନାମ ପାରାଦ୍ୱୀପ ବନ୍ଦର । ଏହାର ପରବର୍ତ୍ତୀ ଦିନ ସକାଳେ ପାରାଦ୍ୱୀପ ବନ୍ଦରର ଶୁଭ ଦେବା ଉତ୍ସବ ମହାସମାରୋହରେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା ।

ଦେଶର ଦୁର୍ଭାଗ୍ୟ ନେହେରୁ ୧୯୬୪ମସିହାରେ ସ୍ୱର୍ଗାରୋହଣ କଲେ । ବିଜୁବାବୁଙ୍କର ମର୍ଯ୍ୟାଦାହାନୀ କରିବା ପାଇଁ ବହୁ ଅବାସ୍ତବ ଅଭିଯୋଗ ଅଣାଇ ତାଙ୍କ ବିରୋଧରେ ଖାନ୍ନା କମିଶନ ବସାଗଲା । ସେ ଖାନ୍ନା କମିଶନରେ ଉପସ୍ଥିତ ହୋଇ ବୟାନରେ କହିଥିଲେ– ମୋ ରାଜ୍ୟର ସ୍ୱାର୍ଥ ପାଇଁ ନାଲିଫିତାର ବିଧିବନ୍ଧନକୁ ଛିନ୍ନକରି ଆବଶ୍ୟକ ପଦକ୍ଷେପ ନେଇଛି । ରାଜ୍ୟ ସ୍ୱାର୍ଥ ପାଇଁ ଯାହା ଆବଶ୍ୟକ ତାହାହିଁ ମୁଁ କରିଛି । ଏଥିପାଇଁ ମୋତେ ଦୋଷୀଭାବେ ପ୍ରାଣଦଣ୍ଡ ଦେଇପାରନ୍ତି, କିନ୍ତୁ ଜଷ୍ଟିସ୍ ଖାନ୍ନା, ବିଜୁବାବୁଙ୍କୁ ଦୋଷୀଭାବେ ଦଣ୍ଡ ଦେବା ପରିବର୍ତ୍ତେ ଭୂୟସୀ ପ୍ରଶଂସା କରିଥିଲେ ।

ବିଜୁବାବୁ ଓଡ଼ିଶାର ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ କେନ୍ଦ୍ର ସରକାରଙ୍କ ଉପରେ ବାରମ୍ବାର ଚାପ ପକାଇ ଆସୁଥିଲେ । ୧୯୬୯ ମସିହାରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓଡ଼ିଶା ଗସ୍ତରେ ଆସି ସେଦିନର ପ୍ୟାରେଡ୍ ଫିଲ୍ଡରେ ବକ୍ତୃତାରେ କହିଲେ– ଓଡ଼ିଶାରେ ଗୋଟେ ଭଲ ସାଇକେଲ କାରଖାନା ନଥିଲାବେଳେ ବିଜୁବାବୁଙ୍କ ଦ୍ୱିତୀୟ ଇସ୍ପାତ କାରଖାନା ଏକ ଅବାସ୍ତବ । ସନ୍ଧ୍ୟାରେ ରାଜଭବନରେ ଏକ ନୈଶ୍ୟଭୋଜିରେ ବିଜୁବାବୁଙ୍କୁ ଯୋଗଦେବା ପାଇଁ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଆମନ୍ତ୍ରଣ କଲେ । ବିଜୁବାବୁ ଏହି ଆମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କଲେ । ପରଦିନ ପ୍ରଧାନମନ୍ତ୍ରୀ ଭାଇଜାକ୍ ଓ ହସ୍‌ପେଟ୍‌ଠାରେ ଦୁଇଟି ଇସ୍ପାତ କାରଖାନାର ଶୁଭ ଦେଲେ । ବିଜୁବାବୁ ଏ ଘଟଣାରେ ମର୍ମାହତ ହୋଇ କଂଗ୍ରେସ ତ୍ୟାଗ କରି ରାଜ୍ୟରେ ଉତ୍କଳ କଂଗ୍ରେସ ପ୍ରତିଷ୍ଠା କଲେ । ୧୯୭୧ ମସିହାରେ ଲୋକସଭା ଓ ବିଧାନସଭା ନିର୍ବାଚନ ହେଲା । ଏହି ନିର୍ବାଚନରେ ବିଜୁବାବୁ ନିଜେ ଚାରୋଟି ବିଧାନସଭା ଓ ଗୋଟିଏ ଲୋକସଭା ଆସନରେ ହାରି ଯାଇଥିଲେ ମଧ୍ୟ ମୋ ସହିତ ୩୩ଜଣ ବିଧାୟକ ଓ ସ୍ୱତନ୍ତ୍ର ଦଳର ୩୫ ଜଣ ବିଧାୟକଙ୍କୁ ନେଇ ବିଶ୍ୱନାଥ ଦାସଙ୍କ ମୁଖ୍ୟମନ୍ତ୍ରିତ୍ୱରେ ମନ୍ତ୍ରିମଣ୍ଡଳ ଗଠନ କରି ନିଜ ଦକ୍ଷତା ଓ ପରାକାଷ୍ଠାର ପରିଚୟ ଦେଇଥିଲେ । ଏଥିରୁ ଜଣାପଡେ ତାଙ୍କର ଧୈର୍ଯ୍ୟ, ନିଷ୍ଠା ଓ ଦୃଢମନା ।

୧୯୮୪ ମସିହାର ଏକ ଘଟଣା । ଲୋକସଭା ନିର୍ବାଚନରେ କିଏ କେଉଁଠି ପ୍ରାର୍ଥୀ ହେବ ସେଥିଘେନି ଭୁବନେଶ୍ୱର ଫରେଷ୍ଟ ପାର୍କସ୍ଥିତ ଦଳୀୟ କାର୍ଯ୍ୟାଳୟରେ ଆଲୋଚନା ଚାଲିଥାଏ । ରବି ରାୟ, ନୀଳମଣି ରାଉତରାୟ, ପ୍ରତାପ ମହାନ୍ତି ପ୍ରଭୃତି ଏହି ବୈଠକରେ ଉପସ୍ଥିତ ଥାନ୍ତି । ପୁରୀରୁ ପୂର୍ବତନ ସାଂସଦ ତଥା ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀ ପଦ୍ମଚରଣ ସାମନ୍ତସିଂହାରଙ୍କୁ ପ୍ରାର୍ଥୀ କରିବା ଲାଗି ମୁଁ ପ୍ରସ୍ତାବ ରଖିଲି । ହଠାତ୍ ବିଜୁବାବୁ ବିରକ୍ତ ହୋଇ କହିଲେ– 'ଯାହାଙ୍କର ପାଞ୍ଚ–ଦଶ ହଜାର ଟଙ୍କା ଖର୍ଚ୍ଚ କରିବାର ସମର୍ଥ ନାହିଁ ତାଙ୍କ ନାମ ତୁମେ କାହିଁକି କହୁଛ ? ଦଳର ଆର୍ଥିକ ଅବସ୍ଥା ବୁଝିବାକୁ ତୁମେ କେହି ପ୍ରସ୍ତୁତ ନୁହଁ । ମୁଁ ତ ସବୁ ବିକି ଭାଙ୍ଗି ଦଳ ପାଇଁ ଶେଷରେ ଦିଲ୍ଲୀ ଘର ବିକ୍ରି କଲି । ତଥାପି ତୁମେମାନେ ବୁଝୁନାହଁ ।' ଏ ପ୍ରସଙ୍ଗରେ ତାଙ୍କ ସହ ମୋର ଟିକେ ଯୁକ୍ତିତର୍କ ହେବାରୁ ବିଜୁବାବୁ ବିରକ୍ତ ହୋଇ କହିଲେ– 'ତୁମେ ଆଉ ବକ୍ ବକ୍ ହୁଅ ନାହିଁ । ତୁମକୁ ଦଳରୁ ବହିଷ୍କାର କରିବି ।' ଏ କଥା ମୋତେ ଆଘାତ ଦେଲା । ମୁଁ ବୈଠକ ଛାଡି କଟକ ଚାଲିଗଲି । ସେ ମୋତେ ଖୋଜିଲେ । ପରେ ମୋର ବନ୍ଧୁ ଅଶୋକ ଦାସ ଉପରବେଳା ମୋତେ ନବୀନ ନିବାସ ନେଇଗଲେ । ଦେଖୁ ଦେଖୁ ନବୀନ ନିବାସର ଖାନ୍‌ସାମା ଖୈରାତି କହିଲା– 'ସାର୍ ବିରକ୍ତ ହୋଇ ଆଜି ଖାଇନାହାନ୍ତି ।' ଏହା ଶୁଣି ମୁଁ ବିବ୍ରତ ହୋଇପଡିଲି । ଦେଖାହେବା ମାତ୍ରେ ବିଜୁବାବୁ କହିଲେ– 'ମୁଁ କ'ଣ କହିଦେଲି ବୋଲି ତୁମେ ବୈଠକ

ଛାଡି ପଳାଇଲ ।' ମୁଁ କହିଲି– 'ଆପଣ ବହିଷ୍କାର କଥା କହିବାରୁ ମୋତେ ଅପମାନ ଲାଗିଲା । ମୁଁ ବୈଠକ ଛାଡି ପଳାଇଲି । ମୋତେ କ୍ଷମା ଦେବେ ।' ତା'ପରେ ବିଜୁବାବୁ କହିଲେ– 'ହଉ, ଯାହା ହେଲା ହେଲା, ଆସ ଏବେ ଖାଇବା ।' ଏହା ହେଉଛି ତାଙ୍କ ସହ ମୋର ସମ୍ପର୍କ ।

ଜରୁରୀ ପରିସ୍ଥିତି ପରେ ୧୯୭୭ ମସିହା ଲୋକସଭା ନିର୍ବାଚନରେ ଜନତାପାର୍ଟିର ବିପୁଳ ବିଜୟ ପରେ ବିଜୁବାବୁ କେନ୍ଦ୍ରରେ ମନ୍ତ୍ରୀ ହେଲେ । ବିଧାନସଭା ନିର୍ବାଚନରେ ଓଡ଼ିଶାରେ ଜନତା ପାର୍ଟି ଗଢିବା ପରେ ମୋତେ ବିଧାନସଭାର ଉପବାଚସ୍ପତି ଦାୟିତ୍ୱ ଦେବା କ୍ଷେତ୍ରରେ ବିଜୁବାବୁଙ୍କର ପ୍ରଚ୍ଛନ୍ନ ହାତ ରହିଥିଲା । ୧୯୯୦ ନିର୍ବାଚନରେ ତାଙ୍କ ନେତୃତ୍ୱରେ ଓଡ଼ିଶା ବିଧାନସଭାରେ ଜନତା ଦଳ ସଂଖ୍ୟାଧିକ ଆସନ ଜିଣି ସରକାର ଗଢିଲା । ସେ ମୁଖ୍ୟମନ୍ତ୍ରୀ ହେଲେ । ମୋତେ ତାଙ୍କ ମନ୍ତ୍ରିମଣ୍ଡଳର ରାଜସ୍ୱ ଓ ଅବକାରୀ ବିଭାଗର ମନ୍ତ୍ରୀ କଲେ । ମୋର ଉଚ୍ଚଶିକ୍ଷା ନଥିବାରୁ କେତେକ ଦଳୀୟ ସହକର୍ମୀ ବିଜୁବାବୁଙ୍କ ଏହି ନିଷ୍ପତ୍ତିକୁ ନାପସନ୍ଦ କରିଥିଲେ ମଧ୍ୟ ବିଜୁବାବୁ ଏ କ୍ଷେତ୍ରରେ ଅବିଚଳିତ ଥିଲେ । ଆଉ ତାଙ୍କର ଏ ନିଷ୍ପତ୍ତିକୁ ମୁଁ ଆହ୍ୱାନଭାବେ ଗ୍ରହଣ କରିନେଇଥିଲି ।

ସେତେବେଳେ ମଦ ଦୋକାନୀମାନଙ୍କ ସହ ଆପୋଷ ବୁଝାମଣା କରାଯାଇ ସରକାର ନାମମାତ୍ର ଦରରେ ମଦ ଦୋକାନ ଲାଇସେନ୍ସ ଦେଉଥିଲେ । ମନ୍ତ୍ରୀ ପରିଷଦର କେତେଜଣ ସଦସ୍ୟ ମଦ ଦୋକାନ ସଂଖ୍ୟା ବଢାଇ ଅବକାରୀ ରାଜସ୍ୱ ବୃଦ୍ଧି ଲାଗି ମତ ଦେଉଥାନ୍ତି । କିନ୍ତୁ ମୁଁ ଏଥିରେ ଏକମତ ହେଉନଥାଏ । ମଦ ଦୋକାନ ସଂଖ୍ୟା ନବଢାଇ ଟେଣ୍ଡର ଓ ନିଲାମ୍ ପ୍ରକ୍ରିୟା ପ୍ରଚଳନ ପାଇଁ ମୁଁ ଅଡି ବସିଲି । ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଏହା ବିରୁଦ୍ଧରେ ଯେତେ ଚକ୍ରାନ୍ତ କଲେ ବି ବିଜୁବାବୁ ମୋ ପ୍ରସ୍ତାବରେ ରାଜି ହେଲେ । ଏହାଫଳରେ ମୁଷ୍ଟିମେୟ ମଦ ମାଫିଆଙ୍କ ଏକଚାଟିଆ ବ୍ୟବସାୟର ଅନ୍ତ ଘଟିଲା ଏବଂ ମଦ ଦୋକାନ ସଂଖ୍ୟା ନ ବଢାଇ ଅବକାରୀ ରାଜସ୍ୱ ବି ଢେର୍ ବଢିଲା । ବିଜୁବାବୁଙ୍କ ସରକାରରେ ରାଜସ୍ୱ ମନ୍ତ୍ରୀଭାବେ ଜିଲ୍ଲା ପୁନର୍ଗଠନ କାମ ହାତକୁ ନେବା ବେଳେ ବହୁ ବାଧାବିଘ୍ନ ଆସିଥିଲା । କିନ୍ତୁ ବିଜୁବାବୁଙ୍କ ବଳିଷ୍ଠ ନେତୃତ୍ୱ ଓ ଦୃଢ ନିଷ୍ପତ୍ତି ଯୋଗୁଁ ସେସମୟରେ ରାଜ୍ୟର ଜିଲ୍ଲା ସଂଖ୍ୟା ୧୩ରୁ ବଢି ୩୦ ହୋଇପାରିଥିଲା । ଏହାର ସୁଫଳ ଆଜି ରାଜ୍ୟବାସୀ ଭୋଗୁଛନ୍ତି । ଏ ଶ୍ରେୟ ହେଉଛି ମୋ ନେତା ତଥା ମାର୍ଗଦର୍ଶକ ବିଜୁ ପଟ୍ଟନାୟକଙ୍କର । ସେସମୟରେ ଘଟିଥିବା ବହୁ ଘଟଣା ମଧ୍ୟରୁ ଗୋଟିଏ ଘଟଣା ଏବେ ବି ମୋ ମନକୁ ଆନ୍ଦୋଳିତ କରେ । ଜଣେ ଭୂମିହୀନ ବ୍ୟକ୍ତି ବାରମ୍ବାର ସମ୍ବଲପୁର ଜିଲ୍ଲା ପ୍ରଶାସନକୁ ଆପତ୍ତି କରି କିଛି ଫଳ ନପାଇବା ପରେ ଜିଲ୍ଲାପାଳଙ୍କ ସମ୍ମୁଖରେ ଆତ୍ମାହୂତି ଦେବାକୁ ଘୋଷଣା କରିଥିଲେ । ଏଥିରେ ବି ସେତେବେଳେ ସମ୍ବଲପୁର ଜିଲ୍ଲାପାଳ କିଛି ପଦକ୍ଷେପ ନନେବାରୁ ଗୁହାରି ଜଣାଇବାକୁ ଆସିଥିବା ଭୂମିହୀନ ବ୍ୟକ୍ତି ଜଣକ ନିଜ କଥା ମୁତାବକ ଜିଲ୍ଲାପାଳଙ୍କ ସମ୍ମୁଖରେ ଆତ୍ମାହୂତି ଦେଇ ପ୍ରାଣ ବିସର୍ଜନ କରିଥିଲେ । ୧୯୮୮ ମସିହାର ଏହି ଦୁଃଖଦ ଘଟଣାର ତଦନ୍ତ ଲାଗି ତତ୍କାଳୀନ ପ୍ରଧାନମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ରାଜସ୍ୱ ପର୍ଷଦ ସଦସ୍ୟ ଏହାର ତଦନ୍ତ କରି ଜିଲ୍ଲାପାଳଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଲାଗି ଯେଉଁ ସୁପାରିଶ କରିଥିଲେ ସେହି ନଥିଟି ମୋ ନଜରକୁ ଆସିଲା ୧୯୯୧ ମସିହାରେ । ଏହା ମୁଁ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିଲି ଏବଂ ମୋ ସୁପାରିଶ ଅନୁଯାୟୀ ମୁଖ୍ୟମନ୍ତ୍ରୀ ସମ୍ପୃକ୍ତ ଆଇଏଏସ୍ ଅଫିସରଙ୍କୁ ନିଲମ୍ବନ କଲେ । ଏଥିନେଇ ବିଧାନସଭା ଭିତରେ ଓ ବାହାରେ ବେଶ୍ ଚର୍ଚ୍ଚା ହେଲା । କେହି କେହି ଅସହିଷ୍ଣୁ ସହକର୍ମୀ ଆଇଏଏସ୍‌ଙ୍କୁ ନିଲମ୍ବନ କରାଯିବା ମୋର ଏକ ତ୍ରୁଟି ବୋଲି କହି ବୁଲିଲେ । ବିଧାନସଭାରେ ବିଜୁବାବୁ କହିଲେ– 'ମୋ ରାଜସ୍ୱ ମନ୍ତ୍ରୀ ଯଥାର୍ଥ ଭାବେ ଦାୟିତ୍ୱ ସମ୍ପାଦନ କରିଛନ୍ତି । ଜଣେ ଜିଲ୍ଲାପାଳ ସାଧାରଣ ଲୋକଙ୍କ ବାପ, ମା' ଭଳି । ସେ ଜଣେ ଆପତ୍ତିକାରୀର ଆତ୍ମାହୂତି ଉପଭୋଗ କରିବା ଚରମ ଅପରାଧ । ଏହି ନିଲମ୍ବନ ଆଦେଶ ମୋ ରାଜସ୍ୱ ମନ୍ତ୍ରୀଙ୍କ ସୁପାରିଶକ୍ରମେ ମୁଁ ପ୍ରଦାନ କରିଛି ।' ଏହା ବିଜୁବାବୁଙ୍କ ଦୃଢ ଇଚ୍ଛାଶକ୍ତି ଓ ସମ୍ବେଦନଶୀଳତାର ପରିଚାୟକ ।

ମୁଖ୍ୟମନ୍ତ୍ରୀ ହେବା ପରେ ସେ କହିଲେ ଯେଉଁ ମନ୍ତ୍ରୀମାନଙ୍କର ନିଜସ୍ୱ ଘର ଅଛି ସେମାନେ ସରକାରୀ ବଙ୍ଗଳା ନିଅନ୍ତୁ ନାହିଁ । ମୋତେ କହିଲେ ତୁମର ଅଶୋକ ନଗରରେ ଗୋଟିଏ ଛୋଟ ହେଲେ ବି ଘରଟିଏ ଅଛି । ଖାଇବା ବ୍ୟବସ୍ଥା କରି ଆମକୁ ଡାକ । କିଛି ଦିନ ପରେ ରାତ୍ରି ଭୋଜନ ବ୍ୟବସ୍ଥା

କରି ମୁଁ ତାଙ୍କୁ ଏବଂ ଅନ୍ୟ କେତେକଣ ମନ୍ତ୍ରୀଙ୍କୁ ନିମନ୍ତ୍ରଣ କଲି । ସେ କେବଳ ଖାଇବାକୁ ପସନ୍ଦ କଲେ ତା ନୁହେଁ, ତାଙ୍କ ଆଦେଶ ପାଳନ ହେଉଥିବା ଦେଖି ଆନନ୍ଦିତ ହେଲେ ମଧ୍ୟ ।

ସେତେବେଳର ଅନ୍ୟ ଏକ ସ୍ମୃତି । ସିପିଆଇ ବିଧାୟକ ପ୍ରସନ୍ନ କୁମାର ପଣ୍ଡାଙ୍କ ସହ ସମ୍ବଲପୁର ଜିଲ୍ଲାର କେତେକ ଅଞ୍ଚଳ ଗସ୍ତରେ ଯାଇଥିଲି । ହୀରାକୁଦ ବନ୍ଧ ପାଇଁ ଜମି ହରାଇଥିବା ଲୋକଙ୍କ ଦୁର୍ଦ୍ଦଶା ପ୍ରସନ୍ନ ବାବୁ ଉଠାଇଲେ । ଏହା ପୂର୍ବରୁ ସେ ବିଧାନସଭାରେ ମଧ୍ୟ ଏ କଥା ବାରମ୍ବାର ଜୋର କରି ଉଠାଉଥାନ୍ତି । ଓଡ଼ିଶାର ସ୍ୱାର୍ଥ ପାଇଁ ତିଆରି ହୋଇଥିବା ହୀରାକୁଦ ବନ୍ଧ ଲାଗି ଯେଉଁ ଚାଷୀମାନେ ଜମି ହରାଇ ଥିଲେ ସେମାନଙ୍କୁ ଏକର ପିଛା ମାତ୍ର ୩୦୦ ଟଙ୍କା କରି କ୍ଷତିପୂରଣ ନଗଣ୍ୟ ଥିବାରୁ ଅନେକ ଚାଷୀ ଏହି ଅର୍ଥ ଗ୍ରହଣ କରିନଥିଲେ । ଏହି ଘଟଣା ମୋତେ ଖୁବ୍ ବାଧିଥିଲା । ଏ ପ୍ରସଙ୍ଗ ରାଜସ୍ୱ ମନ୍ତ୍ରୀ ହିସାବରେ ମୁଁ ବିଜୁବାବୁଙ୍କ ନଜରକୁ ଆଣିଲି । ପରବର୍ତ୍ତୀ ସମୟରେ ବିଧାନସଭାରେ ଏହି ଘଟଣା ଆଲୋଚିତ ହେଉଥିବା ବେଳେ ହଠାତ୍ ବିଜୁବାବୁ ନିଜ ଆସନରେ ଛିଡା ହୋଇ ଏହାର ପୁନଃ ବିଚାର ପାଇଁ ପ୍ରତିଶ୍ରୁତି ଦେଲେ । ବିଧାନସଭା ପରେ ସେତେବେଳର ରାଜସ୍ୱ ପର୍ଷଦ ସଦସ୍ୟ ସୁନ୍ଦରରାଜନ୍‌ଙ୍କ ସମେତ ଅନ୍ୟ ବରିଷ୍ଠ ଅଧିକାରୀମାନଙ୍କୁ ଡାକି ଆଲୋଚନା କଲେ । ଅଫିସରମାନେ ଯୁକ୍ତି ବାଢୁଥାନ୍ତି କ୍ଷତିପୂରଣର ଅବଧି ସରିଯାଇଥିବାରୁ ଆଉ ଅର୍ଥ ଦିଆଯାଇପାରିବ ନାହିଁ । ବିଜୁବାବୁ କିନ୍ତୁ ଜୋର୍ ଦେଇ କହିଲେ ଲୋକଙ୍କ ଦୁଃଖ ଲାଘବ କରିବା ପାଇଁ 'ଏକ୍ସ ଗ୍ରାସିଆ' ଦେବାରେ ଅସୁବିଧା କେଉଁଠି ? ଶେଷରେ ଜମି ହରାଇଥିବା ୮୭୪୪ ଚାଷୀମାନଙ୍କୁ ଏକର ପିଛା ୧୦ ହଜାର ଟଙ୍କା କରି 'ଏକ୍ସ ଗ୍ରାସିଆ' ଦେବା ଲାଗି ସ୍ଥିର ହେଲା । କିନ୍ତୁ ଦୁଃଖର କଥା ସବୁ ଚାଷୀ ଏହି 'ଏକ୍ସ ଗ୍ରାସିଆ' ପାଇବା ପୂର୍ବରୁ ବିଜୁବାବୁଙ୍କ ସରକାରର କାର୍ଯ୍ୟକାଳ ପୂରିଗଲା ଓ ଅନେକଙ୍କୁ ଏବେ ବି ଏହି ସହାୟତା ରାଶି ମିଳିପାରି ନାହିଁ ।

୧୯୮୦ ଦଶକରେ ଅବିଭକ୍ତ କଳାହାଣ୍ଡିରେ ସୃଷ୍ଟି ହୋଇଥିବା ଅଭୂତପୂର୍ବ ମରୁଡି ଦୁର୍ଭିକ୍ଷ ଭଳି ଅବସ୍ଥା ସୃଷ୍ଟି ହେବାରୁ ଅନାହାର ମୃତ୍ୟୁ, ଶିଶୁ ଓ ଝିଅ ବିକ୍ରି ଭଳି ବହୁ ଅଘଟଣ ଘଟିଥିଲା । ସେତେବେଳେ ଏକ ଜନସ୍ୱାର୍ଥ ମାମଲାର ବିଚାର କରି ଓଡ଼ିଶା ହାଇକୋର୍ଟ ଅନାହାର ମୃତ୍ୟୁ ଘଟିଥିବା ସତ୍ୟ ବୋଲି ଉଲ୍ଲେଖ କରିବା ସହିତ ହାଇକୋର୍ଟଙ୍କ ଦ୍ୱାରା ବସାଯାଇଥିବା କମିଶନଙ୍କ ରିପୋର୍ଟ ଆଧାରରେ ଅନାହାର ମୃତ୍ୟୁବରଣ କରିଥିବା ପରିବାରଙ୍କୁ ସରକାର ୨୫ ହଜାର ଟଙ୍କା କରି ଅନୁକମ୍ପା ସହାୟତା ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ହାଇକୋର୍ଟଙ୍କ ଏହି ରାୟ ବିରୁଦ୍ଧରେ ସୁପ୍ରିମ୍‌କୋର୍ଟରେ ଅପିଲ୍ କରିବା ପାଇଁ ଆସିଥିବା ପ୍ରସ୍ତାବକୁ ରାଜସ୍ୱ ମନ୍ତ୍ରୀଭାବେ ମୁଁ ରୋକ୍‌ଠୋକ୍ ପ୍ରତ୍ୟାଖ୍ୟାନ କରିଥିଲି । ତେବେ ଅମଲାତନ୍ତ୍ରର କିଛି ଅଧିକାରୀ କାର୍‌ସାଦି କରି ଭିନ୍ନ ବାଟରେ ମୁଖ୍ୟମନ୍ତ୍ରୀଙ୍କଠାରୁ ମଞ୍ଜୁରୀ ଆଣିବା ଘଟଣା ମୋତେ କ୍ଷୁବ୍ଧ କରିଥିଲା । ଏହା ଯେତେବେଳେ ତାଙ୍କ ନଜରକୁ ଆଣିଲି ସେ ତୁରନ୍ତ ନିଜ ନିଷ୍ପତ୍ତି ବଦଳାଇ ହାଇକୋର୍ଟଙ୍କ ରାୟ କେବଳ କାର୍ଯ୍ୟକାରୀ କରିବାକୁ କହିଲେ ନାହିଁ ବରଂ ପ୍ରତି ପରିବାରକୁ ସରକାର ୨୫ ହଜାର ଟଙ୍କାର ସରକାରୀ ଅନୁକମ୍ପା ରାଶି ଦେବା ସହିତ ମାଗଣା ବାସଗୃହ ଓ ସେ ନିଜେ ବ୍ୟକ୍ତିଗତଭାବେ ଆଉ ୨୫ ହଜାର ଟଙ୍କା କରି ଦେବେ ବୋଲି ଘୋଷଣା କଲେ । ଏଥିରୁ ସାଧାରଣ ଲୋକଙ୍କ ପାଇଁ ଦରଦ ସହଜରେ ଅନୁମେୟ ।

ସେତେବେଳେ ଗଞ୍ଜାମ ଜିଲ୍ଲାରେ ସୃଷ୍ଟି ହୋଇଥିବା ଅଭୂତପୂର୍ବ ବନ୍ୟା ପରିସ୍ଥିତି ଦେଖିବା ପାଇଁ ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ସହିତ ମୁଁ ଓ ମୁଖ୍ୟ ଶାସନ ସଚିବ ଯାଇଥିଲୁ । ସେଠି ଗାଁ ଗାଁ ବୁଲିବା ବେଳେ ଗୋଡ ଖସିଯିବାରୁ ବିଜୁବାବୁ ଆଘାତପ୍ରାପ୍ତ ହେଲେ । ଏଣେ ରାତି ହୋଇଗଲେ ହେଲିକପ୍ଟର ଉଡିପାରିବ ନାହିଁ, ତେଣେ ଲୋକଙ୍କ ଜିଗର୍ ଅଧିକରୁ ଅଧିକ ଗାଁକୁ ଯିବା ପାଇଁ । ଏ ପରିପ୍ରେକ୍ଷୀରେ କିଛିଲୋକ ଆମକୁ ଟଣାଓଟରା କରିବାକୁ ବି ପଛାଇଲେ ନାହିଁ । ତେବେ ବିଜୁବାବୁ ଭିଡ ଭିତରୁ ମୋତେ ଟାଣି ଆଣି ହେଲିକପ୍ଟରରେ ଭୁବନେଶ୍ୱର ଆଣିଲେ ଏବଂ ତତ୍‌କ୍ଷଣାତ ବିପନ୍ନ ଲୋକଙ୍କ ପାଇଁ ବ୍ୟାପକ ବ୍ୟବସ୍ଥା କଲେ । ୧୯୯୪ରେ ସେ ଭବାନୀପାଟଣା ଗସ୍ତରେ ଯିବା ବେଳେ ଜଣେ ଉଦ୍‌ଭ୍ରାନ୍ତ ଯୁବକର ଟେକାମାଡରେ ଆହତ ହେଲେ । ମୋର ସହଯୋଗୀ ମନ୍ତ୍ରୀ ନଳିନୀକାନ୍ତ ମହାନ୍ତି ଓ ମୁଁ ତୁରନ୍ତ ତାଙ୍କ ପାଖକୁ ଯିବା ପାଇଁ ବାହାରିଲୁ । ତେବେ ସେ ଭଲ ଅଛନ୍ତି ଓ ଆମମାନଙ୍କର ସେଠାକୁ ଯିବା ଦରକାର ନାହିଁ

ବୋଲି ରୋକ୍‌ଠୋକ୍‌ଭାବେ କହିଲେ । ଟେକା ଫିଙ୍ଗିଥିବା ଲୋକଟିକୁ ପୋଲିସ ଧରିଥିଲା । ତାକୁ ବିଜୁବାବୁ ପଚାରିଲେ, 'ମୁଁ ତୋର କ'ଣ କ୍ଷତି କରିଥିଲି ଯେ ତୁ ପଥର ମାରି ମୋତେ ରକ୍ତାକ୍ତ କଲୁ ।' ଲୋକଟି କହିଲା– 'ବଡ ନେତାମାନଙ୍କ ଗସ୍ତବେଳେ ଅନ୍ୟମାନଙ୍କ ପ୍ରରୋଚନାରେ ଆମେ ଏହି କାମ କରିଥାଉ । ଆପଣଙ୍କୁ ଆଘାତ ଦେବା ମୋର ଉଦ୍ଦେଶ୍ୟ ନଥିଲା ।' ଆଉ ଏପରି କରିବୁ ନାହିଁ ବୋଲି ତାଗିଦ୍ କରି ତାକୁ ଛାଡିଦେବାକୁ ମୁଖ୍ୟମନ୍ତ୍ରୀ ପୋଲିସକୁ ନିର୍ଦ୍ଦେଶ ଦେଲେ । ଏ ହେଉଛନ୍ତି ଅନନ୍ୟ ବିଜୁ ପଟ୍ଟନାୟକ ।

ତାଙ୍କ ସହ ଶେଷ ଦେଖା ୧୯୯୭ ମାର୍ଚ୍ଚ ୩୧ ତାରିଖରେ । ସେତେବେଳକୁ ସେ ଲୋକସଭା ସଦସ୍ୟ ଥା'ନ୍ତି । ସବୁଦିନ ପରି ସେଦିନ ବି ବିଜୁବାବୁ ସକାଳ ୯ଟା ବେଳକୁ ଦଳୀୟ କାର୍ଯ୍ୟାଳୟକୁ ଆସିଥାନ୍ତି । ଆଉ କେହି ନଥାନ୍ତି । ମୁଁ ତାଙ୍କ ପାଖରେ ବସିଲି । ସେ କହିଲେ– 'ତୁମେମାନେ କାହିଁକି ଏପରି ହେଉଛ ?' ମୁଁ ବିବ୍ରତ ହୋଇ କହିଲି ଆପଣ କାହିଁକି ଏପରି କହିଲେ ? ଆପଣଙ୍କ ସାନ୍ନିଧ୍ୟ ଓ ସହାନୁଭୂତିରେ ତ ମୁଁ କାମ କରୁଛି । ସେ କହିଲେ– ତୁମର ନୁହେଁ, ତୁମ ବନ୍ଧୁମାନଙ୍କ ଆଚରଣ କ'ଣ ? ପରେ ୧୦ଟା ବେଳକୁ ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟର୍ସଠାରେ ଅନୁଷ୍ଠିତ ଏକ ଯୁବ ସମ୍ମିଳନୀକୁ ତାଙ୍କ ସହ ମୁଁ ଗଲି । ସେଠାରେ ଓଡ଼ିଶାର ଯୁବକମାନଙ୍କୁ ଆବେଗର ସହ ସମ୍ବୋଧନ କରି ବିଜୁବାବୁ ବହୁ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଦେଇ କହିଥିଲେ– 'ଓଡ଼ିଶାର ଯୁବକମାନଙ୍କଠାରୁ ମୁଁ ବହୁତ କିଛି ଆଶା କରେ, ନିରାଶ କରିବ ନାହିଁ ।' ଏହି ଶେଷ ସଭା ପରେ ସେ ଦିଲ୍ଲୀ ଗଲେ ଓ ଅସୁସ୍ଥତା ଯୋଗୁଁ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ଖବର ପାଇ ତାଙ୍କୁ ଦେଖିବା ପାଇଁ ଆମେ ବି ଦିଲ୍ଲୀ ଦୌଡିଲୁ । ଏ ଜାତିକୁ ଉଠାଇବା ପାଇଁ ଯେ ବଜ୍ର ନିର୍ଘୋଷ କରୁଥିଲେ, ସେ ସେଠି ନିସ୍ତବ୍ଧ ହୋଇ ଡାକ୍ତରଖାନା ଶଯ୍ୟାରେ ଶୋଇବାର ଦେଖି କଲିଜା ଛିଣ୍ଡିଯିବା ଭଳି ଲାଗୁଥିଲା । ୧୭ ଦିନର ଚିକିତ୍ସା ପରେ ବିଜୁବାବୁ ଆମ ସମସ୍ତଙ୍କୁ ଛାଡି ଚାଲିଗଲେ । କେବଳ ମୁଁ ନୁହେଁ ଏହା ସାରା ଓଡ଼ିଶା ତାଙ୍କ ମୃତ୍ୟୁରେ ସ୍ତବ୍ଧ ହୋଇପଡିଲା। ହେଲେ ତାଙ୍କ ଶେଷ ଇଚ୍ଛା ମୁତାବକ ତାଙ୍କୁ ତାଙ୍କ ପ୍ରିୟ ଓଡ଼ିଶାବାସୀ ନିରାଶ କରିବେ କି ନାହିଁ ତାହା ଇତିହାସ କହିବ । ଓଡ଼ିଶାର ବିକାଶ ପୁରୁଷଙ୍କ ବିୟୋଗରେ ଏକ ଯୁଗର ଅବସାନ ଘଟିଲା । ଦିଲ୍ଲୀରୁ ତାଙ୍କ ପାର୍ଥିବ ଶରୀର ନବୀନ ନିବାସକୁ ଆସିଲା ଓ ସେଠାରୁ ପୁରୀର ସ୍ୱର୍ଗଦ୍ୱାର ନିଆଯାଇ ଅନ୍ତିମ ସତ୍କାର କରାଗଲା । ନବୀନ ନିବାସରୁ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ଶେଷଯାତ୍ରାରେ ଜନସମୁଦ୍ର ମଧ୍ୟରେ ମୁଁ କେଉଁଠି ହଜି ଯାଉଥିଲି । ଏହି ପ୍ରବାଦ ପୁରୁଷଙ୍କୁ ପ୍ରଣିପାତ କରିବା ପାଇଁ ସେତେବେଳର ପ୍ରଧାନମନ୍ତ୍ରୀଙ୍କ ସହିତ ବହୁ ପୂର୍ବତନ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରୀୟ ନେତା ସ୍ୱର୍ଗଦ୍ୱାରରେ ସମବେତ ହୋଇ ଶେଷ ଶ୍ରଦ୍ଧାଞ୍ଜଳି ଜଣାଇଲେ । ତାଙ୍କ ପାର୍ଥିବ ଶରୀର ଲେଲିହାନ ଶିଖାରେ ବିଲୀନ ହୋଇଗଲା । ଆଉ ମୋତେ ଲାଗିଲା ଯେମିତି ସବୁକିଛି ସରିଗଲା । ବିଜୁବାବୁ ଆଜି ସଶରୀରରେ ନାହାନ୍ତି ସତ, ହେଲେ ତାଙ୍କ ସହ ମୋର ପ୍ରାୟ ଚାରି ଦଶନ୍ଧିର ଅନ୍ତରଙ୍ଗ ସମ୍ପର୍କରୁ ସୃଷ୍ଟ ଶହ ଶହ ସ୍ମୃତି ଏବେ ବି ସତେ ଯେମିତି ମୋତେ ତାଙ୍କ ଉପସ୍ଥିତିକୁ ଚେତାଇ ଦେଉଛି ।

ପୂର୍ବତନ ମନ୍ତ୍ରୀ



# ବିପ୍ଳବିଣୀ ଅନ୍ନପୂର୍ଣ୍ଣା ମହାରଣା

**ସୁବିଦ୍ୟା ଦେବୀ**

ଏଇ ମାଟିର ସୁଯୋଗ୍ୟ ସନ୍ତାନ, ସୁନାମଧନ୍ୟା ଅନ୍ନପୂର୍ଣ୍ଣା ମହାରଣା, ଓଡ଼ିଆ ଜନମାନସରେ ଅତି ଆଦର ଓ ଶ୍ରଦ୍ଧାର ସହିତ ସେ 'ଚୁନି ଅପା' ବୋଲି ପରିଚିତ । ତାଙ୍କର ଅସାଧାରଣ କାର୍ଯ୍ୟାବଳୀ ଓ ଅନନ୍ୟ ଜନସେବା ତାଙ୍କୁ ଅତୁଳନୀୟ କରି ତୋଳିଛି ।

ଓଡ଼ିଶା ମାଟିର ଏକ ବିଶିଷ୍ଟ ଗାନ୍ଧିବାଦୀ ପରିବାରରେ ତାଙ୍କର ଜନ୍ମ । ପିତା ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ ଓ ମାତା ମହୀୟସୀ ରମା ଦେବୀଙ୍କ କୋଳମଣ୍ଡନ କରି ଯେଉଁଦିନ ସେ ଧରାପୃଷ୍ଠକୁ ଆସିଥିଲେ, ସେହି ବିଶେଷ ଦିନଟି ଥିଲା ୧୯୧୭ ମସିହା ନଭେମ୍ବର ମାସର ୩ ତାରିଖ । ପିଲାଟି ଦିନରୁ ପରିବାରର କର୍ମ ପ୍ରବାହରେ ସେ ଭାସିବା ଆରମ୍ଭ କରିଥିଲେ । ପରିବାରର ପ୍ରାୟ ସମସ୍ତ ସଦସ୍ୟ ଯଥା ପିତା ଗୋପବନ୍ଧୁ ଚୌଧୁରୀ, ମାଆ ରମା ଦେବୀ, ଦାଦା ନବକୃଷ୍ଣ ଚୌଧୁରୀ, ଖୁଡୀ ମାଳତୀ ଚୌଧୁରୀ, ଭାଇ ମନମୋହନ ଚୌଧୁରୀଙ୍କର ସର୍ବୋଦୟ ଭାବନା, ସାମାଜିକ ସଂସ୍କାର ମନସ୍କତା, ଅକୁଣ୍ଠ ଜନସେବା, ବିପ୍ଳବୀ ଚେତନା, ତ୍ୟାଗପୂତ ମନୋଭାବ, ବିଳାସ ବିହୀନ ଜୀବନଧାରା ଅନ୍ନପୂର୍ଣ୍ଣାଙ୍କୁ ଅତି ମାତ୍ରାରେ ପ୍ରଭାବିତ କରିଥିଲା । ଯାହାଫଳରେ ଶୈଶବ କାଳରୁ ହିଁ ସେ ଏକ ଭିନ୍ନ ମାର୍ଗରେ ପଦଚାଳନା କରିବାକୁ ଶିଖିଥିଲେ । ତାହାରି ଫଳସ୍ୱରୂପ ମାତ୍ର ବାରବର୍ଷ ବୟସରେ ସେ ନିଜକୁ କିଶୋରୀ ସୁଲଭ ଚପଳତାରୁ ଆଡେଇ ରଖି ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ 'ପୂର୍ଣ୍ଣ ସ୍ୱରାଜ' ଆନ୍ଦୋଳନରେ ସେହି ବୟସରୁ ହିଁ ଝାସ ଦେଇଥିଲେ । ପରବର୍ତ୍ତୀ କାଳରେ ଚଉଦ ବର୍ଷ ବୟସରେ ଲବଣ ଆଇନ୍ ଅମାନ୍ୟ କରି ତାଙ୍କ ଜୀବନର ପ୍ରଥମ କାରାବରଣ କରି ଅଭିନବ ଦୃଷ୍ଟାନ୍ତ ରଖିଥିଲେ । ସେହିଦିନଠାରୁ କାରାବାସକୁ ସେ ତୀର୍ଥବାସ ବୋଲି ମାନି ନେଇଥିଲେ । ପରବର୍ତ୍ତୀ ଜୀବନରେ ଦେଖାଦେଇଛି ଯେ ସେ ଯେତେଥର କାରାଦଣ୍ଡ ଭୋଗ କରିଛନ୍ତି,



ତାହା ତାଙ୍କୁ କେବେ ବି ବିମର୍ଷ ଅବା ନିରୁତ୍ସାହିତ କରିନାହିଁ । ବରଂ ବ୍ରିଟିଶ ଶାସନ ବିରୁଦ୍ଧରେ ସଂଗ୍ରାମ ଜାରି ରଖି ସେ ଅନେକ ଥର କାରାବରଣ କରିଛନ୍ତି ଏବଂ ପ୍ରତ୍ୟେକ ଥର କାରାମୁକ୍ତ ହେବାପରେ ସେ ଅଧିକ ଉତ୍ସାହର ସହିତ ନୂତନ ପନ୍ଥା ଓ ଯୋଜନା ଆପଣେଇ ପୁଣି ସେହି କାର୍ଯ୍ୟରେ ଲାଗି ପଡୁଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବାଲ୍ୟକାଳରୁ ହିଁ ସେ ଥିଲେ ଧୀର, ଶାନ୍ତ, ସ୍ନେହୀ, ଅବିଚଳିତା କିନ୍ତୁ ନିର୍ଭୀକ । ନିଜ ମା' ପୂଜ୍ୟା ରମା ଦେବୀଙ୍କ କାନି ଧରି ବାଟ ଚାଲିବାକୁ ଆରମ୍ଭ କରିଥିବା ଅଲିଅଳି ଝିଅ ଚୁନି, ପରବର୍ତ୍ତୀ ଜୀବନରେ ନିଜର ମହାନତା ବଳରେ କାର୍ଯ୍ୟଦକ୍ଷତାକୁ ପାଥେୟ କରି ଯୋଗ୍ୟ ତଥା ଆଦର୍ଶ ସ୍ଥାନୀୟ ପିତାମାତାଙ୍କର ସୁଯୋଗ୍ୟ ସନ୍ତାନ ବୋଲି ନିଜକୁ ପ୍ରମାଣିତ କରିଥିଲେ । କ୍ଷମତା ରାଜନୀତିରୁ ନିଜକୁ ଦୂରେଇ ରଖି ବିବିଧ ସକାରାତ୍ମକ କାର୍ଯ୍ୟକ୍ରମ ସହିତ ଜଡିତ ରହି ମଧ୍ୟ ରଚନାତ୍ମକ କ୍ଷେତ୍ରରେ ନିଜକୁ ନିମଗ୍ନ କରି ଦେଇଥିଲେ । ଗାନ୍ଧିଜୀଙ୍କ ସହିତ ତାଙ୍କର କେତେକ ପତ୍ର ବିନିମୟ

ହେବାର ସୁଯୋଗ ଘଟିଥିଲା । ଏହି କେତୋଟି ପତ୍ର ତାଙ୍କୁ ଅଧିକ ଉତ୍ସାହ ଓ ପ୍ରେରଣା ଯୋଗାଇ ତାଙ୍କୁ ନିଜ କର୍ମକ୍ଷେତ୍ରରେ ଆଗକୁ ବଢ଼ାଇଥିଲା । ସେବା, ଶ୍ରମ, ସ୍ୱାଧ୍ୟାୟ, ସତ୍ୟ ଓ ସ୍ପଷ୍ଟବାଦିତାର ବ୍ରତକୁ ସେ ଜୀବନର ଶେଷ ପର୍ଯ୍ୟନ୍ତ ପାଳନ କରିଥିଲେ । ଅନେକ ସ୍ଥଳରେ ଯଥା ବନ୍ୟା, ବାତ୍ୟା, ସାମ୍ପ୍ରଦାୟିକ ଦଙ୍ଗା ଆଦି ସମୟରେ ସେ ଅନେକ ଥର ସାହସିକତାର ପରିଚୟ ଦେଇ ପରିସ୍ଥିତିକୁ ସାମ୍ନା କରି ଆସିଛନ୍ତି ଓ ଅନ୍ୟମାନଙ୍କୁ ସେଇ ଦୁଃସାହସିକ ପଦକ୍ଷେପ ନେବାକୁ ଆହ୍ୱାନ ବି ଦେଇଛନ୍ତି । ଦୁର୍ବିପାକ କିମ୍ବା ସାମାଜିକ ଅସ୍ଥିରତାରେ ସେ ନିଆଁକୁ ଝାସ ଦେଲାପରି ନିର୍ଭୀକତାର ସହିତ ଘଟଣାସ୍ଥଳରେ ପହଞ୍ଚି ଯାଉଥିଲେ । ତାଙ୍କର ଏକ ବିଶେଷ ଗୁଣ ଥିଲା, ସେ ନିଜେ କର୍ମୀ ହୋଇ ଅନ୍ୟକୁ ଆହ୍ୱାନ ଦେଇ କର୍ମରେ ନିୟୋଜିତ କରୁଥିଲେ । ତାଙ୍କୁ ସେହି କୌଶଳଟି ଜଣାଥିଲା । ଏସବୁ ସତ୍ତ୍ୱେ ନାମ, ଯଶ, ଅର୍ଥ, ପ୍ରତିପତ୍ତି କିମ୍ବା ପୁରସ୍କାର ପାଇଁ ସେ ତାଙ୍କ ଜୀବନ କାଳରେ କେବେ ବି ଅବାଟରେ ପାଦ ପକେଇ ନଥିଲେ । ତାଙ୍କ ପରେ ମଧ୍ୟ ଓଡ଼ିଶାବାସୀ ମୁକ୍ତ କଣ୍ଠରେ ଘୋଷଣା କରିବାକୁ କୁଣ୍ଠାବୋଧ କରିବେ ନାହିଁ ଯେ ସେବା, ସଂଘର୍ଷ ଓ ସଂକଳ୍ପର ଅନ୍ୟ ଏକ ନାମ ଅନ୍ନପୂର୍ଣ୍ଣା ମହାରଣା ଅବା ଚୁନି ଅପା । ଜୀବନର ଦୀର୍ଘ ୯୫ ବର୍ଷରୁ ଶେଷ କେତୋଟି ବର୍ଷ ଜରା କବଳିତ ହୋଇ କର୍ମରହିତ ହୋଇ ସୁଦ୍ଧା ସେ ଚିନ୍ତାଶୂନ୍ୟ ହୋଇ ନଥିଲେ । ଦାରିଦ୍ର୍ୟ, ଅନ୍ୟାୟ ଓ ଅସହାୟ ମହିଳାଙ୍କ ପାଇଁ ସେ ମାନସିକ ସ୍ତରରେ ବି ଲଢେଇ ଜାରି ରଖିଥିଲେ । ଏଥିପାଇଁ ତାଙ୍କୁ ପରୋକ୍ଷରେ ଖୋରାକ ଯୋଗାଇ ଆସିଥିଲା ଗାନ୍ଧିଜୀଙ୍କ ଚିନ୍ତା ଓ ବିନୋବାଜୀଙ୍କ ଚେତନା । ଅବଶ୍ୟ ତାଙ୍କ ସ୍ୱାମୀ ଶରତ ଚନ୍ଦ୍ର ମହାରଣାଙ୍କ ଉତ୍ସାହ ଅନ୍ନପୂର୍ଣ୍ଣାଙ୍କୁ ଅଧିକ ସକ୍ରିୟ ଓ ସାହସୀ କରିବାକୁ ପ୍ରେରଣା ଯୋଗାଇ ଥିଲା । ଶରତ ବାବୁ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ଚନ୍ଦ୍ରମୋହନ ମହାରଣାଙ୍କ ପୁତ୍ର । ସେସମୟରେ ଶରତ ଚନ୍ଦ୍ର ମହାରଣା ଓଡ଼ିଶାର ସର୍ବପ୍ରଥମ ଏମ୍.ଇଡି ହୋଇ ମଧ୍ୟ ଅର୍ଥକରୀ ମନୋଭାବ ତ୍ୟାଗ କରି ଦେଶସେବା ଓ ଜନସେବାକୁ ଜୀବନର ଶ୍ରେଷ୍ଠ ବ୍ରତ ବୋଲି ବରି ନେଇଥିଲେ । ଉଭୟ ସ୍ୱାମୀ ସ୍ତ୍ରୀ ବିବାହର ଅଳ୍ପଦିନ ପରେ ୧୯୪୨ ମସିହା 'ଭାରତଛାଡ' ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି କାରାଦଣ୍ଡ ଭୋଗିଥିଲେ । ଦୁହିଁଙ୍କର ଜୀବନର ମୂଳମନ୍ତ୍ର ଥିଲା ଦେଶସେବା । ଦୁହେଁ ଥିଲେ ମିଷ୍ଟଭାଷୀ, ସ୍ନେହୀ, ପରୋପକାରୀ, ପରିଶ୍ରମୀ ଓ ତ୍ୟାଗୀ । ଚିନ୍ତନ ଓ ଚେତନରେ ଉଭୟଙ୍କର ଅପୂର୍ବ ସାମଞ୍ଜସ୍ୟ ଥିବା ହେତୁ ସେମାନଙ୍କର ଦୀର୍ଘ ଦାମ୍ପତ୍ୟ ଜୀବନ ସୁଖମୟ, ଅନୁକରଣୀୟ ତଥା ଆଦର୍ଶସ୍ଥାନୀୟ ହୋଇ ପାରିଥିଲା । ଦୁହିଁଙ୍କର ନମ୍ରତା ଓ ଆଭୂଷଣ ଥିଲା ମାନବିକତା ଓ ନିରାଡମ୍ବର ଜୀବନଚର୍ଯ୍ୟା । ଆଉ ଏକ ଗୁଣ ଦୁହିଁଙ୍କ ମଧ୍ୟରେ ବିଦ୍ୟମାନ ଥିଲା ତାହା ହେଉଛି ଏକ ସାହିତ୍ୟିକର ଚିନ୍ତାଧାରା । ଦୁହେଁ ଅନେକ ରଚନାତ୍ମକ ସୃଷ୍ଟିରେ ସମୟ ବିନିଯୋଗ କରୁଥିଲେ ।

ଅନ୍ନପୂର୍ଣ୍ଣାଙ୍କର ପାରମ୍ପରିକ ସ୍କୁଲ ଶିକ୍ଷା ଓ କଲେଜର ଡିଗ୍ରୀ ହାସଲ କରିବାର ସୁବିଧା ଓ ସୁଯୋଗ ଆସି ନଥିଲା କିମ୍ବା ସେଥିପାଇଁ ସେ ବିଶେଷ ଆଗ୍ରହୀ କିମ୍ବା ଲାଳାୟିତ ନଥିଲେ । କିନ୍ତୁ ନିଜର ଅଧ୍ୟବସାୟ ଓ ଦୃଢ଼ ଇଚ୍ଛାଶକ୍ତି ବଳରେ ସେ ପ୍ରଚୁର ଜ୍ଞାନ ଆହରଣ କରିଥିଲେ । ମାତୃଭାଷା ଓଡ଼ିଆ ବ୍ୟତୀତ ହିନ୍ଦୀ, ବଙ୍ଗଳା, ଇଂରାଜୀ, ଗୁଜରାଟୀ ଓ ମରହଟୀ ଆଦି ଭାଷାର ସାହିତ୍ୟ ଉପରେ ତାଙ୍କର ଦଖଲ ଥିଲା । କର୍ମବ୍ୟସ୍ତ ଜୀବନ ଭିତରେ ରହି ମଧ୍ୟ ଜୀବନର ଅନନ୍ୟ ଅନୁଭୂତିମାନଙ୍କୁ ଅତି ସାବଲୀଳ ଢଙ୍ଗରେ ବର୍ଣ୍ଣନା କରି ସେ ପାଠକମାନଙ୍କୁ ଛୁଇଁ ପାରିଛନ୍ତି ତାଙ୍କର ବିଭିନ୍ନ ସାହିତ୍ୟ କୃତି ମାଧ୍ୟମରେ । ତନ୍ମଧ୍ୟରୁ ତାଙ୍କର ଜୀବନ ଚରିତ 'ଅମୃତ ଅନୁଭବ' ଅନ୍ୟତମ । ଅନ୍ୟାନ୍ୟ ଭାଷାର ସୁସ୍ଥ ସାହିତ୍ୟ ଓ ଗାନ୍ଧୀ–ବିନୋବା ଦର୍ଶନ ସମ୍ବଳିତ ପୁସ୍ତକ କେତୋଟି ଅନୁବାଦ କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସେହି ପୁସ୍ତକମାନଙ୍କ ମଧ୍ୟରେ ଗୀତା ପ୍ରବଚନର ଓଡ଼ିଆ ଅନୁବାଦ, ଭାଗବତ ଧର୍ମ ସାର, ସ୍ଥିତପ୍ରଜ୍ଞ ଦର୍ଶନ, ନାରୀଶକ୍ତି, ଶିକ୍ଷାତତ୍ତ୍ୱ, ଆଚାର୍ଯ୍ୟକୁଳ, ରାଷ୍ଟ୍ରୀୟ ଯୋଜନାର ମୂଳକଥା, ଶାନ୍ତିସେନା ଓ କାରାଗାର କାହାଣୀ ଆଦି କେତେକ ପୁସ୍ତକ । ଚମ୍ବଲ ଉପତ୍ୟକାର ଦୁର୍ଦ୍ଦାନ୍ତ ଦସ୍ୟୁମାନଙ୍କର ଆତ୍ମସମର୍ପଣ ଘଟଣାକୁ ସେ ନିଜସ୍ୱ ଶୈଳୀରେ 'ଚମ୍ବଲର ବନ୍ଧୁକ ଗାନ୍ଧିଜୀଙ୍କ ପାଦତଳେ' ଶିରୋନାମାରେ ପ୍ରକାଶ କରି ପାଠକ ମହଲରେ ଆଲୋଡନ ସୃଷ୍ଟି କରିଥିଲେ । ପରବର୍ତ୍ତୀ କାଳରେ ଏହା 'ଦସ୍ୟୁ ହୃଦୟର ଦେବତା' ନାମକ ପୁସ୍ତକ ରୂପେ ପ୍ରକାଶିତ ହୋଇଥିଲା । ସେ ଯେ କେବଳ ଜଣେ ସାହିତ୍ୟିକା, ଗାନ୍ଧିବାଦୀ, ସ୍ୱାଧୀନତା ସଂଗ୍ରାମୀ ଥିଲେ ତାହା ନୁହେଁ, ସେ ଥିଲେ ମିଷ୍ଟଭାଷୀ, ସ୍ନେହଶୀଳା, ହାସ୍ୟରସପ୍ରିୟା, ହୃଦୟବତ୍ତାରେ ଭରା ଜଣେ ଆଦର୍ଶ ନାରୀ । ତାଙ୍କର ଦୁଇପୁତ୍ର ଜ୍ଞାନଦେବ ଓ କର୍ମଦେବଙ୍କୁ ଶିକ୍ଷା ଦେବାରେ ଓ ମାନବିକତା ଗୁଣରେ ପରିପୁଷ୍ଟ କରିବାରେ ସେ କେବେ ବି ଅବହେଳା

କରିନାହାନ୍ତି । ଦୁଇ ପୁତ୍ରଙ୍କୁ ପ୍ରତିଷ୍ଠିତ କରାଇବାରେ ଉଭୟ ପିତାମାତାଙ୍କର ଅବଦାନ ସେମାନେ ସ୍ୱୀକାର କରନ୍ତି ।

ଅନ୍ନପୂର୍ଣ୍ଣାଙ୍କର ଏକ ମହତ୍ ଗୁଣ ଥିଲା ନିର୍ଭୀକତା । ଅନ୍ୟକୁ ସାହାଯ୍ୟ କରିବାକୁ ଯେକୌଣସି ବିପଦ ମଧ୍ୟକୁ ଲମ୍ଫ ପ୍ରଦାନ କରିବାରେ ସେ ଥିଲେ ଧୁରନ୍ଧର । ମାତ୍ର ପନ୍ଦର ବର୍ଷ ବୟସରେ ସେ ଏକ ଦୁରୂହ କାର୍ଯ୍ୟର ଭାର ନିଜ ଉପରକୁ ନେଇଥିଲେ, ତାହା ହେଲା ଦୈନିକ 'ସମାଜ'ର ସଂସ୍କରଣକୁ ଘରେ ଘରେ ପହଞ୍ଚାଇବାର ଦାୟିତ୍ୱ । ସେ କାର୍ଯ୍ୟରେ ପୋଲିସ୍‌ର ବାଧାକୁ ଲଂଘନ କରି ଏହି କାର୍ଯ୍ୟଟି ତୁଲାଇ ଥିଲେ । ତାଙ୍କ ଜୀବନର ସାୟାହ୍ନ ପର୍ଯ୍ୟନ୍ତ 'ସମାଜ'ର ପ୍ରଥମ ହକର ହୋଇଥିବାର ଗର୍ବ ତାଙ୍କୁ ଉଲ୍ଲସିତ କରାଉଥିଲା । ଅତୀତର ଏହିସବୁ ଘଟଣା ବଖାଣିବା ବେଳେ ସେ ଖୁବ୍ ଉତ୍ସାହିତ ହୋଇ ପଡୁଥିଲେ । ଏହା ବ୍ୟତୀତ ବିନୋବାଜୀଙ୍କ ଭୂଦାନ, ଗ୍ରାମଦାନ ଆନ୍ଦୋଳନରେ ସେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ଏହା ସହିତ ପରବର୍ତ୍ତୀ କାଳରେ ଅଗମ୍ୟ ଦୁର୍ଗମ ଅଞ୍ଚଳରେ କନ୍ୟାଶ୍ରମ ସ୍ଥାପନ, ନାରୀର ସାମାଜିକ ଉତ୍‌ଥାନ ପାଇଁ ଅନୁଷ୍ଠାନ, ଉତ୍କଳ ସର୍ବୋଦୟ ମଣ୍ଡଳ, ଗାନ୍ଧୀ ସ୍ମାରକ ନିଧି, ଭୂଦାନ ଯଜ୍ଞ ସମିତି, ଉତ୍କଳ ଖଦୀ ମଣ୍ଡଳ, ଉତ୍କଳ ନବଜୀବନ ମଣ୍ଡଳ, ଆଚାର୍ଯ୍ୟ ହରିହର ଟ୍ରଷ୍ଟ, ନାଗରୀ ଲିପି ପରିଷଦ ପରି ବହୁ ଅନୁଷ୍ଠାନ ସହିତ ସେ ଜଡିତ ଥିଲେ ଓ ତାହାର ଉନ୍ନତି କଳ୍ପେ ସକ୍ରିୟ ଅଂଶଗ୍ରହଣ କରୁଥିଲେ । କିନ୍ତୁ ପ୍ରକୃତ ପକ୍ଷେ କହିବାକୁ ଗଲେ ଅନ୍ନପୂର୍ଣ୍ଣା ମହାରଣା ଜଣେ ବ୍ୟକ୍ତି ନଥିଲେ ସେ ଥିଲେ ଏକ ବହୁମୁଖୀ ଅନୁଷ୍ଠାନ । ଅନେକ ଗୁରୁ ଦାୟିତ୍ୱର ଭାର ବହନ କରି ମଧ୍ୟ ସେ ଜୀବନର କୌଣସି ଦିଗ ପ୍ରତି ଅବହେଳା କରି ନାହାନ୍ତି । ସେବା, ତ୍ୟାଗ, କର୍ତ୍ତବ୍ୟନିଷ୍ଠା, ଦେଶସେବା, ବିପ୍ଳବ ଚେତନା, ନିରାଡମ୍ବର ଜୀବନଯାପନର ନିଦର୍ଶନ ଅନ୍ୟମାନଙ୍କର ଅନୁକରଣୀୟ ହୋଇ ରହିବ । ଏକ ଅଗ୍ନିଶିଖା ସାଜି ଅନ୍ନପୂର୍ଣ୍ଣା ସମଗ୍ର ଜୀବନ ଜଳିଛନ୍ତି ଓ ସେହି ଆଲୋକ ପିଣ୍ଡ ଆଡକୁ ଏକାଧିକ ମଣିଷକୁ ଆକର୍ଷିତ କରିଛନ୍ତି । ସେହି ମଣିଷମାନେ ପତଙ୍ଗ ସମ ସେଇ ସେବା, ତ୍ୟାଗର ଅଗ୍ନିରେ ଝାସ ଦେଇ ନିଜ ଜୀବନର ସାର୍ଥକତା ହୃଦୟଙ୍ଗମ କରିପାରିଛନ୍ତି । ଗାନ୍ଧିଜୀଙ୍କର ମହତ୍‌ବାଣୀ 'ଉଚ୍ଚ ଚିନ୍ତା ଓ ସରଳ ଜୀବନ'କୁ ସେ ଜୀବନର ମୂଳମନ୍ତ୍ରଭାବେ ପାଳନ କରିଥିଲେ ଶେଷ ପର୍ଯ୍ୟନ୍ତ । ପ୍ରଚଳିତ ସମାଜରେ ଜାତିଭେଦ, ଧନୀ ଦରିଦ୍ରଙ୍କ ମଧ୍ୟରେ ବିତ୍ତ ଭେଦ ସବୁକୁ ସେ ଦି'ହାତରେ ଆଡେଇ ଦେଇ ପାରିଥିଲେ ବୋଲି ସେ ସମସ୍ତଙ୍କୁ ସ୍ନେହ ପ୍ରେମର ଦି' ହାତରେ କୁଣ୍ଢେଇ ପାରୁଥିଲେ । ଧନୀ ତଥା ଆଭିଜାତ୍ୟପୂର୍ଣ୍ଣ ପରିବାରର ଝିଅ ବୋହୂଙ୍କ ସଙ୍ଗେ ସେ ଯେମିତି ମିଶି ପାରୁଥିଲେ, ଗରିବ ଖଟିଖିଆ, ଦିନ ମଜୁରିଆ ସ୍ତ୍ରୀଲୋକଟିକୁ ସେ ସେତିକି ସ୍ନେହରେ ବାନ୍ଧି ପାରୁଥିଲେ । ସମ୍ମାନ ସ୍ୱୀକୃତିଠାରୁ ବହୁ ଦୂରରେ ଥିବା ଅନ୍ନପୂର୍ଣ୍ଣା ମହାରଣା, ଓଡ଼ିଶାର ଅଧିକାଂଶ ଘରେ ପରିଚିତ 'ଚୁନି ଅପା' । ତାଙ୍କର ଅବଦାନ ପାଇଁ ଅନେକଥର ତାଙ୍କୁ ବିଶେଷ ସମ୍ମାନରେ ସମ୍ମାନିତ କରାଯାଇଥିଲା । ଜୀବନବ୍ୟାପୀ ଜନସେବାର ସ୍ୱୀକୃତି ସ୍ୱରୂପ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ସମ୍ମାନସୂଚକ 'ଡକ୍ଟରେଟ୍' ଉପାଧି ପ୍ରଦାନ କରାଯାଇଥିଲା । ପୁଣି ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କୁ ଭୂଷିତ କରାଯାଇଥିଲା 'ଉତ୍କଳରତ୍ନ' ଉପାଧିରେ । ଏହା ବ୍ୟତୀତ ୨୦୦୩ ମସିହାରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ପାଇଁ ରାଷ୍ଟ୍ରପତି ପୁରସ୍କାରରେ ପୁରସ୍କୃତ ହୋଇଥିଲେ ଏବଂ ୨୦୦୬ ମସିହା ସମ୍ମାନଜନକ 'ସାରଳା ପୁରସ୍କାର'ରେ ତାଙ୍କୁ ସମ୍ମାନିତ କରାଯାଇଥିଲା । ସେ କିନ୍ତୁ ପୁରସ୍କାର, ସମ୍ମାନ ପ୍ରଦାନ ଆଦିରେ ଯେମିତି ବିମୋହିତ ହେଉ ନଥିଲେ, ସେମିତି ଜୀବନରେ ଆସିଥିବା ଅନେକ ଘାତ ପ୍ରତିଘାତକୁ ଦୃଢ ଚିତ୍ତରେ ସାମ୍ନା କରି କେବେ ବି ବିଚଳିତ ହେଉନଥିଲେ । ତେଣୁ ତାଙ୍କୁ ଗୀତା ବର୍ଣ୍ଣିତ ସ୍ଥିତପ୍ରଜ୍ଞ ଆଖ୍ୟା ଦେଲେ ଅତ୍ୟୁକ୍ତି ହେବନାହିଁ ।

ସେ ଜନ୍ମ ଲଭିଥିଲେ ସଂଗ୍ରାମୀ କୁଳରେ । ଜୀବନଯାପନ କରିଥିଲେ ଏକ ସତ୍ୟାଗ୍ରହୀ ଯୋଦ୍ଧାର । ସେ ରଚିଥିବା ସେବା, ସଂଗ୍ରାମର ସୁଦୃଢ ସାମ୍ରାଜ୍ୟ ତାଙ୍କ ଅବର୍ତ୍ତମାନରେ ସେ ସାମ୍ରାଜ୍ୟ ଆଦି ଯେପରି ଭୁଶୁଡି ନପଡେ, ତା'ର ଗୁରୁ ଦାୟିତ୍ୱ ସେ ଦେଇ ଯାଇଛନ୍ତି ଓଡ଼ିଶାବାସୀଙ୍କୁ । ଅନେକ ଗୁଣାବଳୀର ଅଧିକାରିଣୀ ସ୍ୱୟଂସମ୍ପୂର୍ଣ୍ଣା, ଜ୍ୱଳନ୍ତ ବହ୍ନିଶିଖାଟିଏ ନିର୍ବାପିତ ହେଲା ୨୦୧୨ ମସିହା ଡିସେମ୍ବର ମାସ ୩୧ ତାରିଖ ରାତିରେ, ୯୫ ବର୍ଷ ବୟସରେ । ବିଦାୟ ବର୍ଷର ଶେଷ ମୁହୂର୍ତ୍ତରେ ଆମେ ବିଦାୟ ଦେଲୁ ସେଇ ସ୍ୱୟଂସିଦ୍ଧାଙ୍କୁ କିନ୍ତୁ ଆମ ହୃଦୟରେ ସାଇତା ହୋଇ ରହିଗଲା ସେଇ ଅନନ୍ୟା, ଅତୁଳନୀୟା ଅନ୍ନପୂର୍ଣ୍ଣାଙ୍କର ଅଲିଭା ସ୍ମୃତିସବୁ । 'ଅମୃତ ଅନୁଭବ'ର ସ୍ରଷ୍ଟା ଅପସରି ଗଲେ ଧରାରୁ, ଲୁଚିଗଲେ ଆମ ଆଖିରୁ କିନ୍ତୁ ଅଗଣିତ ଓଡ଼ିଶାବାସୀଙ୍କ ମନରେ ବୋଳିଦେଇ ଯାଇଛନ୍ତି ସେବା, ତ୍ୟାଗ, ନିଷ୍ଠା ଓ ପ୍ରେମର ସମାହାରରେ ଗଢା ଅମୃତମୟ ଜୀବନ ସ୍ୱାଦ ।

ହେରାଗୋହିରୀ ସାହି, ପୁରୀ

# ସରଳା ଦେବୀ

**ସରୋଜା ପଣ୍ଡା**

'ମୋର ଭାବ ଜଗତରେ ବିପ୍ଳବ ଅସାମ୍ୟ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଏବଂ ରାଷ୍ଟ୍ରର ଲୌହଶୃଙ୍ଖଳକୁ ଛେଦନ କରି ମୁକ୍ତ ଆକାଶର ବିହଙ୍ଗୀ ହେବାକୁ ମୋର ମନରେ ଅଦମ୍ୟ ସ୍ପୃହା ଜାତ ହୋଇଥିଲା । ସେହି କାରଣରୁ ମୋର ସୀମିତ କର୍ମ ପ୍ରଚେଷ୍ଟାରେ ଯାହା ସମ୍ଭବ ହେଉନଥିଲା, ତାହା ଉଦ୍‌ଗାରିତ ହୋଇ ପଡୁଥିଲା ମୋର ଅଗ୍ନିବାହୀ ବାଣୀରେ– ଆଉ ଯାହା ହୋଇପାରୁ ନଥିଲା ତାକୁ ପ୍ରକାଶ କରିବାକୁ ସାହାଯ୍ୟ କରୁଥିଲା ମୋର ଲେଖା । କ୍ରିୟାର ପ୍ରତିକ୍ରିୟାକୁ ପ୍ରକାଶ କରୁଥିଲା ମୋର ଲେଖା– ଆଉ ଏହି ଲେଖାରେ ଆସୁଥିଲା ମୋର ପ୍ରାଣାକୃତିର ସ୍ନିଗ୍ଧତମ ବିରାମ ମନ ଓ ହୃଦୟର ଶାନ୍ତି ।'

ଉପରୋକ୍ତ ଓଜସ୍ୱିନୀ ଶବ୍ଦପୁଞ୍ଜ ଓଡ଼ିଶାର ଅଗ୍ରଗଣ୍ୟ ନାରୀନେତ୍ରୀ ସରଳା ଦେବୀଙ୍କର ଲେଖନୀ ନିଃସୃତ ଓ ଡଗର ପତ୍ରିକାରେ ପ୍ରକାଶିତ 'ମୁଁ କାହିଁକି ଲେଖେ' ପ୍ରବନ୍ଧର ଅନୁଚ୍ଛେଦରୁ ସଂଗୃହିତ । ସରଳା ଦେବୀ ଏକାଧାରାରେ ଜଣେ ଆତ୍ମୋତ୍ସର୍ଗୀ ସ୍ୱାଧୀନତା ସଂଗ୍ରାମୀ, କଲ୍ୟାଣକାରୀ ସମାଜସେବୀ, ସୃଜନଶୀଳ ସାହିତ୍ୟିକା ଏବଂ ନାରୀ ସମାଜ ନିମନ୍ତେ ଜଣେ ଦକ୍ଷ ପ୍ରଥପ୍ରଦର୍ଶିକା ଭାବେ ସଦା ସ୍ମରଣୀୟ ଅଟନ୍ତି । ସରଳା ଦେବୀଙ୍କ ସରଳ ମନର ସୂକ୍ଷ୍ମ ଅନ୍ତରାଳେ ସମାଜର କୁତ୍ସିତ ଓ ବୀଭତ୍ସ ସଂକୀର୍ଣ୍ଣତା ବିରୁଦ୍ଧରେ ଅଭିଯାନ କରିବାର ଅନାୟସ ଉଦ୍ୟମ ସଦା ତତ୍ପର ଓ ଏହି ଆଦର୍ଶ ତାଙ୍କୁ କେବଳ ଓଡ଼ିଶାର ନୁହେଁ ଜାତୀୟ ସ୍ତରରେ ଏକ ମହିୟସୀ ଜନନାୟିକାଭାବେ ଚିତ୍ରିତ କରିପାରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ଅବିଭକ୍ତ କଟକ ଜିଲ୍ଲାର ନରିଲୋ ଗ୍ରାମର ଏକ ସଂଭ୍ରାନ୍ତ କରଣ ପରିବାରରେ ୧୯୦୪ ମସିହା ଅଗଷ୍ଟ ମାସ ୪ ତାରିଖ ଦିନ ସରଳା ଦେବୀ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ବାସୁଦେବ କାନୁନ୍‌ଗୋ ଓ ମାତା ପଦ୍ମାବତୀ ଦେବୀ ଅତ୍ୟନ୍ତ ରକ୍ଷଣଶୀଳ ମନୋବୃତ୍ତି ସମ୍ପନ୍ନ ଜମିଦାର ପରିବାରର ହୋଇଥିବା ଯୋଗୁଁ ସେମାନେ ନାରୀଶିକ୍ଷା ପ୍ରତି ସଚେତନ ନଥିଲେ । କିନ୍ତୁ ସେମାନଙ୍କ ଚିନ୍ତା ଓ ଚେତନା, କର୍ମ ଓ ସାଧନାର ଜାତୀୟ ପ୍ରେମ ସ୍ପଷ୍ଟ ଅନୁମେୟ, ଯାହାର ସୁନ୍ଦର ରୂପାନ୍ତରଣ ସରଳା ଦେବୀଙ୍କ ଆଦର୍ଶରେ ଉପଲବ୍ଧ ହୁଏ । ତତ୍‌ଭିନ୍ନ ଦାଦା ବାଳମୁକୁନ୍ଦ କାନୁନ୍‌ଗୋ ଯେ କି ସେସମୟରେ କଟକ ଜିଲ୍ଲାର ବାଙ୍କୀରେ ଡେପୁଟି କଲେକ୍ଟର ଥିଲେ । ତାଙ୍କର ପ୍ରଭାବ ସରଳା ଦେବୀଙ୍କ ଉପରେ ପଡିଥିଲା । ଅନ୍ୟାନ୍ୟ ନିକଟ ସମ୍ପର୍କୀୟଙ୍କ ମଧ୍ୟରେ ରାୟବାହାଦୁର ରାଜକିଶୋର ଦାସ, ନନ୍ଦ କିଶୋର ଦାସ ଓ ଉତ୍କଳଗୌରବ ମଧୁସୂଦନ ଦାସ ଆଦିଙ୍କ ସାନ୍ନିଧ୍ୟ ତାଙ୍କୁ ଅନେକ ପରିମାଣରେ ପ୍ରଭାବିତ କରିଥିଲା ।

ସରଳା ଦେବୀ ବାଙ୍କୀରେ ଦାଦା ବାଳମୁକୁନ୍ଦ କାନୁନ୍‌ଗୋଙ୍କ ଘରେ ରହି ଗ୍ରାମ୍ୟ ପାଠଶାଳାରେ ବାଲ୍ୟଶିକ୍ଷା ଆରମ୍ଭ କରିଥିଲେ । ସେସମୟରେ ଶିକ୍ଷାର ପ୍ରସାର ଘଟିନଥିଲେ ମଧ୍ୟ ବାଳମୁକୁନ୍ଦ ଦେବ ସରଳାଙ୍କ ଶିକ୍ଷାପ୍ରତି ସଚେତନ ଥିଲେ । ଏଣୁ ତାଙ୍କ ଶିକ୍ଷା ପାଇଁ ଏକ ଗୃହଶିକ୍ଷକ ନିଯୁକ୍ତି କରିଥିଲେ । ଗୃହଶିକ୍ଷକଙ୍କ ପାଖେ ଷଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢିଥିଲେ ସରଳା ଦେବୀ । ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇଥିଲେ ହେଁ ସରଳା ଦେବୀ ଘରେ ହିନ୍ଦୁ ଧର୍ମଗ୍ରନ୍ଥ, ଓଡ଼ିଆ ସାହିତ୍ୟର ଇତିହାସ, ବିଶେଷତଃ ରାଧାନାଥ ରାୟ ଓ ଫକୀର ମୋହନଙ୍କ ଲେଖା ବେଶି ପଢୁଥିଲେ । ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଇଂରେଜୀ, ଉର୍ଦ୍ଦୁ ଏଇ ପାଞ୍ଚୋଟି ଭାଷା ସେ ଜାଣିଥିଲେ ଏବଂ ଏହି ସମସ୍ତ

ଭାଷାରେ ଅନର୍ଗଳ ବକ୍ତୃତାଦି ଦେଇ ପାରୁଥିଲେ । ଓଡ଼ିଆ ସାହିତ୍ୟ ସହ ବଙ୍ଗଳା ସାହିତ୍ୟ ଓ ହିନ୍ଦୀ ସାହିତ୍ୟରେ ତାଙ୍କର ବିଶେଷ ରୁଚିଥିଲା । ବାଙ୍କୀ ରାଣୀ ଶୁକଦେଈଙ୍କ ନିଜ ଜନ୍ମଭୂମି ପ୍ରତି ଆତ୍ମତ୍ୟାଗ ଏବଂ ସାହସ ତାଙ୍କୁ ଗଭୀରଭାବେ ଅନୁପ୍ରେରିତ କରିଥିଲା । ନାରୀମାନଙ୍କୁ ସମାଜରେ ଉପଯୁକ୍ତ ସ୍ଥାନଦେଇ ଏକ ସୁସ୍ଥ ସମାଜ ଗଢିବା ପାଇଁ କୁନ୍ତଳା କୁମାରୀ ଯେଉଁ ଆହ୍ୱାନ ଦେଇଥିଲେ, ତାହା ସରଳା ଦେବୀଙ୍କ ହୃଦୟତନ୍ତ୍ରୀକୁ ଝଂକୃତ କରିଥିଲା । ଗାନ୍ଧିଜୀଙ୍କୁ ସେ ନିଜର ଆଦର୍ଶ ମଣୁଥିଲେ ଓ ତାଙ୍କରି ଅନୁପ୍ରେରଣାରେ ଅହିଂସାବାଦୀ ଜାତୀୟ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭୂମିକା ଗ୍ରହଣ କରିବା ନିମନ୍ତେ ଆକର୍ଷିତ ହୋଇଥିଲେ ।

ସରଳା ଦେବୀ ୧୯୧୮ ମସିହାରେ ରେଭେନ୍ସା ଗାର୍ଲସ୍ ସ୍କୁଲରେ ମିଡିଲ ଷ୍ଟାଣ୍ଡାର୍ଡରେ ପଢୁଥିବା ସମୟରେ କେବଳ ମାତ୍ର ୧୪ ବର୍ଷ ବୟସରେ ଜଗତସିଂହପୁର ଅଞ୍ଚଳର ଜମିଦାର ଚୌଧୁରୀ ଦୁର୍ଗାଚରଣଙ୍କ ପୁତ୍ର ଓକିଲ ଭାଗୀରଥି ମହାପାତ୍ରଙ୍କ ସହ ବିବାହ ମାତା ପିତାଙ୍କ ଇଚ୍ଛାନୁସାରେ ସମ୍ପୂର୍ଣ୍ଣ ହୋଇଥିଲା । ଏହି ବିବାହ ମଣିକାଞ୍ଚନ ସଂଯୋଗ ସଦୃଶ ଥିଲା । ଭାଗୀରଥିଙ୍କ ଜାତୀୟବାଦୀ ଓ ସଂସ୍କାରମୂଳକ ଚିନ୍ତାଧାରା ସରଳା ଦେବୀଙ୍କ ମୁକ୍ତିକାମୀ ମନପ୍ରତି ଅନୁକୂଳ ହୋଇଥିଲା ।

ତୁଳସୀ ଦୁଇପତ୍ରରୁ ବାସିବା ଭଳି ପିଲାଦିନରୁ ସରଳା ଦେବୀ ଥିଲେ ସ୍ୱାଧୀନ ଚେତା ଓ ଅନନ୍ୟା । ପାରମ୍ପରିକ ପ୍ରଥା, କୁସଂସ୍କାର ଓ ଅନ୍ଧବିଶ୍ୱାସର ସେ ଥିଲେ ଘୋର ବିରୋଧୀ । ଘରେ ଓ ବାହାରେ ସମସ୍ତ ପ୍ରକାର ସମାଲୋଚନା ଓ ମନ୍ତବ୍ୟର ତୀକ୍ଷ୍ଣ ତାଡନା ତାଙ୍କୁ ଭାଙ୍ଗିପାରି ନଥିଲା । ତାଙ୍କ ଚିନ୍ତାଧାରା ସବୁବେଳେ ଥିଲା ନିଆରା– 'ସାମାନ୍ୟ ଛୁଇଁଲେ ଯେ ପାପ ଲାଗିଯାଏ ଏକଥା ସେ ଆଦୌ ବିଶ୍ୱାସ କରିପାରୁ ନଥିଲେ । ତାଙ୍କ ଆଦର୍ଶ ଚିନ୍ତାଧାରାର ଅନ୍ୟ ଏକ ଦିଗ ଥିଲା ନାରୀର ବାଧା ଓ ସମସ୍ୟା, ଯାହା ସବୁବେଳେ ତାଙ୍କ ହୃଦୟକୁ ଆନ୍ଦୋଳିତ କରୁଥିଲା । ନିଜର ଅଭିଳାଷକୁ ପୂରଣ କରିବାର ଆପ୍ରାଣ ପ୍ରଚେଷ୍ଟା ଓ ସକାରାତ୍ମକ ଚିନ୍ତାଧାରା ତଥା କର୍ତ୍ତବ୍ୟନିଷ୍ଠା ତାଙ୍କୁ ଏକ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରିଣୀ ହେବାରେ ସହାୟ ହୋଇଥିଲା । ସର୍ବୋପରି ଭଗବାନଙ୍କ ଆଶୀର୍ବାଦ ପତିଙ୍କ ସହଯୋଗରେ ୧୯୨୦ ମସିହାରୁ ସେ ଜଣେ ସକ୍ରିୟ ସ୍ୱାଧୀନତା ସଂଗ୍ରାମୀଭାବେ ଜାତୀୟ ମୁକ୍ତି ମହାସଂଗ୍ରାମରେ ପ୍ରତ୍ୟକ୍ଷଭାବେ ସଂଶ୍ଳିଷ୍ଟ ହୋଇଥିଲେ । ପତି ଭାଗୀରଥି ମହାପାତ୍ର ସ୍ତ୍ରୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଓକିଲାତି ଛାଡି ମୁକ୍ତି ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ସରଳା ଦେବୀଙ୍କ ଚେତନା ଓ ଆଦର୍ଶ ଗାନ୍ଧିଜୀଙ୍କ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଥିଲେ । ସେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଶାର ନାରୀମାନଙ୍କ ହୃଦୟରେ ବିପ୍ଳବର ବହ୍ନି ଜାଳି ଲବଣ ସତ୍ୟାଗ୍ରହଠାରୁ ଆରମ୍ଭ କରି ରଚନାତ୍ମକ କାର୍ଯ୍ୟରେ ଅଗ୍ରଣୀ ଭୂମିକା ନିର୍ବାହ କରିବାର ଆତ୍ମବିଶ୍ୱାସ ସୃଷ୍ଟି କରିପାରିଥିଲେ । ଛୁଆଁ–ଅଛୁଆଁ ଭେଦଭାବ ଦୂର କରିବାରେ ତାଙ୍କର ଭୂମିକା ଥିଲା ଉଲ୍ଲେଖନୀୟ । ତାଙ୍କରି ଉଦ୍ୟମରେ ଉତ୍କଳ ମହିଳା ସମ୍ମିଳନୀ ଗଠିତ ହେଲା ଯେଉଁଥିରେ ପୁରପଲ୍ଲୀରୁ ବିପୁଳ ସମର୍ଥନ ସହ ସ୍ପୃଶ୍ୟ ତଥା ଅସ୍ପୃଶ୍ୟ ଜାତିର ନାରୀ ପ୍ରତିନିଧି ଭାଗନେବା ତତ୍କାଳୀନ ତଥାକଥିତ ରକ୍ଷଣଶୀଳ ଉତ୍କଳୀୟ ସମାଜ ପ୍ରତି କୁଠାରଘାତ ଥିଲା । ନାରୀ କଲ୍ୟାଣ ସମିତି ସ୍ଥାପନା ଓ ବିଭିନ୍ନ ପତ୍ରିକା ମାଧ୍ୟମରେ ନାରୀଙ୍କ ସମସ୍ୟା ଆଲୋଚନା କରି ସରଳା ଦେବୀ ନାରୀଙ୍କ ନିମନ୍ତେ ଅନେକ ଉନ୍ନତିମୂଳକ କାର୍ଯ୍ୟ କରିଯାଇଛନ୍ତି ।

ସ୍ୱାଧୀନତା ସଂଗ୍ରାମରେ ଭାଗନେଇ ଜେଲ୍ ଯାଇଥିବା ପ୍ରଥମ ଓଡ଼ିଆ ମହିଳା ହେଉଛନ୍ତି ସରଳା ଦେବୀ । ଗଞ୍ଜାମର ଲବଣ ଆନ୍ଦୋଳନ ବେଳେ ଶାନ୍ତି ରକ୍ଷା ଆଳରେ ଇଂରେଜ ସରକାର ସରଳା ଦେବୀଙ୍କୁ ଭାରତୀୟ ପିଙ୍ଗଳ କୋଡ୍‌ର ୧୧୭ ଧାରାରେ ଗିରଫ କରି ୬ମାସ କାରାଦଣ୍ଡ ଆଦେଶ ଦେଇଥିଲା । ସରଳା ଦେବୀଙ୍କ ବାଗ୍ମୀତା, ତାଙ୍କର ଓଜସ୍ୱିନୀ ଭାଷଣ, ଯୁକ୍ତିଯୁକ୍ତ ସମାଲୋଚନା ଯଥାଯଥ ପରିସଂଖ୍ୟାନ ସହ ତଥ୍ୟ ଉପସ୍ଥାପନା ସମସ୍ତଙ୍କ ମନରେ ନୂତନ ସ୍ପନ୍ଦନ ସୃଷ୍ଟି କରିବା ସହ ଆତ୍ମବିଶ୍ୱାସ ଭରି ଦେଉଥିଲା । ଏହି ସୁପ୍ତ ଜାତିର ଜାତୀୟ ଚେତନା ଓ ଉତ୍କଳୀୟ ମନୋଭାବ ଜାଗ୍ରତ କରିବାରେ ସରଳା ଦେବୀଙ୍କ ଲେଖନୀ ଅମୋଘ ଅସ୍ତ୍ର ଭଳି କାର୍ଯ୍ୟ କରୁଥିଲା । ସ୍ୱତନ୍ତ୍ର ଓଡ଼ିଶା ଗଠନରେ ପଣ୍ଡିତ ନୀଳକଣ୍ଠ ଦାସ, କୃଷ୍ଣଚନ୍ଦ୍ର ଗଜପତି, ରମାଦେବୀ, ମାଳତୀ ଚୌଧୁରୀ ଓ ଅନ୍ୟମାନଙ୍କ ସହ ସରଳା ଦେବୀଙ୍କ ଭୂମିକା ଉଲ୍ଲେଖନୀୟ । ଅସୀମ ତ୍ୟାଗର ପ୍ରତିମୂର୍ତ୍ତି ସରଳା ଦେବୀ ୧୯୩୭ ମସିହାଠାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଓଡ଼ିଶା ବିଧାନ ସଭାର ସଦସ୍ୟା ରହିବା ସହିତ ଅନେକ ଉନ୍ନତିମୂଳକ କାର୍ଯ୍ୟ କରିଥିଲେ ।

◆◆◆

ସରଳା ଦେବୀ ଓଡ଼ିଶାର ପ୍ରଥମ ବିଧାୟିକା ଥିଲେ ଓ ଜଣେ ଦକ୍ଷ ବିଧାୟିକା ଭାବେ ଓଡ଼ିଶାର ସର୍ବାଙ୍ଗୀନ ବିକାଶ ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ । ପ୍ରଚଳିତ ଶିକ୍ଷା ପଦ୍ଧତିକୁ କଟୁ ସମାଲୋଚନା କରି ସେ ନିଜ ମତ ରଖିଥିଲେ ଯେ ନାରୀକୁ ପ୍ରକୃତ ଶିକ୍ଷାରୁ ବଞ୍ଚିତ କରି ଦେଶ ଓ ସମାଜ ତା'ର ଜୀବିତ କାଳକୁ ଏକ ମୂର୍ତ୍ତିମନ୍ତ ଅଭିଶାପରେ ପରିଣତ କରିଅଛି । ୧୯୩୮ ମସିହା ଫେବୃୟାରୀ ମାସ ୨୮ ତାରିଖରେ ସରଳା ଦେବୀ ଓଡ଼ିଶା ବିଧାନସଭାରେ ସ୍ତ୍ରୀ ଶିକ୍ଷାର ପ୍ରସାର ପାଇଁ ସରକାରଙ୍କ ଖର୍ଚ୍ଚ ପରିମାଣ ବୃଦ୍ଧି ପାଇଁ ଦାବି କରିଥିଲେ । ହରିଜନ ଛାତ୍ରଙ୍କ ଶିକ୍ଷାର ପ୍ରସାର ନିମନ୍ତେ ଅଧିକ ଛାତ୍ରବୃତ୍ତି ତଥା ଶିକ୍ଷା ପରବର୍ତ୍ତୀ କର୍ମଯୋଗାଣ ସମାଜରେ ସରକାରଙ୍କୁ ସରଳା ଦେବୀ ଅନୁରୋଧ କରିଥିବା ପ୍ରମାଣ ଓଡ଼ିଶା ଆସେମ୍ଲି ନଥିରେ ଲିପିବଦ୍ଧ ରହିଛି । କୃଷକ ଅର୍ଥନୈତିକ ମାନଦଣ୍ଡ ବୃଦ୍ଧି କରିବା ପାଇଁ ସରକାର ସମସ୍ତ ପ୍ରକାର ପଦକ୍ଷେପ ନେବା ଆବଶ୍ୟକ ବୋଲି ବିଧାୟିକାଭାବେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ସରଳା ଦେବୀ ।

୧୯୩୯ ମସିହା ମାର୍ଚ୍ଚ ମାସ ୨୪ ତାରିଖରେ ରେଭେନ୍ସା କଲେଜରେ ବସିଥିବା ସଭାରେ ସେ ବାଚସ୍ପତି କାର୍ଯ୍ୟ ତୁଲାଇ ଥିଲେ ଏବଂ ତାଙ୍କରି ଆଗ୍ରହରେ ବ୍ୟବସ୍ଥା ସଭାର ସମସ୍ତ କାର୍ଯ୍ୟ ଓଡ଼ିଆ ଭାଷାରେ ହୋଇଥିଲା । ବ୍ୟବସ୍ଥା ସଭାରେ ବିଧାୟକଙ୍କ ଅନୁପସ୍ଥିତି ତାଙ୍କୁ ଅନେକ ପରିମାଣରେ ମର୍ମାହତ କରିଥିଲା । ଏଣୁ ସଭ୍ୟମାନଙ୍କର ସେଦିନର ଦରମା ଓ ଭତ୍ତା ବନ୍ଦ କରିବା ପାଇଁ ସେ ଦାବି ରଖିଥିଲେ । ରାଜ୍ୟରେ ଆଇନ୍, ଶ୍ରମ ଓ ବାଣିଜ୍ୟ ବିଭାଗ ଖୋଲିବାକୁ ସେସମୟର ସରକାରଙ୍କୁ ପରାମର୍ଶ ଦେବା ସହ ରାଜ୍ୟର ପୁରାତନ ଚାନ୍ଦବାଲି ବନ୍ଦରର ବିକାଶ ନିମନ୍ତେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ବାଲ୍ୟ ବିବାହ ପ୍ରଥାର ଘୋର ବିରୋଧୀ ସରଳା ଦେବୀ ୧୯୨୯ ମସିହାରେ ପାରିତ ହୋଇଥିବା ବାଲ୍ୟ ବିବାହ ନିରୋଧ ଆଇନ୍‌ର ସଂଶୋଧନ ନିମନ୍ତେ ୧୯୩୯ ମସିହାରେ ଏକ ବିଲ୍ ଆଗତ କରିଥିଲେ । ଅନେକ ବିରୋଧ ସତ୍ତ୍ୱେ ପରିଶେଷରେ ଏହି ବିଲ୍‌ଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏହି ସମୟରେ ଓଡ଼ିଶା ଯୌତୁକ ନିରୋଧ ଆଇନ୍ ଭଳି ଗୁରୁତ୍ୱପୂର୍ଣ୍ଣ ବିଲ୍ ଆଗତ କରିଥିଲେ ଓ ଯାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ୧୯୪୦ ମସିହାରୁ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଇଂରେଜ ସରକାରଙ୍କ ବିରୋଧରେ ଦେଶବ୍ୟାପୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେଲା । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ତରଫରୁ ସମୁଦାୟ ୪୮ ଜଣ ସତ୍ୟାଗ୍ରହୀଙ୍କ ନାମ ବିଶିଷ୍ଟ ତାଲିକା ପ୍ରସ୍ତୁତ କରି ଗାନ୍ଧିଜୀଙ୍କ ଅନୁମୋଦନ ଲାଗି ପଠାଗଲା । ସରଳା ଦେବୀ ଥିଲେ ଅନ୍ୟତମ ।

ତାଙ୍କ ଦୃଢ ଆତ୍ମବିଶ୍ୱାସ ଓ ମନୋବଳର ଏକ ଉଦାହରଣ ହେଲା ପାରଳା ମହାରାଜ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳକୁ ସମର୍ଥନ । ଏଥିନିମନ୍ତେ କଂଗ୍ରେସ ଦ୍ୱାରା ସମାଲୋଚିତ ହୋଇଥିଲେ ଏବଂ ସମସ୍ତ କଂଗ୍ରେସ ଗୋଷ୍ଠୀ ତାଙ୍କଠାରୁ ଦୂରେଇ ଯାଇଥିଲେ ବି ସେ ନିଜ ନିଷ୍ପତ୍ତିରେ ଅଟଳ ରହିଥିଲେ ତଥା ରାଜ୍ୟର ଉନ୍ନତି ନିମନ୍ତେ ଏହି ମନ୍ତିମଣ୍ଡଳକୁ ସମସ୍ତ ପ୍ରକାରେ ସହଯୋଗ କରିଥିଲେ ।

୧୯୩୯ ମସିହାରେ ଗାନ୍ଧିଜୀଙ୍କ ଅନୁଗାମୀମାନେ ସୁଭାଷ ବୋଷଙ୍କ ବିପକ୍ଷରେ ପଟ୍ଟାଭି ସୀତାରାମୟାଙ୍କୁ ସମର୍ଥନ କରୁଥିବା ବେଳେ ସରଳା ଦେବୀ କିନ୍ତୁ ସୁଭାଷ ବୋଷଙ୍କ ସପକ୍ଷରେ ଭୋଟ ଦେଇଥିଲେ । ଏହା ତାଙ୍କ ଦୃଢ ବ୍ୟକ୍ତିତ୍ୱର ପରିଚାୟକ ଅଟେ ।

ସରଳା ଦେବୀଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ପ୍ରତିଭା ସମ୍ପନ୍ନ ଦିଗ ହେଲା ତାଙ୍କଦ୍ୱାରା କୃତ ବଳିଷ୍ଠ ସାହିତ୍ୟସୌଧ, ଯାହା ତାଙ୍କର ସୃଜନ ଶକ୍ତିର ପରିଚୟ ଦିଏ । ୧୯୩୯ ମସିହାରେ ସେ ରଚନା କରିଥିଲେ, 'କୁନ୍ତଳା କୁମାରୀଙ୍କ କବି ପ୍ରତିଭା' ଶୀର୍ଷକ ଏକ ପ୍ରବନ୍ଧ, ଯାହାଲାଗି ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ସେ ପୁରସ୍କୃତ ହୋଇଥିଲେ । ଏହାପରେ ପଶ୍ଚାତ୍‌ମୁଖୀ ନହୋଇ ନାରୀର ଅଧିକାରକୁ ସାବ୍ୟସ୍ତ କରିବା ଓ ସମାଜରେ ତା'ର ସ୍ଥାନ ସୁରକ୍ଷିତ କରିବା ନିମନ୍ତେ ସେ ରଚନା କରିଯାଇଛନ୍ତି ଅନେକ ପ୍ରବନ୍ଧ । ନାରୀ ସମସ୍ୟା ଉପରେ ରଚିତ ତାଙ୍କ ପୁସ୍ତକଗୁଡିକ ହେଲା –

'ନାରୀର ଦାବି', 'ଉତ୍କଳରେ ନାରୀ ସମସ୍ୟା', 'ଗାଁ ବାଲାଙ୍କ କଥା', 'ନାରୀ ଜଗତ', 'ଭାରତୀୟ ମହିଳା ପ୍ରସଙ୍ଗ', 'ସମାଜ ଓ ବିବାହ' ପ୍ରଭୃତି ତାଙ୍କଦ୍ୱାରା ରଚିତ । 'ସାରଳା ମହାଭାରତରେ ନାରୀ ଚରିତ୍ର' ସମ୍ପର୍କରେ ଉତ୍କଳର କାନ୍ତକବି

ଲକ୍ଷ୍ମୀକାନ୍ତ ମହାପାତ୍ର ଲେଖିଛନ୍ତି ସରଳା ଦେବୀ ସମସାମୟିକ ଓଡ଼ିଆ ସମାଜର ରୀତି, ନୀତି, ଚିନ୍ତା ଓ ଦୃଷ୍ଟିକୁ ନିଖୁଣଭାବେ ପୁସ୍ତକଟିରେ ଫୁଟାଇ ପାରିଛନ୍ତି । ଏହି ବିରାଟ ଗ୍ରନ୍ଥ–ସମୁଦ୍ର ମନ୍ଥନ କରି ଲେଖିକା ନିଜର ବିଚାର ଦ୍ୱାରା ଯେଉଁସବୁ ସତ୍ୟ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି, ତାହା ଅମୃତତୁଲ୍ୟ ସୁସ୍ୱାଦୁ ତଥା ପୁଷ୍ଟିକର ହୋଇଛି ବୋଲି ମୋର ବିଶ୍ୱାସ ।'

ରବୀନ୍ଦ୍ରନାଥଙ୍କୁ ନିଜ ଭକ୍ତି ଅର୍ଘ୍ୟ ସମର୍ପଣ କରି ୧୯୪୧ ମସିହାରେ ସେ ଲେଖିଥିଲେ, 'ରବୀନ୍ଦ୍ର ପୂଜା' ପୁସ୍ତକ । ୧୯୪୯ ମସିହାରେ ଝାନ୍ସିରାଣୀ ଲକ୍ଷ୍ମୀବାଈ, ବୁନ୍ଦି ମହିଷୀ, କର୍ମଦେବୀ, କୃଷ୍ଣାକୁମାରୀ, ବୃନ୍ଦାବତୀ ଦାସୀ, ବାଙ୍କୀ ରାଣୀ ଶୁକଦେଈ, ସେନାପତି ବଧୂ ମାଳତୀ ଓ ଅନ୍ୟାନ୍ୟ ବୀରା ରମଣୀଙ୍କ ଜୀବନୀକୁ ନେଇ ପ୍ରକାଶିତ ହୋଇଥିଲା ସରଳା ଦେବୀଙ୍କ 'ବୀର ରମଣୀ' ପୁସ୍ତକ ।

ନବାଗତା ଓ ଅନାଗତା ମହିଳାଙ୍କୁ ମହନୀୟ ଜୀବନ, ଆଦର୍ଶ ଯୋଗାଇ ଦେବା ନିମନ୍ତେ ୧୯୫୮ ମସିହାରେ ତାଙ୍କଦ୍ୱାରା ପ୍ରକାଶ ପାଇଲା 'ବିଶ୍ୱ ବିପ୍ଳବିଣୀ' ପୁସ୍ତକ ।

ତାଙ୍କଦ୍ୱାରା କୃତ ଅନ୍ୟାନ୍ୟ ରଚନା ମଧ୍ୟରେ 'ଭୀମଭୂୟାଁ', 'ସ୍ୱପ୍ନ ବାସବଦତ୍ତା, 'ସୁଦାମା ଦାରିଦ୍ର୍ୟ ଭଞ୍ଜନ' ପ୍ରଭୃତି ନାଟକ ଓ 'ମରୁ କାହାଣୀ' କ୍ଷୁଦ୍ରଗଳ୍ପ ସଂକଳନ ତଥା 'ପଞ୍ଚ ପ୍ରଦୀପ' ପୁସ୍ତକରେ ସ୍ଥାନ ପାଇଥିବା କେତେକ ଏକାଙ୍କିକା ଅନ୍ୟତମ । ସେଗୁଡ଼ିକ ହେଲା, 'ସୁର ସୁନ୍ଦରୀ', 'ତୁଳସୀ ଦାସ', 'ତରଣୀ ସେନ', 'ଜନାବାଈ' ଓ 'ପ୍ରେମ ମହିମା' ।

ସରଳା ଦେବୀଙ୍କ ଅନେକ ରଚନାବଳୀ ଅପ୍ରକାଶିତ ରହିଯାଇଛି । ତନ୍ମଧ୍ୟରୁ ' ଉତ୍କଳର ନାରୀ ଜାଗରଣ' ଓ ଓଡ଼ିଶାର ନୃତ୍ୟକଳା ଉପରେ ଏକ ପ୍ରବନ୍ଧ ବିଶେଷ ମହତ୍ତ୍ୱ ରଖେ । ସାରା ଜୀବନ ସଂଘର୍ଷ, ଦୃଢ ସଂକଳ୍ପବଦ୍ଧ କର୍ମତତ୍ପରତା, ତ୍ୟାଗ ଓ ଆଦର୍ଶର ଅଦ୍ୱିତୀୟ ପ୍ରତୀକ ସରଳା ଦେବୀଙ୍କ ଶେଷ ଜୀବନ ଅତ୍ୟନ୍ତ କରୁଣ ଥିଲା । ୧୯୭୫ ମସିହା ଅଗଷ୍ଟ ମାସରେ ପତିଙ୍କ ବିୟୋଗ ଓ ୧୯୮୬ ମସିହା ସେପ୍ଟେମ୍ବର ମାସରେ ଏକମାତ୍ର ପୁତ୍ର ଅମିତାଭଙ୍କ ଅକାଳ ମୃତ୍ୟୁ ତାଙ୍କୁ ସମ୍ପୂର୍ଣ୍ଣ ରୂପେ ଦୋହଲାଇ ଦେଇଥିଲା ଏବଂ ସେ ନିଜର ମାନସିକ ଭାରସାମ୍ୟ ହରାଇ ବସିଲେ । ରୋଗାକ୍ରାନ୍ତ ଅବସ୍ଥାରେ ହିଁ ୧୯୮୬ ମସିହା ଅକ୍ଟୋବର ମାସ ୪ ତାରିଖରେ ୮୨ ବର୍ଷ ବୟସରେ ସେ ଇହଲୀଳା ତ୍ୟାଗ କଲେ ।

ସରଳା ଦେବୀ ଆଜି ନାହାନ୍ତି ସତ କିନ୍ତୁ ତାଙ୍କ ସୁବିଶାଳ ସାରସ୍ୱତ କୃତି ଓଡ଼ିଶା ଇତିହାସରେ ତାଙ୍କ ପଦଚିହ୍ନ ସ୍ୱରୂପ ଯାହାକି ସେ ଉତ୍କଳୀୟ ନାରୀଙ୍କୁ ସଚେତନ ଓ ଜାଗ୍ରତ କରିବା ଲାଗି ନିଜ ଲେଖନୀ ମୁନରୁ ସୃଷ୍ଟି କରିଯାଇଛନ୍ତି । ସାଧନା ବଳରେ ସେ ଯେଉଁ ଦୁର୍ଗମ ପଥ ଅତିକ୍ରମ କରି ନିଜକୁ ଏକ ଆଦର୍ଶମୟୀ ତ୍ୟାଗପୂତଭାବେ ଗଢିତୋଳିଛନ୍ତି ତାହା କଳ୍ପନାତୀତ । ତାଙ୍କ ବ୍ୟକ୍ତିତ୍ୱ ଯୁଗ ଯୁଗ ଲାଗି ନାରୀଙ୍କ ନିମନ୍ତେ ଏକ ଉଦାହରଣ ଓ ପ୍ରେରଣାର ଉତ୍ସ ନିଶ୍ଚୟ । ଦେଶ ସେବାରେ ନିଜକୁ ନିୟୋଜିତ କରି କାରାବରଣ କରିବା ଓ ସର୍ବପ୍ରଥମ ନିର୍ବାଚିତ ମହିଳା ବିଧାୟିକା ହେବା କୌଣସି ଅମୃତମୟୀ ଯୋଗଜନ୍ମା ପକ୍ଷେ କମ୍ ଗୌରବର କଥା ନୁହେଁ । ସରଳା ଦେବୀ ନିଶ୍ଚିତଭାବେ ସଦାସର୍ବଦା ନାରୀ ଜାତି ପାଇଁ ଏକ ଆଦର୍ଶ ହୋଇ ରହିବେ ଏବଂ ତାଙ୍କ ଜୀବନୀ ଯେକୌଣସି ମହିଳା ମନରେ ନାରୀ ଶକ୍ତିର ପ୍ରାଣସଂଚାର କରାଇ ଦିଗ୍‌ଦର୍ଶନ ଦେବାରେ ସକ୍ଷମ ହେବ ।

ଶିକ୍ଷୟିତ୍ରୀ
କେ.ସି.ପବ୍ଲିକ୍ ସ୍କୁଲ, ବ୍ରହ୍ମପୁର



# ମାଳତୀ ଚୌଧୁରୀ

**ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକ**

ଭାରତର ସ୍ୱାଧୀନତା ଆନ୍ଦୋଳନଠାରୁ ଆରମ୍ଭ କରି ନାଗରିକ ସ୍ୱାଧୀନତାର ଆନ୍ଦୋଳନ ପର୍ଯ୍ୟନ୍ତ ବିଂଶ ଶତାବ୍ଦୀରେ ଓଡ଼ିଶାରେ ଯେତେ ପ୍ରଗତିଶୀଳ ଆନ୍ଦୋଳନ ହୋଇଛି, ସବୁଥିରେ ମାଳତୀ ଚୌଧୁରୀ ଅଂଶଗ୍ରହଣ କରିଛନ୍ତି । ସେଥିମଧ୍ୟରୁ ଅନେକ ଆନ୍ଦୋଳନରେ ହୋଇଛନ୍ତି ମାର୍ଗଦର୍ଶିକା ।



ମାଳତୀଦେବୀ ୧୯୦୪ ମସିହା ଜୁଲାଇ ମାସ ୨୬ ତାରିଖରେ ବିହାର ପ୍ରଦେଶର ପାଟଣାଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା କୁମୁଦନାଥ ସେନ ଥିଲେ ଜଣେ ଖ୍ୟାତନାମା ବାରିଷ୍ଟର । ସେ ପ୍ରଥମେ ପାଟଣା ହାଇକୋର୍ଟ ଓ ପରେ କଲିକତା ହାଇକୋର୍ଟରେ ଓକିଲାତି କଲେ । ମାତା ସ୍ନେହଲତା ଥିଲେ ସେକାଳର ଆଇ.ସି.ଏସ୍. ବିହାରୀଲାଲ ଗୁପ୍ତଙ୍କ କନ୍ୟା । ବଡ ହେଲା ପରେ ସେ କଲିକତାର ବେଥୁନ ସ୍କୁଲରେ ଭର୍ତ୍ତି ହେଲେ । ମାତା ସେଠାରେ ଶିକ୍ଷୟିତ୍ରୀ ଥାଆନ୍ତି । ୧୯୨୦ ମସିହା ମାଟ୍ରିକ ପରୀକ୍ଷା ଅଳ୍ପ ଦିନ ଥାଏ । ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନରେ ଅନୁପ୍ରାଣିତ ହୋଇ ବିଦେଶୀ ପାଠ ପଢିବେ ନାହିଁ ବୋଲି ଜିଦ୍ ଧରି ବସିଲେ । ପାଠପଢା ଛାଡି ରଙ୍ଗପୁରରେ ଥିବା କକାଙ୍କ ଘରକୁ ଚାଲିଗଲେ ।

ମାଳତୀ ସେନ ଜ୍ଞାନୀ ଅଧ୍ୟାପକମାନଙ୍କଠାରୁ ଶିକ୍ଷା ଲାଭ ସହିତ ଦେବେନ୍ଦ୍ରନାଥଙ୍କଠାରୁ ରବୀନ୍ଦ୍ର ସଙ୍ଗୀତ, ମହାରାଷ୍ଟ୍ରର ଭୀମ ରାଓ ଶାସ୍ତ୍ରୀଙ୍କଠାରୁ ଶାସ୍ତ୍ରୀୟ ସଙ୍ଗୀତ ପ୍ରଭୃତି ଶିକ୍ଷା ଲାଭ କଲେ । ବୀଣାବାଦନ ଶ୍ରେଣୀରେ ମଧ୍ୟ ସେ ନିୟମିତ ଭାବେ ଯୋଗଦେଲେ । ଅଭିନୟ କ୍ଷେତ୍ରରେ ମଧ୍ୟ ତାଙ୍କ ପାରଦର୍ଶିତା ଥିଲା । ରବୀନ୍ଦ୍ରନାଥଙ୍କ ରଚିତ 'ନଟୀର ପୂଜା'ରେ ରାଣୀ ଲୋକେଶ୍ୱରୀ ଭୂମିକାରେ ସେ ଅଭିନୟ କରିଥିଲେ ।

୧୯୨୭ ମସିହାରେ ନବକୃଷ୍ଣ ଚୌଧୁରୀ ଗ୍ରାମ୍ୟ ଅର୍ଥନୀତି ବିଷୟରେ ଅଧ୍ୟୟନ ପାଇଁ ଶାନ୍ତିନିକେତନ ଗଲେ । ସେଠାରେ ମାଳତୀ ସେନଙ୍କ ସହିତ ପରିଚୟ ହେଲା । ବିଚାରଧାରାର ସାମଞ୍ଜସ୍ୟ ହେତୁ ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ହେଲେ । କ୍ରମେ ଘନିଷ୍ଠତା ହେଲା । ଉଭୟେ ଶେଷରେ ବିବାହ କରିବା ପାଇଁ ସ୍ଥିର କଲେ ।

୧୯୩୦ ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଓଡ଼ିଶାରେ ଏହି ସତ୍ୟାଗ୍ରହର ନେତୃତ୍ୱ ନେଇ ଗୋପବନ୍ଧୁ ଚୌଧୁରୀ ଜେଲ୍‌ଗଲେ । ନବବାବୁ ମଧ୍ୟ ଚୌକିଦାରୀ ଟିକସ ବନ୍ଦ ଆନ୍ଦୋଳନର ନେତୃତ୍ୱ ନେଇ ଗିରଫ ହେଲେ । ମାଳତୀଦେବୀ ବଡଯା' ରମାଦେବୀଙ୍କୁ ସାଙ୍ଗରେ ଧରି ସତ୍ୟାଗ୍ରହ ସ୍ଥାନକୁ ବାହାରି ପଡିଲେ । ପ୍ରଥମେ ସେମାନେ ଇଞ୍ଚୁଡି ଯାଇ ଲୁଣ ମାରିଲେ । ଶ୍ରୀଜଙ୍ଗ, ରସାଳପୁର ଓ କୁଜଙ୍ଗ ପ୍ରଭୃତି ସମୁଦ୍ର ତଟବର୍ତ୍ତୀ ଅଞ୍ଚଳରେ ଗସ୍ତ କଲେ । ସେମାନେ ଗାଁକୁ ଗାଁ ବୁଲି ମହିଳାମାନଙ୍କୁ ସଂଗଠିତ କଲେ ।

ଉଚ୍ଚ ସ୍ୱରରେ ଜାତୀୟ ସଙ୍ଗୀତ ଗାଉଥିଲେ । ଲୋକେ ଜମା ହେଇଗଲେ ସତ୍ୟାଗ୍ରହରେ ଯୋଗ ଦେବାକୁ କହୁଥିଲେ । ତାଙ୍କର ଭାଷଣ ଏପରି ପ୍ରଭାବଶାଳୀ ହେଉଥିଲା ଯେ ଶହ ଶହ ସ୍ତ୍ରୀଲୋକ ଟୋକେଇ, ପାଚିଆ ଧରି ଲୁଣ ମାରିବାକୁ ବାହାରି ଆସୁଥିଲେ ।

୧୯୩୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ମାଳତୀ ଦେବୀ ଭୋଟ୍ ଗ୍ରହଣ କେନ୍ଦ୍ରରେ ପିକେଟିଂ କରି ଗିରଫ ହେଲେ । ବିଚାର ପରେ ତାଙ୍କୁ ଛଅ ମାସ କାରାଦଣ୍ଡ ହେଲା । ଦୁଇ ବର୍ଷ ଚାରି ମାସର ଝିଅ ଉତ୍ତରାକୁ ଧରି ମାଳତୀ ଦେବୀ ଭାଗଲପୁର କେନ୍ଦ୍ର ଜେଲରେ ରହିଲେ । ସମାଜବାଦ ଚିନ୍ତା ଓ କାର୍ଯ୍ୟରେ ନବବାବୁ ଥିଲେ ପଥପ୍ରଦର୍ଶକ । ସେ ନାନା ପୁସ୍ତକ ପଢୁଥିଲେ ଓ ଅନ୍ୟମାନଙ୍କ ସହିତ ଆଲୋଚନା କରୁଥିଲେ । ତାଙ୍କର ହୃଦ୍‌ବୋଧ ହେଲା ଯେ ଦେଶର ସ୍ୱାଧୀନତା ଆଣିବା ନିମନ୍ତେ କେବଳ ଲୁଣମରା ବା ଟିକସ ବନ୍ଦ ଆନ୍ଦୋଳନ ଯଥେଷ୍ଟ ନୁହେଁ । ଲୋକଙ୍କୁ ଏକ ଆନ୍ଦୋଳନ ମଧ୍ୟକୁ ଟାଣି ଆଣିବା ଦରକାର ଓ ସେଥିପାଇଁ ଉପଯୁକ୍ତ ସଙ୍ଗଠନ ଲୋଡ଼ା ବୋଲି ଉପଲବ୍ଧ କଲେ । ସେଭଳି ସଙ୍ଗଠନ ଭାରତରେ ଆଉ କେଉଁଠି ହେବା ପୂର୍ବରୁ ୧୯୩୩ ମସିହାରେ ଜନ୍ମ ନେଲା 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ' । ସାମାଜିକ ତଥା ଆର୍ଥନୀତିକ ବିପ୍ଳବ ଆଣିବା ହେଲା ଏହାର ଲକ୍ଷ୍ୟ । ଏହି ବୈଠକରେ ପାର୍ଟିର ସଦସ୍ୟମାନେ ବ୍ୟକ୍ତିଗତ ସମ୍ପତ୍ତି ରଖିବେ ନାହିଁ ବୋଲି ନିଷ୍ପତ୍ତି ନେଲେ । ଏହି ନିଷ୍ପତ୍ତି ଅନୁଯାୟୀ ମାଳତୀ ଦେବୀ ନିଜର ସମସ୍ତ ଅଳଙ୍କାର (ଯାହାର କି ଆଜିର ମୂଲ୍ୟ ପ୍ରାୟ ଦଶ ଲକ୍ଷ ଟଙ୍କା ହେବ) ପାର୍ଟିକୁ ଦାନ କଲେ ।

ଏହି ବୈଠକ ଶେଷ ହେଲାପରେ ମାଳତୀ ଦେବୀ ରବୀନ୍ଦ୍ରନାଥଙ୍କର 'ଆମାଦେର ଯାତ୍ରା ହଲୋ ସୁରୁ' ଗୀତଟି ଗାନ କରିଥିଲେ ।

ଅଳଙ୍କାର ବିକ୍ରିଲବ୍ଧ ଅର୍ଥରେ ପାର୍ଟିର ମୁଖପତ୍ର 'ସାରଥି' ପ୍ରକାଶିତ ହେଲା । ୧୯୩୩ ମସିହା ମେ ମାସରେ ଏହାର ପ୍ରଥମ ସଂଖ୍ୟା ଆତ୍ମ ପ୍ରକାଶ କଲା । ଉଗ୍ର ସମାଜବାଦୀ ଚେତନା ବହନ କରୁଥିବା ଏହା ଥିଲା ଓଡ଼ିଶାର ପ୍ରଥମ ପତ୍ରିକା ।

'ସାରଥି'ର ପ୍ରକାଶନ ପରେ ସମାଜବାଦ ବିଷୟରେ ଆଲୋଚନା ଚାଲିଲା । କ୍ରମେ ବହୁ ଯୁବକ ଓ ଛାତ୍ର ଏଥିପ୍ରତି ଆକର୍ଷିତ ହେଲେ । ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘର ବି ପ୍ରସାର ହେଲା । ବିଧିବଦ୍ଧ ଏକ ପ୍ରାଦେଶିକ ସମ୍ମିଳନୀ ଗଢାଗଲା । ନବବାବୁ ଏହାର ସାଧାରଣ ସମ୍ପାଦକ ହେଲେ । ମାଳତୀ ଦେବୀ ଏହାର କୋଷାଧ୍ୟକ୍ଷ ରହିଲେ ।

୧୯୩୪ ମସିହାରେ ଗାନ୍ଧିଜୀ ଓଡ଼ିଶା ଗସ୍ତରେ ଆସିଲେ । ପୁରୀରେ ହରିଜନମାନଙ୍କୁ ନେଇ ସେ ଶ୍ରୀମନ୍ଦିରରେ ପ୍ରବେଶ କରିବେ ବୋଲି ପ୍ରଚାର ଚାଲିଥାଏ । ସେଥିପାଇଁ ଅଭ୍ୟର୍ଥନା ସମିତି ପୁଲିସ ସୁରକ୍ଷାର ବ୍ୟବସ୍ଥା କରିଥାନ୍ତି । ଗାନ୍ଧିଜୀ ପୁରୀ ରେଳଷ୍ଟେସନରେ ପହଞ୍ଚିଲେ । ମାତ୍ର ତାଙ୍କ ସୁରକ୍ଷା ପାଇଁ ପୋଲିସ ବନ୍ଦୋବସ୍ତ ଦେଖି ପୁରୀ ଗସ୍ତ ସ୍ଥଗିତ ରଖିଲେ । ପୂର୍ବ ନିର୍ଦ୍ଧାରଣ ସମସ୍ତ କାର୍ଯ୍ୟକ୍ରମ ବାତିଲ କରିଦେଲେ । ପୁରୀକୁ ପଦଯାତ୍ରା କରିବେ ବୋଲି ମହାତ୍ମା ଗାନ୍ଧୀ ଘୋଷଣା କଲେ । ମାଳତୀ ଦେବୀ ଏ ନିଷ୍ପତ୍ତିର ବିରୋଧ କଲେ । ସେ ଗାନ୍ଧିଜୀଙ୍କୁ ଦାଣ୍ଡମୁକୁନ୍ଦପୁରରେ ଭେଟିଲେ ଓ ତାଙ୍କର ମନୋଭାବ ଗାନ୍ଧିଜୀଙ୍କୁ ଜଣାଇଲେ । ଗାନ୍ଧିଜୀ କିନ୍ତୁ ତାଙ୍କ ନିଷ୍ପତ୍ତି ପରିବର୍ତ୍ତନ କରି ନଥିଲେ । କାର୍ଯ୍ୟକ୍ରମ ବାତିଲ କାହିଁକି କଲେ ତାହା ତାଙ୍କୁ ବୁଝାଇଲେ । ମାଳତୀ ଦେବୀଙ୍କ ତେଜ ଦେଖି ତାଙ୍କର ନାମ ଦେଲେ 'ତୋଫାନୀ' ।

ଓଡ଼ିଶାରେ ମୋଗଲବନ୍ଦୀ ଓ ଗଡଜାତରେ ଅଲଗା ଅଲଗା ଶାସନ ଚାଲୁଥିଲା । ଗଡଜାତରେ ରାଜାମାନେ ଶାସନ କରୁଥିଲେ । ସେଠାରେ ଲୋକେ ଏକଛତ୍ରବାଦୀ ରାଜାର ଅତ୍ୟାଚାର ଯୋଗୁଁ ଦୁଃଖଦୁର୍ଦ୍ଦଶାରେ କାଳ କଟାଉଥିଲେ । କୃଷକ ସଙ୍ଗଠନ ହେବା ଫଳରେ ପ୍ରଜାମାନେ ଏକାଠି ହେବାକୁ ଲାଗିଲେ । ମାଳତୀ ଦେବୀ ଓ ନବବାବୁ ବହୁଦିନ ଢେଙ୍କାନାଳ ପ୍ରଜାମାନଙ୍କ ସହିତ ସାଙ୍ଗଠନିକ ସମ୍ପର୍କ ରଖିଥିଲେ । ଏ ଦିଗରେ ବିଶେଷ ଭୂମିକା ଗ୍ରହଣ କରିଥିଲା 'କୃଷକ' ଖବରକାଗଜ । ମାଳତୀ ଦେବୀ ଏହାର ସମ୍ପାଦିକା ଥିଲେ । ଏହି ପତ୍ରିକାରେ ଢେଙ୍କାନାଳର ଅତ୍ୟାଚାରମୂଳକ କାହାଣୀ ବିସ୍ତୃତଭାବେ ପ୍ରକାଶ ପାଉଥିଲା ।

ଗଡଜାତମାନଙ୍କର କଂଗ୍ରେସ ସଙ୍ଗଠନ ଆଦୌ ନଥିଲା । 'ପ୍ରଜାମଣ୍ଡଳ' ନାମରେ ଯେଉଁ ଆନ୍ଦୋଳନ ଚାଲୁଥିଲା, ତାହାକୁ ସମାଜବାଦୀମାନେ ଚଳାଉଥିଲେ । ବିଶେଷତଃ ମାଳତୀ ଦେବୀ ଏବଂ ନବବାବୁ ପ୍ରାଣ ଦେଇ ଏହାକୁ ପରିଚାଳନା କରୁଥିଲେ ।

ଢେଙ୍କାନାଳରେ ଯେଉଁ ବିଶିଷ୍ଟ ନେତାମାନେ ଥିଲେ, ସେମାନେ ହେଲେ ସାରଙ୍ଗଧର ଦାସ, ମହେଶ୍ୱର ସୁବାହୁସିଂହ, ବୈଷ୍ଣବ ଚରଣ ପଟ୍ଟନାୟକ ଇତ୍ୟାଦି । ସେମାନଙ୍କ ପ୍ରେରଣାର ଉତ୍ସ ଥିଲେ– ମାଳତୀ ଦେବୀ ଓ ନବବାବୁ ।

ପ୍ରଜାମଣ୍ଡଳ ଆନ୍ଦୋଳନ ମଧ୍ୟ ତାଳଚେରକୁ ବ୍ୟାପିଲା । ବହୁ ଲୋକ ସେଠାରେ ପ୍ରାଣ ହରାଇଲେ । ପରିସ୍ଥିତି ସମ୍ପର୍କରେ ଗାନ୍ଧିଜୀଙ୍କୁ ଜଣାଇ ଦିଆଗଲା । ଗାନ୍ଧିଜୀଙ୍କ ପରାମର୍ଶ ଅନୁଯାୟୀ ହଜାର ହଜାର ତାଳଚେର ଅଧିବାସୀ ରାଜ୍ୟ ଛାଡି ଚାଲି ଆସିଲେ ଏବଂ ଅନୁଗୁଳ ନିକଟବର୍ତ୍ତୀ କୋଶଳା, ପାଣିଓଳା, ପଣ୍ଡୁଆ, ବୁଢାପଙ୍କ ପ୍ରଭୃତି ସ୍ଥାନରେ ଅସ୍ଥାୟୀ ଘର କରି ମାସ ମାସ ଧରି ରହିଲେ ।

ନୀଳଗିରି ଆନ୍ଦୋଳନ ପ୍ରଥମ ନୀଳଗିରି ଯୁବକ ସଖା ସମିତିଦ୍ୱାରା ଆରମ୍ଭ ହେଲା । ଏମାନେ ପ୍ରଥମେ ଗାନ୍ଧିଜୀଙ୍କ ପ୍ରଦର୍ଶିତ କେତେକ ରଚନାତ୍ମକ କାର୍ଯ୍ୟ କରୁଥିଲେ । ୧୯୩୮ ମସିହାରେ ବାଲେଶ୍ୱରରୁ ଗୋଟିଏ ତାଲିମପ୍ରାପ୍ତ ଉଗ୍ର ଯୁବଗୋଷ୍ଠୀ ନୀଳଗିରି ଗଲେ ଓ ସମିତି ସହିତ ଯୋଗସୂତ୍ର ରଖିଲେ । ଏହା କ୍ରମେ ସେଠାର ରାଜା–ବିରୋଧୀ ଆନ୍ଦୋଳନରେ ପରିଣତ ହେଲା । ୧୯୩୮ ମସିହା ମେ ମାସ ୨୧ ଓ ୨୩ ତାରିଖରେ ଏହି ସଖା ସମିତି ସେମାନଙ୍କ ନେତାଙ୍କ ଗିରଫ ପ୍ରତିବାଦରେ ଆଇନ ଅମାନ୍ୟ ଆନ୍ଦୋଳନ କଲେ । ଏହି ଯୁବକ ସଖା ସମିତିର କାର୍ଯ୍ୟାଳପର ଆଇନ ପ୍ରାଣକେନ୍ଦ୍ର ଥିଲା ବାଖରାବାଦର କୋଠାଘର– ନବବାବୁ ଓ ମାଳତୀ ଦେବୀଙ୍କ କୋଠି ।

୧୯୪୨ ମସିହାରେ ବମ୍ବେରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ପୂର୍ବରୁ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଏକ କାର୍ଯ୍ୟକାରୀ ସମିତି ବୈଠକ ବସିଥିଲା । ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ମାଳତୀ ଚୌଧୁରୀ ଏହି ବୈଠକରେ ଯୋଗ ଦେବାକୁ ବମ୍ବେ ଗଲେ । ବୈଠକରେ ମଧ୍ୟ ବହୁ ଆଲୋଚନା ପରେ 'ଭାରତଛାଡ' ପ୍ରସ୍ତାବ ପାସ ହେଲା । ଗାନ୍ଧିଜୀ 'କର ବା ମର' ଡାକରା ଦେଲେ ।

ଅଗଷ୍ଟ ମାସ ୯ ତାରିଖ ସକାଳେ ଗାନ୍ଧିଜୀଙ୍କ ସମେତ ବହୁ ନେତା ଗିରଫ ହେଲେ । ମାଳତୀ ଦେବୀ ଓଡ଼ିଶାରେ ପ୍ରକାଶ୍ୟ ଭାବରେ ସଭାସମିତିରେ ଭାଗ ନେଇ ଗିରଫ ହେବାର ସ୍ଥିର ହେଲା । ଅଗଷ୍ଟ ମାସ ୯ ତାରିଖ ରାତିରେ ସୁରେନ୍ଦ୍ର ବାବୁ ଓ ମାଳତୀ ଦେବୀ ଓଡ଼ିଶା ଆସିବାକୁ ବମ୍ବେ ମେଲ ଧରିଲେ । ବମ୍ବେ ଫେରନ୍ତା ପ୍ରାଦେଶିକ ନେତାମାନଙ୍କୁ ରାଜଧାନୀରେ ପହଞ୍ଚିବା ମାତ୍ରେ ଗିରଫ କରାଯାଉଥିଲା ।

**ବାଜି ରାଉତ ଛାତ୍ରାବାସ**

ବାଜି ରାଉତ ଛାତ୍ରାବାସ ହେଉଛି ମାଳତୀ ଦେବୀଙ୍କ ମାନସ ସନ୍ତାନ । ଏହା ଜନ୍ମ ନେଇଥିଲା କଟକ ଜେଲରେ ସେ ରହୁଥିବା ୧୨ ନମ୍ବର ଓ୍ୱାର୍ଡରେ ୧୯୪୨ ମସିହାରେ । ଦିନେ ସେ ସହବନ୍ଦିନୀ କିରଣଲେଖାଙ୍କୁ ପାଖକୁ ଡାକି କହିଲେ ଯେ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଯେପରି ବରୀ ରାମଚନ୍ଦ୍ରପୁରରେ ମୌଳିକ ବିଦ୍ୟାଳୟ ସ୍ଥାପନ କରିଛନ୍ତି, ସେହିଭଳି ଅନୁଗୁଳରେ ଗୋଟିଏ ମୌଳିକ ବିଦ୍ୟାଳୟ ସ୍ଥାପନ କରିବା ତାଙ୍କର ଇଚ୍ଛା ଅଛି । ଗଡଜାତ ଆନ୍ଦୋଳନରେ ଜେଲ ଭୋଗୁଥିବା ସଂଗ୍ରାମୀମାନଙ୍କର ପିଲା, ଗରିବ ଆଦିବାସୀ ଓ ହରିଜନ ପିଲାଙ୍କୁ ରଖି ତାଙ୍କୁ ପାଠ ପଢାଇବା ଏହାର ଲକ୍ଷ୍ୟ ହେବ । କିରଣଲେଖା ତାହାକୁ ଏ ଦିଗରେ ଉତ୍ସାହିତ କଲେ ।

ବାଜି ରାଉତ ଛାତ୍ରାବାସ କହିଲେ ମାଳତୀ ଦେବୀ ଓ ମାଳତୀ ଦେବୀ କହିଲେ ବାଜି ରାଉତ ଛାତ୍ରାବାସ ବୋଲି ଲୋକେ ବୁଝୁଥିଲେ । ତାହାକୁ କେହି କେହି ମାଳତୀ ଆଶ୍ରମ ବୋଲି କହୁଥିଲେ ।

୧୯୪୬ ମସିହା ଅପ୍ରେଲ୍ ମାସରେ ନବବାବୁ ଓଡ଼ିଶାର ରାଜସ୍ୱ ମନ୍ତ୍ରୀଭାବେ କାର୍ଯ୍ୟଭାର ଗ୍ରହଣ କଲେ । ସେହି ବର୍ଷ ମେ ମାସ ୧୧ ତାରିଖ ଦିନ ଏହି ଛାତ୍ରାବାସଟି ଆନୁଷ୍ଠାନିକଭାବେ ଉଦ୍‌ଘାଟିତ ହେଲା ।

ନବବାବୁ ଓ ମାଳତୀ ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅନୁଗୁଳଠାରୁ ୧୨ ମାଇଲ ଦୂର ଚମ୍ପତିମୁଣ୍ଡାରେ ଗଢା ହେଲା ଉତ୍ତର ମୌଳିକ ବିଦ୍ୟାଳୟ 'ଜୀବନ ବିଦ୍ୟାଳୟ' । ଶାନ୍ତି ନିକେତନର ଛାତ୍ର ଚିତ୍ତରଞ୍ଜନ ଦାସ ଏଠାରେ ପ୍ରଧାନ ଆଚାର୍ଯ୍ୟ ଭାବେ ଯୋଗଦେଲେ । ପ୍ରାୟ ଏକ ଶହ ଏକର ଜମିରେ ଉତ୍ତର ମୌଳିକ ଜୀବନ ବିଦ୍ୟାଳୟ ଖୋଲାଗଲା । ଏହି ବିଦ୍ୟାଳୟରେ ଗୁରୁକୁଳ ଆଶ୍ରମ ଶିକ୍ଷାଦାନ କରାଯାଉଥିଲା । ଗଛମୂଳେ ପାଠ ପଢାଯାଉଥିଲା । ବର୍ଷାଦିନମାନଙ୍କରେ ବାରଣ୍ଡାରେ ପାଠପଢା

ହେଉଥିଲା । ଶ୍ରେଣୀ ଗୃହର ଆସବାବ ବୋଇଲେ ଗୁରୁଜୀଙ୍କର ବସିବା କାଠ ଚଉକିଟିଏ, ଗୋଟିଏ କଳାପଟା ଓ କେତେ ଖଣ୍ଡ ଫୁଲଖଡି । ସପ ପାରି ପାଠପଢା ହେଉଥିଲା । ଅର୍ଥ ଉପାର୍ଜନକାରୀ ଫସଲ କରି ଶିକ୍ଷା ଓ କୃଷିର ସମନ୍ୱୟ ରକ୍ଷା କରିବାକୁ ଶିକ୍ଷକ ଓ ଶିକ୍ଷାର୍ଥୀମାନେ ଲାଗିପଡୁଥିଲେ । ବିଦ୍ୟାଳୟରେ ଧୂଳେଇ ବିଭାଗ, ଚାରୁକଳା ବିଭାଗ, ଚମଡା ବିଭାଗ, ଛାପାଖାନା ବିଭାଗ ପ୍ରଭୃତି ଖୋଲାଯାଇଥିଲା । ମାଳତୀ ଦେବୀ ନିଜେ ଆୟ ବ୍ୟୟ, ଉନ୍ନତି-ଅବନତିର ତଦାରଖ କରୁଥିଲେ । ପ୍ରତି ବିଭାଗ ପାଇଁ ଶିକ୍ଷକ ନିଯୁକ୍ତି ହୋଇଥିଲେ । ମାଳତୀ ଦେବୀ ଶାନ୍ତି ନିକେତନ ବୃକ୍ଷ ମୂଳେ ଶିକ୍ଷା ପ୍ରଦାନର ଅଭିନବ ରୁଚିକୁ ଏଠାରେ ପରିପ୍ରକାଶ କରାଯାଇ ପାରିନଥିଲା ।

### ନୂଆଖାଲି ଯାତ୍ରା

୧୯୪୬ ମସିହା ଆଡକୁ ପୂର୍ବବଙ୍ଗ ନୂଆଖାଲି ଅଞ୍ଚଳରେ ହିନ୍ଦୁ ମୁସଲମାନ ଦଙ୍ଗା ଓ ହଣାକଟା ଆରମ୍ଭ ହୋଇଗଲା । ସେତେବେଳେ ଭାରତର ତୁଙ୍ଗ ନେତାମାନେ ଭାରତବର୍ଷର ଶାସନ ଦାୟିତ୍ୱ ଗ୍ରହଣ କରିବା ସ୍ୱପ୍ନ ଦେଖୁଥାନ୍ତି । ଗାନ୍ଧିଜୀ କିନ୍ତୁ ଦଙ୍ଗା ଯୋଗୁଁ ମର୍ମାହତ ହେଲେ ଓ ନିଜେ ଏକାକୀ ନୂଆଖାଲି ଗଲେ । ଗାଁକୁ ଗାଁ ପାଦରେ ବୁଲିଲେ । ସାଙ୍ଗରେ ଥାଆନ୍ତି ଗୁଜୁରାଟର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଅମୃତଲାଲ ଠକ୍କର (ଠକ୍କର ବାପା) । ମାଳତୀ ଦେବୀ ଏ ଖବର ପାଇ ନୂଆଖାଲି ଗଲେ ।

ମାଳତୀ ଦେବୀ ନୂଆଖାଲିରେ ଗସ୍ତ କରୁଥିବା ସମୟରେ ଓଡ଼ିଶା ବିଧାନସଭା ତାଙ୍କୁ ଭାରତୀୟ ସମ୍ବିଧାନ ସଭାର ସଦସ୍ୟଭାବେ ନିର୍ବାଚିତ କଲା । ଏହି ସଭାର କେତେକ ବୈଠକରେ ମାଳତୀ ଦେବୀ ଅବଶ୍ୟ ଯୋଗ ଦେଲେ ।

୧୯୪୭ ମସିହା ଶେଷ ଆଡକୁ ପୂଜ୍ୟ ଠକ୍କର ବାପା ଓଡ଼ିଶା ଆସିଲେ । ତାଙ୍କ ସାଙ୍ଗେ ଆଲୋଚନା କରିବାକୁ ଗୋପବନ୍ଧୁ ଚୌଧୁରୀ ସହଯୋଗୀମାନଙ୍କୁ କଟକସ୍ଥିତ ବାଖରାବାଦ ବାସଭବନକୁ ଡକାଇଲେ । ସେହି ବୈଠକରେ ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ପଟ୍ଟନାୟକ, ମାଳତୀ ଦେବୀ, ମନମୋହନ ଚୌଧୁରୀ ପ୍ରଭୃତି ଯୋଗ ଦେଲେ । ଓଡ଼ିଶାର ଆଦିବାସୀ ଓ ଅନୁନ୍ନତ ସମ୍ପ୍ରଦାୟ ମଧ୍ୟରେ କାମ କରିବା ପାଇଁ ଏକ ରାଜ୍ୟସ୍ତରୀୟ ସଂସ୍ଥା ଗଠନ କରିବା ସ୍ଥିର ହେଲା । ଗୋପବନ୍ଧୁ ସଂସ୍ଥାର ନାମ 'ଉତ୍କଳ ନବଜୀବନ ମଣ୍ଡଳ' ରଖିବାକୁ ପ୍ରସ୍ତାବ ଦେଲେ । ଏହା ମଧ୍ୟ ଗୃହୀତ ହେଲା । ଅନୁଷ୍ଠାନର ପ୍ରଥମ ସମ୍ପାଦକ ହେଲେ ସାରଙ୍ଗଧର ଦାସ । ଗୋପବନ୍ଧୁ ଚୌଧୁରୀ, ମାଳତୀ ଦେବୀ, ରାଜକୃଷ୍ଣ ବୋଷ, ହରିହର ଦାସ, କୃପାସିନ୍ଧୁ ହୋତା, ନବକୃଷ୍ଣ ଚୌଧୁରୀ, ଉପେନ୍ଦ୍ର ମହାପାତ୍ର, ଈଶ୍ୱରଲାଲ ବ୍ୟାସ, ବିଶ୍ୱନାଥ ଦାସ ପ୍ରଭୃତି ଏହାର ସଦସ୍ୟ ରହିଲେ । ମାତ୍ର ପରିଚାଳନାର ସମସ୍ତ ଦାୟିତ୍ୱ ମାଳତୀ ଦେବୀଙ୍କୁ ଦିଆଗଲା ।

୧୯୫୧ ମସିହାରେ ବିନୋବାଜୀ ଗାନ୍ଧୀ- କଳ୍ପିତ ଗ୍ରାମ ସ୍ୱରାଜ ଆଣିବା ପାଇଁ 'ଭୂଦାନ' ଆରମ୍ଭ କଲେ । ମାଳତୀ ଦେବୀ ଚିର ବିପ୍ଳବିଣୀ ଥିଲେ । ସେ ଏହି ଆନ୍ଦୋଳନରେ ପୂର୍ଣ୍ଣ ପ୍ରାଣରେ ଯୋଗ ଦେଲେ । ନବବାବୁ ସେତେବେଳକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ଏହି 'ଭୂଦାନ' ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ସେ ସମସ୍ତ ସରକାରୀ ସାହାଯ୍ୟ ଯୋଗାଇ ଦେଲେ । ୧୯୫୫ ମସିହାରେ ବିନୋବାଜୀ ଓଡ଼ିଶାରେ ପଦଯାତ୍ରା କରୁଥିଲା ବେଳେ ତାଙ୍କର ବିଭିନ୍ନ ରହଣି ସ୍ଥାନରେ ବ୍ୟବସ୍ଥା କରୁଥିଲେ । ଗ୍ରାମଦାନ ଗାଁଗୁଡିକରେ ଶୋଷଣ ବିରୋଧରେ ଆନ୍ଦୋଳନ ଓ ବିଭିନ୍ନ ରଚନାତ୍ମକ କାର୍ଯ୍ୟ ନବଜୀବନ ମଣ୍ଡଳ ହାତକୁ ନେଇଥିଲେ । ଏହାଛଡା ଖଦିର ପ୍ରଚାର ଓ ପ୍ରସାର, ମହିଳା ଓ ଶିଶୁ କଲ୍ୟାଣ, ପ୍ରୌଢ଼ ଶିକ୍ଷା ପ୍ରଭୃତି କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ମାଳତୀ ଦେବୀଙ୍କଠାରୁ ଶିକ୍ଷା ଓ ପ୍ରେରଣା ପାଇ ନବଜୀବନର ଅଗଣିତ କର୍ମୀ ଦୁର୍ଗମ ଅନ୍ଧାରି ମୁଲକରେ ସେବାକାର୍ଯ୍ୟ ଚଳାଇଥିଲେ । ଏ ପର୍ଯ୍ୟନ୍ତ ମଧ୍ୟ ଚଳାଉଛନ୍ତି ।

ମାଳତୀ ଦେବୀ ବହୁ ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ସେ ଭାରତୀୟ ଆଦିମ ଜାତି ସେବକ ସଂଘର ଆଜୀବନ ସଭ୍ୟା ଥିଲେ । ରାଜ୍ୟ ସମାଜ ମଙ୍ଗଳ ବୋର୍ଡର ପ୍ରଥମ ସଭାପତି ଥିଲେ । ରାଜ୍ୟ ନିଶା ନିବାରଣ ପରିଷଦର ସଭାପତି, ରାଜ୍ୟ ତାଳଗୁଡ ସମିତିର ସଭାପତି, ଉତ୍କଳ ଗାନ୍ଧୀ ସ୍ମାରକ ନିଧିର ସଭାପତିଭାବେ ବହୁ ଦିନ ଧରି କାର୍ଯ୍ୟ କରିଥିଲେ । ଜୀବନର ଅନ୍ତିମ ମୁହୂର୍ତ୍ତରେ ଏହିସବୁ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ଭବ୍ୟ

ସମ୍ବର୍ଦ୍ଧନା ଦିଆଯାଇଥିଲା । ଭାରତୀୟ ପ୍ରୌଢ ଶିକ୍ଷା ଓ ସଂଘ ତରଫରୁ ମାଳତୀ ଦେବୀଙ୍କୁ ରବୀନ୍ଦ୍ର ସ୍ୱାକ୍ଷରତା ପୁରସ୍କାର ପ୍ରଦାନ କରାଯାଇଥିଲା । ଓଡ଼ିଶା ସରକାର ତାଙ୍କୁ ସେବା ସମ୍ମାନ ପୁରସ୍କାର ପ୍ରଦାନ କରିଥିଲେ । ଭାରତ ସରକାର ମଧ୍ୟ ତାଙ୍କର ସେବା ପ୍ରତି ସମ୍ମାନ ଜଣାଇ ୧୯୮୭ ମସିହାରେ ଜାତୀୟ ପୁରସ୍କାର ପ୍ରଦାନ କରିଥିଲେ । ମହିଳା କମିଶନ ଏବଂ ସମ୍ବିଧାନ ପ୍ରଣିଧାନ ସଭା ପକ୍ଷରୁ ତାଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ମହିଳା ଓ ଶିଶୁ କଲ୍ୟାଣ କାମରେ ଉଲ୍ଲେଖଯୋଗ୍ୟ ଅବଦାନ ପାଇଁ ୧୯୮୮ ମସିହାରେ ତାଙ୍କୁ ସମ୍ମାନସୂଚକ ବଜାଜ ପୁରସ୍କାର ପାଇଁ ମନୋନୀତ କରାଗଲା । ମାତ୍ର ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ପ୍ରତିଷ୍ଠା କରାଯିବାର ପ୍ରତିବାଦରେ ସେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ହାତରୁ ଏହି ପୁରସ୍କାର ଗ୍ରହଣ କରିବା ପାଇଁ ମନା କରିଦେଲେ । ପରେ ବାଜି ରାଉତ ଛାତ୍ରାବାସରେ ସମ୍ପାଦକ ତାଙ୍କୁ ଏହି ପୁରସ୍କାର ପ୍ରଦାନ କଲେ । ଏହି ପୁରସ୍କାରରୁ ମିଳିଥିବା ଏକ ଲକ୍ଷ ଟଙ୍କା ଏବଂ ଥଳି ଭେଟି ଟଙ୍କାକୁ ମିଶାଇ ୧୯୮୯ ମସିହା ମାର୍ଚ୍ଚ ମାସରେ ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠିତ ହେଲା । ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନେ ମାଳତୀ ଦେବୀଙ୍କ ୮୪ ତମ ଜନ୍ମ ତିଥିରେ ତାଙ୍କ ହାତରେ ଏକ ଲକ୍ଷ ଟଙ୍କାର ଥଳି ଭେଟି ଦେଇଥିଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଶାନ୍ତି ନିକେତନର ମଧୁର ସ୍ମୃତିକୁ ଜାଗ୍ରତ କରାଇ ବିଶ୍ୱଭାରତୀର ଉପାଚାର୍ଯ୍ୟ ନିଜେ ବାଜି ରାଉତ ଛାତ୍ରାବାସରେ ତାଙ୍କୁ ବିଶ୍ୱଭାରତୀର ସର୍ବୋଚ୍ଚ ସମ୍ମାନ 'ଦେଶିକୋତ୍ତମ' ଉପାଧି ପ୍ରଦାନ କରିଥିଲେ ।

ଭୁବନେଶ୍ୱର

## ଶ୍ରଦ୍ଧାଞ୍ଜଳି



**ସ୍ୱର୍ଗତ ସାରଦା ପ୍ରସାଦ ମିଶ୍ର**

(ଆବିର୍ଭାବ: ୦୧.୦୨.୧୯୬୨ ତିରୋଧାନ: ୧୭.୦୪.୨୦୧୬)

(ପ୍ରବୀଣ କଥାକାର ସ୍ୱର୍ଗତ ସାରଦା ପ୍ରସାଦ ମିଶ୍ର ଉଭୟ ବୃତ୍ତି ଓ ପ୍ରବୃତ୍ତିରେ ଥିଲେ ସଫଳ । ଓଡ଼ିଶା ସୂଚନା ସେବାର ଜଣେ ବରିଷ୍ଠ ଅଧିକାରୀ ଭାବେ ବୃତ୍ତିଗତ ଦକ୍ଷତା ଏବଂ ସାହିତ୍ୟ ସାଧନାର ପ୍ରବୃତ୍ତିଗତ ପ୍ରବଣତା ତାଙ୍କୁ ନିଜର ସହକର୍ମୀ ଓ ବିଦଗ୍ଧ ପାଠକଙ୍କ ନିକଟରେ କରିଥିଲା ସୁପରିଚିତ । 'ଉତ୍କଳ ପ୍ରସଙ୍ଗ' ପତ୍ରିକାର ସମ୍ପାଦନା ବିଭାଗ ସହ ଏକଦା ଜଡିତ ଥିବା ସାରଦା ବାବୁଙ୍କ ଅକାଳ ବିୟୋଗରେ 'ଉତ୍କଳ ପ୍ରସଙ୍ଗ' ପରିବାର ତରଫରୁ ଗଭୀର ଶ୍ରଦ୍ଧାଞ୍ଜଳି ।)

# ଅନନ୍ୟା ନନ୍ଦିନୀ

**ଅରୁଣ କୁମାର ପଣ୍ଡା**

୧୯୩୧ ମସିହା ଜୁନ୍ ୯ ତାରିଖ । ସେଇ ଦିନ କୁନି ଝିଅଟେ ଜନ୍ମଗ୍ରହଣ କରିଥିଲା କଟକ ଖ୍ରୀଷ୍ଟିଆନ ସାହିର ଯାଚକ ଲେନ୍‌ର ପ୍ରସିଦ୍ଧ କବି କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଘରେ । ସମୟ ସାଙ୍ଗରେ ସେ ଝିଅ ଯେତିକି ବଢିଥିଲା, ସେତିକି ପ୍ରସାରିତ ହୋଇଥିଲା ତା'ର ନାଁ ସାରା ଦେଶରେ । ନାଆଁ ଦିଆଯାଇଥିଲା ନନ୍ଦିନୀ । ନନ୍ଦିନୀଙ୍କ ଘର ଥିଲା ସାମ୍ୟବାଦୀ ଚିନ୍ତାଧାରାର ଏକ ପ୍ରୟୋଗଶାଳା । କକା ଥିଲେ ବିଶିଷ୍ଟ କମ୍ୟୁନିଷ୍ଟ ନେତା ଭଗବତୀ ପାଣିଗ୍ରାହୀ, ଯିଏ 'ଶିକାର' ବୋଲି ଗପଟେ ଲେଖି ସାରା ଦେଶରେ ହଇଚଇ ସୃଷ୍ଟି କରିଥିଲେ । ଗପର ମୁଖ୍ୟ ଚରିତ୍ର ଥିଲା ଘିନୁଆ । ଘିନୁଆ ବଣଜଙ୍ଗଲର ପଶୁପକ୍ଷୀ ଶିକାରରେ ଓସ୍ତାଦ । କିନ୍ତୁ ଅଚାନକ ଦିନେ ନିଜ ଅଞ୍ଚଳର ସବୁଠାରୁ ଅତ୍ୟାଚାରୀ ଜମିଦାରର ମୁଣ୍ଡକୁ କାଟି ବଡ ଏକ ଶିକାର ବୋଲି କହି ନେଇ ଆସିଛନ୍ତି ।



ନନ୍ଦିନୀଙ୍କ ବାପା ପଦ୍ମଭୂଷଣ କାଳିନ୍ଦୀ ପାଣିଗ୍ରାହୀ ସବୁଜ ଯୁଗର ଆଗ ଧାଡିର କବି ଥିଲେ । 'ମାଟିର ମଣିଷ' ପରି କାଳଜୟୀ ଉପନ୍ୟାସ ତାଙ୍କରି କୃତି ।

ତା' ପରେ ନନ୍ଦିନୀ ନାଁ ଲେଖାଇଲେ ରେଭେନ୍ସା ବାଳିକା ବିଦ୍ୟାଳୟରେ । ସେଠାରୁ ପାଠପଢା ସାରି ରେଭେନ୍ସା କଲେଜକୁ ଆସିଲେ । ରେଭେନ୍ସା କଲେଜକୁ ଆସିଲା ବେଳକୁ ନନ୍ଦିନୀ ସାରା ରାଜ୍ୟରେ ଛାଇ ଯାଇଥିଲେ । ୧୯୪୬ ମସିହାରେ କଲେଜ କୋଠା ଉପରୁ ସେ ବ୍ରିଟିଶ ପତାକା ୟୁନିଅନ୍ ଜ୍ୟାକ୍ ଓହ୍ଲାଇ ଆଣିଥିଲେ । ଯେଉଁ କାରଣରୁ ଶିକାର ହୋଇଥିଲେ ପୋଲିସ୍ ଜୁଲୁମର ।

ବଙ୍କିବଜାରର ଘର ଭିତରେ ଯେଉଁ ବିପ୍ଳବର ମଞ୍ଜି ତାଙ୍କ ଭିତରେ ବୁଣି ଦିଆଯାଇଥିଲା, ତାହା ଏହି ସମୟରେ ଦ୍ରୁମ ରୂପରେ ଆତ୍ମପ୍ରକାଶ କରିଥିଲା । ତା'ପରେ ଆସିଥିଲା ୧୯୫୧ର ଛାତ୍ର ଆନ୍ଦୋଳନ । ରେଭେନ୍ସା ହତା ଭିତରେ ଦରମା ବୃଦ୍ଧିକୁ କଡା ବିରୋଧ କରିଥିଲେ ନନ୍ଦିନୀ । ନେତୃତ୍ୱ ନେଇଥିଲେ ସେଇ ଆନ୍ଦୋଳନର । ସେତେବେଳେ ବିଧାନସଭା ରେଭେନ୍ସା ପରିସରରେ ଚାଲିଥାଏ । ଛାତ୍ରମାନେ ତା'ରି ଆଗରେ ବିକ୍ଷୋଭ ପ୍ରଦର୍ଶନ କଲେ । ଧାରଣା ଦେଲେ । ଜାରି ହେଲା ୧୪୪ ଧାରା । ତଥାପି ହଟିଲେନି କେହି । ତା' ପରେ ହୋସ୍ ପାଇପ୍‌ରେ ଆରମ୍ଭ ହେଲା ପାଣିମାଡ ସାଙ୍ଗକୁ ଲାଠିମାଡ । ଶତାଧିକ ଛାତ୍ରଛାତ୍ରୀ ଆହତ ହେଲେ । ନନ୍ଦିନୀଙ୍କ ମୁଣ୍ଡ ବି ଫାଟିଲା ।

ଆନ୍ଦୋଳନ ସମୟରେ ଦେବେନ୍ଦ୍ର ଶତପଥୀଙ୍କୁ ନନ୍ଦିନୀ ବିବାହ କରିଥିଲେ । ଦେବେନ୍ଦ୍ରଙ୍କ ଘର ଢେଙ୍କାନାଳର ଧଳପୁର ଶାସନ । ଆଜୀବନ ସଂଗ୍ରାମୀ ଦେବେନ୍ଦ୍ର ବାବୁ ଢେଙ୍କାନାଳ ଆସନରୁ ଲୋକସଭାକୁ ପ୍ରତିନିଧିତ୍ୱ କରିଥିଲେ । ନନ୍ଦିନୀଙ୍କ

ଦୁଇପୁଅ । ବଡ ପୁଅ ନଚିକେତା ଦିଲ୍ଲୀର ଏକ ବହୁରାଷ୍ଟ୍ରୀୟ କମ୍ପାନୀରେ କାର୍ଯ୍ୟ କରନ୍ତି । ସାନ ପୁଅ ତଥାଗତ ଢେଙ୍କାନାଳ ସାଂସଦ ତଥା 'ଧରିତ୍ରୀ' ଖବରକାଗଜର ସମ୍ପାଦକ ।

ଗରିବ ମଣିଷର ଅକୁହା କଥା ବେଶ୍ ଆନ୍ଦୋଳିତ କରୁଥିଲା ନନ୍ଦିନୀଙ୍କ ପ୍ରାଣକୁ । ସେ ସବୁବେଳେ ଲଢୁଥିଲେ ହକ୍ ପାଇଁ । ସାମ୍ୟବାଦ ରାଜନୀତିରୁ ୧୯୬୦ ମସିହାରେ ନନ୍ଦିନୀ ଆସିଥିଲେ କଂଗ୍ରେସକୁ କିନ୍ତୁ ଆଜୀବନ ସାମ୍ୟବାଦର ତୀବ୍ର ପ୍ରଭାବ କାର୍ଯ୍ୟଶୈଳୀରେ ଦେଖିବାକୁ ମିଳିଥିଲା । ୧୯୬୦ରେ ନନ୍ଦିନୀଙ୍କୁ ଦିଆଯାଇଥିଲା ପ୍ରଦେଶ କଂଗ୍ରେସ ମହିଳା ଶାଖାର ପରିଚାଳନା ଦାୟିତ୍ୱ । ୧୯୬୨ରେ ନନ୍ଦିନୀ ଯାଇଥିଲେ ରାଜ୍ୟସଭାକୁ । ସେଇଠୁ ହିଁ ଆରମ୍ଭ ହୋଇଥିଲା ତାଙ୍କର ଅଭୂତପୂର୍ବ ଉତ୍ଥାନର କାହାଣୀ ।

ଏକା ବର୍ଷ ରାଜ୍ୟସଭାରେ କୌଣସି ଏକ ବିଷୟକୁ ନେଇ ନନ୍ଦିନୀ ନିଜର ବକ୍ତବ୍ୟ ରଖୁଥାନ୍ତି । ପଣ୍ଡିତ ନେହେରୁ ଉପସ୍ଥିତ ଥାଆନ୍ତି ରାଜ୍ୟସଭାରେ । ନନ୍ଦିନୀଙ୍କ କହିବାର ଢଙ୍ଗ, ଭାଷା ଓ ସ୍ୱଷ୍ଟ ଚିନ୍ତାଧାରା ଆଶ୍ଚର୍ଯ୍ୟ କରି ପକାଇଲା ନେହେରୁଙ୍କୁ । ସେ ବିସ୍ମୟରେ ପଚାରିଲେ– 'ହୁ ଇଜ୍ ଦିସ୍ ୟଙ୍ଗ୍ ଲେଡି ?'

ଇନ୍ଦିରା ଗାନ୍ଧୀଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ନନ୍ଦିନୀ ଥିଲେ ସବୁଠାରୁ ଚର୍ଚ୍ଚିତା । ଇନ୍ଦିରା ତାଙ୍କୁ ଖୁବ୍ ଆଦର କରୁଥିଲେ । ୧୯୬୬ରେ ନନ୍ଦିନୀଙ୍କୁ ଏକାଥରେ ମିଳିଥିଲା କେନ୍ଦ୍ରରେ ସୂଚନା ଓ ପ୍ରସାରଣ ବିଭାଗର ଉପମନ୍ତ୍ରୀ ପଦ । ପରେ ୧୯୬୮ରେ ନନ୍ଦିନୀ ଆଉ ଥରେ ଯାଇଥିଲେ ରାଜ୍ୟସଭାକୁ । ତାଙ୍କୁ ଦିଆଯାଇଥିଲା ଏକା ବିଭାଗର ରାଷ୍ଟ୍ରମନ୍ତ୍ରୀ ପଦବୀ ଏବଂ ସେ ଥିଲେ ମିନିଷ୍ଟର ଆଟାଚ୍ଡ ଟୁ ପ୍ରାଇମ୍ ମିନିଷ୍ଟର । ଇନ୍ଦିରାଙ୍କ ବିଦେଶ ଗସ୍ତ ଓ ସରକାରୀ କାର୍ଯ୍ୟାଳୟ ସବୁଆଡେ ଛାଇ ଯାଇଥିଲେ ନନ୍ଦିନୀ ।

ପରେ ସେ ଆସିଥିଲେ ଓଡ଼ିଶାର ଦାୟିତ୍ୱ ନେବାକୁ । ୧୯୭୧ ମସିହାରେ କଟକ ସହରରେ ଲଢିଥିଲେ ବିଧାନସଭା ପାଇଁ ଉପ–ନିର୍ବାଚନ । ତାହା ଥିଲା ଏକ ଐତିହାସିକ ନିର୍ବାଚନ । ଆଉ ସବୁ ଆଶା ଓ ଆକାଂକ୍ଷାକୁ ଦୂରେଇ ଦେଇ ବିଜୟୀ ହୋଇଥିଲେ ନନ୍ଦିନୀ । ବାସ୍– ତା' ପରଠାରୁ ସେ ଆଉ କେବେ ପଛକୁ ଫେରି ନାହାନ୍ତି । ୧୯୭୨ ମସିହାରେ ସେ ହୋଇଥିଲେ ଓଡ଼ିଶା ଶାସନର ମୁଖିଆ । ରାଜ୍ୟର ପ୍ରଥମ ତଥା ଦେଶର ଦ୍ୱିତୀୟ ମହିଳା ମୁଖ୍ୟମନ୍ତ୍ରୀ । ୧୯୭୪ ନିର୍ବାଚନରେ ନନ୍ଦିନୀ ଆସନ ପରିବର୍ତ୍ତନ କରିଥିଲେ ନିଜ କର୍ମକ୍ଷେତ୍ର ଢେଙ୍କାନାଳକୁ । ସେଠାରୁ ଜିତି ଦ୍ୱିତୀୟବାର ପାଇଁ ୧୯୭୪–୭୬ ମସିହା ପର୍ଯ୍ୟନ୍ତ ଦାୟିତ୍ୱ ଗ୍ରହଣ କରିଥିଲେ । ପରେ ୧୯୮୦ ଓ ୧୯୮୫ ମସିହା ନିର୍ବାଚନରେ ସେ ଢେଙ୍କାନାଳ ବିଧାନସଭା ଆସନରୁ ପ୍ରତିନିଧିତ୍ୱ କରିଥିଲେ । ଗଁଦିଆ ବିଧାନସଭା ଆସନରୁ ସେ ୧୯୮୯ ଓ ୧୯୯୫ରେ ରାଜ୍ୟ ଯୋଜନା ବୋର୍ଡର ଅଧକ୍ଷାଭାବେ ଦାୟିତ୍ୱ ତୁଲାଇଥିଲେ ।

ନନ୍ଦିନୀ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ । ଜୀବନରେ କାହା ପାଖରେ କେବେହେଲେ ସେ ନଇଁ ନାହାନ୍ତି । ପୁଣି ୧୯୮୦ ମସିହା ଢେଙ୍କାନାଳରେ ତାଙ୍କ ବିରୋଧରେ ପ୍ରାର୍ଥୀ ହୋଇଥିଲେ ମହିୟସୀ ମାଳତୀ ଦେବୀ । କିନ୍ତୁ ନନ୍ଦିନୀ ତାଙ୍କ ଜୀବନରେ କେବେହେଲେ ହାରି ନାହାନ୍ତି । ଶେଷରେ ମାଳତୀ ଦେବୀ ପରାସ୍ତ ହୋଇଥିଲେ ।

**ସୃଜନର ସ୍ୱାକ୍ଷର–** ରାଜନୀତି ଭିତରେ ସବୁ ଭୁଲିଥିଲେ ସାରସ୍ୱତ ସାଧନା । ରେଭେନ୍ସା କଲେଜରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ନନ୍ଦିନୀ ସ୍ନାତକୋତ୍ତର ପାସ୍ କରିଥିଲେ । ବାପା କାଳିନ୍ଦୀ ଚରଣଙ୍କ ଭାଷା ଓ ଦାଦା ଭଗବତୀ ପାଣିଗ୍ରାହୀଙ୍କ ଭାବ ତାଙ୍କ କଲମ ମୁନରେ ରୂପ ନେଇଥିଲା । ସାଧାରଣ ମଣିଷର ଭାଷା ତା' ଭିତରେ ଫୁଟି ଉଠିଥିଲା । ୧୯୪୨ ମସିହାରେ ସପ୍ତମ ଶ୍ରେଣୀରେ ପଢୁଥିବା ବେଳେ ନନ୍ଦିନୀ ଲେଖିଥିଲେ ତାଙ୍କର ପ୍ରଥମ ଗପ 'ଅନାଥ' । ୧୯୬୭ରେ ପ୍ରକାଶ ପାଇଥିଲା ତାଙ୍କର ପ୍ରଥମ ଗଳ୍ପ ସଂକଳନ 'କେତୋଟି କଥା' । ପରବର୍ତ୍ତୀ ସମୟରେ ଏହି ସଂକଳନ ଅନୁଦିତ ହୋଇଥିଲା ଅନ୍ୟ ଭାରତୀୟ ଭାଷାକୁ ।

ଅନୁବାଦ ସାହିତ୍ୟରେ ନନ୍ଦିନୀ ଥିଲେ ସିଦ୍ଧହସ୍ତା । ୧୯୭୦ରେ କ୍ରିଷ୍ଣାକ୍ରିପାଲିନୀଙ୍କ 'ଅଲ୍ ମେନ୍ ଆର୍ ବ୍ରଦର୍ସ' ବହିର ଓଡ଼ିଆ ଅନୁବାଦ କରିଥିଲେ, ଯାହା ସାହିତ୍ୟ ଏକାଡେମୀ ଦ୍ୱାରା 'ଗାନ୍ଧୀ କଥାମୃତ' ନାଁରେ ପ୍ରକାଶିତ ହୋଇଥିଲା । ୧୯୮୮ ମସିହାରେ ପ୍ରକାଶ ପାଇଥିଲା ତାଙ୍କର ଦ୍ୱିତୀୟ ଗଳ୍ପ ସଂକଳନ 'ସପ୍ତଦର୍ଶୀ' । ପରେ ସେ ଅନୁବାଦ କରିଥିଲେ, ଜ୍ଞାନପୀଠ ବିଜୟିନୀ ଅମୃତା ପ୍ରୀତମ୍ଙ୍କ ଆତ୍ମଜୀବନୀ 'ରେଭିନ୍ୟୁ

ଟିକେଟ' ବହିକୁ । ଅନୁଦିତ ସଂକଳନ 'ରସିଦ୍ ଟିକଟ' ୧୯୯୫ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା । ୧୯୮୮ରେ ପ୍ରକାଶିତ ହୋଇଥିଲା ତାଙ୍କ କବିତା ସଂକଳନ 'ଉତ୍ତର ପୁରୁଷ' । ତସ୍‌ଲିମା ନସ୍‌ରିନ୍‌ଙ୍କ 'ଲଜ୍ଜା', ପେନ୍ ପ୍ରୋଟେଟ୍ରସ୍ ଏଣ୍ଡ ଟ୍ରିବ୍ୟୁଟ୍‌ସ ବାଇ ଗାନ୍ଧିଜୀ ଏବଂ ବିଖ୍ୟାତ ବଙ୍ଗଳା ଲେଖିକା ମହେଶ୍ୱେତା ଦେବୀଙ୍କ ୨୫ଟି ଅନୁବାଦ ଗଳ୍ପ ପାଠକୀୟ ସ୍ୱୀକୃତିଲାଭ କରିଥିଲା ।

ଏହା ବ୍ୟତୀତ ଓଡ଼ିଶା ସାହିତ୍ୟ ଏକାଡେମୀ, ସାହିତ୍ୟ ଭାରତୀ ସମ୍ମାନ, ପ୍ରଜାତନ୍ତ୍ର ପ୍ରଚାର ସମିତି ସମ୍ମାନ ସାଙ୍ଗକୁ ୧୯୯୭ରେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ନନ୍ଦିନୀଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା ।

ନନ୍ଦିନୀଙ୍କ ବ୍ୟକ୍ତିତ୍ୱରେ ଥିଲା ହଜାରେ ଦିଗ । ସବୁ ଦୃଷ୍ଟିରୁ ସେ ଥିଲେ ନିଆରା । ତୀବ୍ର ସାମ୍ୟବାଦୀ ପରିବେଶ ଭିତରେ କଟିଥିଲା ନନ୍ଦିନୀଙ୍କ ପିଲାଦିନ । କକାଙ୍କ 'ଶିକାର' ଗପ କିମ୍ବା ବାପାଙ୍କ 'ମାଟିର ମଣିଷ'– ସବୁ କାହାଣୀର ଚରିତ୍ର ନନ୍ଦିନୀଙ୍କ ଦେହରେ ନେସି ହୋଇ ଯାଇଥିଲା । କେବେ ବି ନ ଲିଭିବାର ନିଆଁଟେ ସେଇଠୁ ଜଳିଥିଲା ନନ୍ଦିନୀଙ୍କ ପ୍ରାଣରେ । ଆଉ ତମାମ ଜୀବନ ସେଇ ନିଆଁ ହିଁ ତାଙ୍କ ପାଇଁ ଆପେ ଆପେ ବାଟ କଢେଇ ନେଇଥିଲା । ବାଟରେ ଗଲାବେଳେ ସେ ଭେଟିଥିଲେ ଗଛ ଛାଇରେ ଫାଙ୍କ ପେଟରେ ଶୋଇ ପଡିଥିବା ଛକଡି ପରି ମଣିଷକୁ । ତେଣୁ ତା'ରି ଭିତରୁ ବାହାରି ପଡିଥିଲା ସାରା ଦେଶର ଶ୍ରେଷ୍ଠ ଭୂ–ସଂସ୍କାର ଆଇନ କିମ୍ବା ବାର୍ଦ୍ଧକ୍ୟ ଭତ୍ତାର କାହାଣୀ ଅଥବା ବେସରକାରୀ ସ୍କୁଲ ଓ କଲେଜଗୁଡିକୁ ଅନୁଦାନ ଯୋଗାଇ ଦେବାର ପ୍ରକ୍ରିୟା ।

ନନ୍ଦିନୀଙ୍କ ଭିତରେ କିନ୍ତୁ ଭରି ରହିଥିଲା ଅଦମ୍ୟ ସାହସ । ସେ ଏକା ଏକା ସାମ୍ନା କରିଥିଲେ ଓଡ଼ିଶା ରାଜନୀତିର ତିନି ଜଣ ପ୍ରବାଦ ପୁରୁଷ ବିଜୁବାବୁ, ମହତାବ ଏବଂ ଆର୍.ଏନ୍. ସିଂହଦେଓଙ୍କୁ । ସବୁ ଆଶା ଆଶଙ୍କାକୁ ଦୂରେଇ ସଫଳ ହୋଇଥିଲେ ସେ । ସତୁରି ଦଶକ ଆରମ୍ଭରେ ନନ୍ଦିନୀ ହିଁ ଥିଲେ ଇନ୍ଦିରାଜୀଙ୍କର ସବୁଠାରୁ ଆଦରଣୀୟା । ଦିଲ୍ଲୀର ଖବର ଯେତେବେଳେ ଭୁବନେଶ୍ୱରରେ ପହଞ୍ଚିବାକୁ ଦୁଇ ଦିନ ଲାଗୁଥିଲା, ସେହି ସମୟରେ ନନ୍ଦିନୀ ଚଢିଥିଲେ ଦିଲ୍ଲୀରେ ସଫଳତାର ପାହାଚ । ଜୀବନର ସମଗ୍ର ଅନୁଭୂତିକୁ ସେ ପ୍ରୟୋଗ କରିଥିଲେ ଉପକୂଳ ଭାରତର ଏଇ ରାଜ୍ୟର ବିକାଶ ଦିଗରେ ।

ତାଙ୍କ ଭାଷା ଆଉ ଭାବ ଥିଲା ସବୁଠାରୁ ତୀକ୍ଷ୍ଣ । ବାପା ଏବଂ କକାଙ୍କ ସ୍ୟାହି ଓ କଲମ ମିଶାମିଶି ନୂଆ ଏକ ରୂପ ନେଇଥିଲା ନନ୍ଦିନୀଙ୍କ ହାତରେ । ଅନୁବାଦ ସାହିତ୍ୟରେ ସେ ଥିଲେ ଅତୁଳନୀୟ । ଓଡ଼ିଶାର ସାମ୍ବାଦିକତା ଇତିହାସରେ ବି ତାଙ୍କର ହସ୍ତାକ୍ଷର ଭାରି ସ୍ପଷ୍ଟ । ଆଉ ସେଇମିତି ସ୍ପଷ୍ଟ ତାଙ୍କର କଥା କହିବାର ଢଙ୍ଗ ଏବଂ ନିଷ୍ପତ୍ତି ନେବାର ଦକ୍ଷତା ।

ଆତୁଲି



# ଏଭରେଷ୍ଟ ବିଜୟିନୀ କଳ୍ପନା ଦାସ

**ମହେଶ୍ୱର ବରାଡ**

ସବୁ ମଣିଷ ସ୍ୱପ୍ନ ଦେଖନ୍ତି ହେଲେ ସବୁ ସ୍ୱପ୍ନକୁ ପହଞ୍ଚାଇ ପାରନ୍ତି ନାହିଁ ଶୀର୍ଷରେ । ଅନେକ ପ୍ରତିବନ୍ଧକ ଅନେକ ଅସୁବିଧାକୁ ଅତିକ୍ରମ କରି କଳ୍ପନା ଦାସ ଶେଷରେ ନିଜ ସ୍ୱପ୍ନକୁ ସାକାର କଲେ । ଓଡ଼ିଶାର ପ୍ରଥମ ବ୍ୟକ୍ତିତ୍ୱ ବୀରବାଳା କଳ୍ପନା ଦାସ ହିମାଳୟର ୮୮୪୮ ମିଟର ଉଚ୍ଚତା ବିଶିଷ୍ଟ ଏଭରେଷ୍ଟ ଶୃଙ୍ଗ ଆରୋହଣ କଲେ । ଏହା ଥିଲା ୨୦୦୮ ମସିହା ମଇ ୨୧ ତାରିଖର ଘଟଣା । କଳିଙ୍ଗର ଏହି ବୀରବାଳା ଏଭରେଷ୍ଟର ସର୍ବୋଚ୍ଚ ଶିଖରରେ ଉଡାଇ ଥିଲେ ଭାରତର ଜାତୀୟ ପତାକା ସହ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବାନା । ଏଥିପାଇଁ କଳ୍ପନା ନିଜେ ଧନ୍ୟ ହୋଇ ନାହାନ୍ତି । ନିଜ ସମେତ ଧନ୍ୟ କରାଇଛନ୍ତି ଓଡ଼ିଆ ଜାତିକୁ । ୧୮୪୧ ମସିହାରେ ବ୍ରିଟିଶ ସର୍ଭେୟର ଜେନେରାଲ ଜର୍ଜ ଏଭରେଷ୍ଟ ଏହି ଶୃଙ୍ଗକୁ ଆବିଷ୍କାର କରିଥିଲେ । ତାଙ୍କ ନାମ ଅନୁସାରେ ଏହି ଶୃଙ୍ଗର ନାମ ୧୮୬୫ ମସିହାରେ ଏଭରେଷ୍ଟ ରଖାଗଲା । ୧୯୫୩ ମସିହାରେ ସାର୍ ଏଡମଣ୍ଡ ହିଲ୍ଲାରୀ ଓ ତେନ୍ ଜିଙ୍ଗ ନର୍ଗେ ବିଶ୍ୱର ସର୍ବ ପ୍ରଥମେ ଏଭରେଷ୍ଟ ଶିଖରରେ ପହଞ୍ଚି ଥିଲେ । ସେହି କାଳଠାରୁ ଅନେକ ବୀରପୁରୁଷ ଏଭରେଷ୍ଟ ଆରୋହଣ କରିଥିଲେ ମଧ୍ୟ ଏଭରେଷ୍ଟ ଆରୋହଣ କରିବାରେ ଜୁଙ୍କୋ ତାବେଇ ହେଉଛନ୍ତି ବିଶ୍ୱର ପ୍ରଥମ ମହିଳା । ଏଭରେଷ୍ଟ ସାରଣୀରେ କଳ୍ପନାଙ୍କ ନାମ ତାଲିକାର କେତେ ନମ୍ବର ଜଣା ନଥିଲେ ମଧ୍ୟ ଏଭରେଷ୍ଟ ଆବିଷ୍କାରର ୫୫ ବର୍ଷ ପରେ ଏହି ବୀରବାଳା ଓଡ଼ିଆ ଝିଅ ଓଡ଼ିଶା ଇତିହାସରେ ନୂଆ ପୃଷ୍ଠାଟିଏ ନିଜ ନାମରେ ଯୋଡିଦେଲେ, ଯାହା ଓଡ଼ିଶା ପାଇଁ ଆଶ୍ଚର୍ଯ୍ୟଠାରୁ ଅଧିକ ସତ୍ୟଭଳି ପ୍ରତ୍ୟୟ ହୁଏ ।



**ପରିଚୟ**

ନାମ – କଳ୍ପନା ଦାସ

ପିତା – ସ୍ୱର୍ଗତ ଗୁଣନିଧି ଦାସ

ମାତା – ଶୈଳବାଳା ଦାସ

ଠିକଣା – କୁମ୍ଭାର ସାହି, କାଞ୍ଚନ ବଜାର, ଢେଙ୍କାନାଳ

ଜନ୍ମ – ସାରିଆପଡା

ଜନ୍ମ ତାରିଖ – ୦୭.୦୭.୧୯୬୬

ଶିକ୍ଷା– ମାଟ୍ରିକୁଲେସନ୍– ୧୯୮୩ ମସିହା ବଳରାମପୁର ହାଇସ୍କୁଲ

ଗ୍ରାଜୁଏସନ୍– ୧୯୮୮ ମସିହା ଢେଙ୍କାନାଳ ମହିଳା ମହାବିଦ୍ୟାଳୟ

ଆଇନ୍ ଡିଗ୍ରୀ– ୧୯୯୧ ମସିହା ଢେଙ୍କାନାଳ ଆଇନ ମହାବିଦ୍ୟାଳୟ

ପ୍ରଥମ ଏଭରେଷ୍ଟ ଅଭିଯାନ– ୨୦୦୪ ମସିହା (୭,୩୦୦ ମିଟର ଚଢି ଅକୃତକାର୍ଯ୍ୟ ହୋଇ ଫେରିଥିଲେ)

ଦ୍ୱିତୀୟ ଅଭିଯାନ– ପାଗ ଖରାପ ଯୋଗୁଁ ପୁନଶ୍ଚ ଅକୃତକାର୍ଯ୍ୟ ହୋଇ ଫେରିଥିଲେ ।

ତୃତୀୟ ଅଭିଯାନ ଓ କୃତକାର୍ଯ୍ୟ– ୨୧ ମେ ୨୦୦୮ ମସିହା ଭାରତୀୟ ସମୟ ସକାଳ ଘ. ୧୧.୪୫ ମି. ।

**କଳ୍ପନାଙ୍କ ପରେ ଓଡ଼ିଶାର ଏଭରେଷ୍ଟ ବିଜୟୀ–**

୧. ଗଣେଶ ଚନ୍ଦ୍ର ଜେନା, ବି. ସୀତାପୁର, ପାରଳାଖେମୁଣ୍ଡି, ତାରିଖ– ୧୮ ମେ, ୨୦୧୧

୨. ଯୋଗବ୍ୟାସ ଭୋଇ, ରୂପରା, କଳାହାଣ୍ଡି, ତାରିଖ–୧୯ ମେ, ୨୦୧୧

୩. ସ୍ୱାର୍ଡନ୍ ଲିଡର ଦେବୀଦତ୍ତ ପଣ୍ଡା, ସୁସୁଆ, ଜିଲ୍ଲା– ଭଦ୍ରକ, ତାରିଖ– ମଇ ୨୦୧୧

କଳ୍ପନା ଦାସ ଏଭରେଷ୍ଟ ବିଜୟ କଲା ବେଳକୁ ତାଙ୍କ ବୟସ ଥିଲା ୪୨ ବର୍ଷ । କଳ୍ପନା ହେଉଛନ୍ତି ପ୍ରଥମ ଭାରତୀୟ ମହିଳା ଏବଂ ତୃତୀୟ ଭାରତୀୟ ପର୍ବତାରୋହୀ ଯିଏ ବେସରକାରୀ ପ୍ରୟାସରେ ଏଭରେଷ୍ଟ ବିଜୟ କରିଥିଲେ । ଏଥିସହ କଳ୍ପନା ସମଗ୍ର ଜଗତ ପାଇଁ ପ୍ରମାଣିତ କରାଇ ପାରିଛନ୍ତି ଯେ– ଦୁଃସାହସିକତା ପ୍ରଦର୍ଶନ କରିବାରେ ଓଡ଼ିଆ ଝିଅ କୌଣସି ଗୁଣରେ କମ୍ ନୁହଁନ୍ତି । ଭାରତ ଭଳି ଏକ ପୁରୁଷ ପ୍ରଧାନ ସମାଜରେ ମହିଳାଟିଏ ନିଜସ୍ୱ ବ୍ୟକ୍ତିତ୍ୱ ଜାହିର୍ କରିବା କଷ୍ଟକର ହୋଇଥିବା ସତ୍ତ୍ୱେ କିରଣବେଦୀ, କଳ୍ପନା ଚାଓ୍ୱଲା, ସାନିଆ ମିର୍ଜାଙ୍କ ଭଳି ମହିଳାଙ୍କ ସମେତ କଳ୍ପନା ଦାସ ପାରମ୍ପରିକ ସମାଜର ସବୁ ମିଥ୍‌କୁ ଭାଙ୍ଗି ନୂତନ ଆଦର୍ଶର ଦୃଷ୍ଟାନ୍ତ ରଖିଯାଇଛନ୍ତି ।

କଳ୍ପନା ଯେ କେବଳ ଏତିକି ନୁହଁନ୍ତି, ଏଇ ନିକଟରେ ୨୦୧୫ ଡିସେମ୍ବର ୧୦ ତାରିଖରେ ସମାଜ ପତ୍ରିକାକୁ ଏକ ସାକ୍ଷାତକାରରେ ସେ କହିଛନ୍ତି–

ବିଶ୍ୱର ସର୍ବୋଚ୍ଚ ଶୃଙ୍ଗ ମାଉଣ୍ଟ ଏଭରେଷ୍ଟକୁ ମେ ୨୧, ୨୦୦୮ରେ ଆରୋହଣ କରି ପହଞ୍ଚିବା ସମୟରେ ସେହି ସମୟର ୫ମିନିଟ୍‌ର ବର୍ଷା ମୋ ଜୀବନର ସବୁଠାରୁ ଅଧିକ ସ୍ମରଣୀୟ ମୁହୂର୍ତ୍ତ । ବର୍ତ୍ତମାନ ସୁଦ୍ଧା ବିଶ୍ୱର ପ୍ରମୁଖ ୫ଟି ଶୃଙ୍ଗ ଆରୋହଣ କରି ସାରିଥିବା ବେଳେ ପ୍ରଭୁ ଜଗନ୍ନାଥ ଓ ମା' ତାରିଣୀଙ୍କ ଆଶୀର୍ବାଦ ମିଳିଲେ ନିକଟ ଭବିଷ୍ୟତରେ ଆଣ୍ଟାର୍କଟିକା ମାଉଣ୍ଟ ଡୋନାଲି ଓ ମାଉଣ୍ଟ ମିକିଲି ଆରୋହଣ ଲକ୍ଷ୍ୟ ରହିଛି ବୋଲି ପର୍ବତାରୋହୀ କଳ୍ପନା ଦାସ କେନ୍ଦୁଝର ଜିଲ୍ଲାପାଳଙ୍କ ମିନିକନ୍‌ଫରେନ୍ସ ହଲଠାରେ ଅନୁଷ୍ଠିତ ଏକ ସ୍ୱତନ୍ତ୍ର ସାକ୍ଷାତକାର ଅବସରରେ ଏହା କହିଛନ୍ତି ।

କେନ୍ଦୁଝରର ଜିଲ୍ଲା ପ୍ରଶାସନ ଅନୁରୋଧକ୍ରମେ ତ୍ରିବେଣୀ କମ୍ପାନୀର ଦେଢଲକ୍ଷ ଏବଂ ରୁଙ୍ଗଟା କମ୍ପାନୀ ୮୦ ହଜାର ଟଙ୍କାର ଆର୍ଥିକ ସହାୟତା ବଳରେ କଳ୍ପନା ଅଷ୍ଟ୍ରେଲିଆ ଗସ୍ତକରି ସିଡନୀରେ ପହଞ୍ଚିବା ପରେ ସେହିଦିନ କାନବୋରାରୁ ଯାତ୍ରାରମ୍ଭ କରି ଜାନଭାନିଆରେ ପହଞ୍ଚି ଥିଲେ । ଜାନଭିଆରୁ ଗାଇଡ ମାଇକ୍ ସହ ଥ୍ରେଡବୋରୁ ପର୍ବତାରୋହଣ ଆରମ୍ଭ କରି ୨୨୨୯ ମିଟର ଉଚ୍ଚତା ବିଶିଷ୍ଟ ମାଉଣ୍ଟ କଜିଆସ୍କୋ ଶୃଙ୍ଗକୁ ମାତ୍ର ୨ ଘଣ୍ଟାରେ ସଫଳତାର ସହ ପହଞ୍ଚି ପାରିଥିବା କଳ୍ପନା କହିଛନ୍ତି । ତାଙ୍କର ଏହି ଶୃଙ୍ଗ ଆରୋହଣ ପାଇଁ ପୂର୍ବରୁ ଚେଷ୍ଟା କରି ଆର୍ଥିକ ଅଭାବ ଯୋଗୁଁ ସଫଳ ହୋଇ ପାରିନଥିବା ବେଳେ କେନ୍ଦୁଝର ଜିଲ୍ଲା ପ୍ରଶାସନର ସହଯୋଗ ଯୋଗୁଁ ଅଷ୍ଟ୍ରେଲିଆ ଗସ୍ତ ସଫଳ ହୋଇଥିବାରୁ ଅଷ୍ଟ୍ରେଲିଆରୁ ଫେରି ସିଧା କେନ୍ଦୁଝରରେ ପହଞ୍ଚି ଜିଲ୍ଲା ପ୍ରଶାସନକୁ କୃତଜ୍ଞତା ଜଣାଇଥିଲେ କଳ୍ପନା । ମାଉଣ୍ଟ ଏଭରେଷ୍ଟ ଆରୋହଣ ପରେ କଳ୍ପନା ଅକ୍ଟୋବର ୨୦୧୪ରେ ଦକ୍ଷିଣଆଫ୍ରିକାର ୫୮୯୫ ମିଟର ଉଚ୍ଚତା ବିଶିଷ୍ଟ କାଲିମିଞ୍ଜାର ଶୃଙ୍ଗ ଓ ୧୬ ଜାନୁଆରୀ ୨୦୧୫ରେ ୬୯୬୨ ମିଟର ଉଚ୍ଚତା ବିଶିଷ୍ଟ ଆକୋଙ୍କାଗୁଆ ଶୃଙ୍ଗ, ୩୧ ଜୁଲାଇ ୨୦୧୫ରେ ୟୁରୋପର ୫୬୪୨ ଉଚ୍ଚତା ବିଶିଷ୍ଟ ଏଲବ୍ରୁସ୍ ଶୃଙ୍ଗ ସଫଳତାର ସହ ଆରୋହଣ କରିଥିବା ବେଳେ ପରେ ଅଷ୍ଟ୍ରେଲିଆ ଗସ୍ତ କରି ଜାନଭାନିଆ ନିକଟସ୍ଥ ୨୨୨୯ ମିଟର ଉଚ୍ଚତା ବିଶିଷ୍ଟ ମାଉଣ୍ଟ କଜିଆସ୍କୋ ଶୃଙ୍ଗକୁ ମାତ୍ର ୨ ଘଣ୍ଟାରେ ଆରୋହଣ କରିବାର ରୋମାଞ୍ଚଭରା ଅନୁଭୂତି ବାଣ୍ଟିଥିଲେ କଳ୍ପନା । ପିଲାବେଳୁ ବାପାଙ୍କୁ ଅନୁସରଣ କରି ପର୍ବତ ଚଢିବାର ନିଶା ତାଙ୍କୁ ଜଣେ ସଫଳ ପର୍ବତାରୋହୀର ପରିଚୟ ସୃଷ୍ଟି କରି ପାରିଥିଲା । ତେବେ ମାଉଣ୍ଟ ଏଭରେଷ୍ଟ ଆରୋହଣ ପରଠାରୁ ଅନ୍ୟ ବିଦେଶ ଗସ୍ତ କରି ସେଠାକାର ପର୍ବତାରୋହଣ ପାଇଁ ସେ ଢେଙ୍କାନାଳ, ଅନୁଗୁଳ, ସୁନ୍ଦରଗଡ ଓ କେନ୍ଦୁଝର ଜିଲ୍ଲା ପ୍ରଶାସନର ସହଯୋଗକୁ ସେ କେବେ ଭୁଲି ପାରିବେ ନାହିଁ ବୋଲି କହିଛନ୍ତି ।

ମର୍ଦ୍ଦକୋଟ

# ଭୀମଭୋଇଙ୍କ ଦିବ୍ୟବାଣୀ

ଗୋରେଖନାଥ ସାହୁ

ଭୀମଭୋଇ ଆପଣାର କାଳଜୟୀ ରଚନାବଳୀ ମାଧ୍ୟମରେ ମାନବ ସମାଜକୁ କେତେକ ଦିବ୍ୟବାଣୀ ଦେଇ ଯାଇଛନ୍ତି । ସେହି ଦିବ୍ୟବାଣୀ ମଧ୍ୟରେ ବାରମ୍ବାର ଉଦ୍‌ଘୋଷ ହୋଇଛି ଗୁରୁ–ଶିଷ୍ୟ ସମ୍ପର୍କ ଏବଂ ସ୍ୱାମୀ ଓ ସ୍ତ୍ରୀ ସମ୍ପର୍କ । ଭୀମ ଭୋଇ ନିଜ ଗୁରୁଙ୍କୁ ସାକ୍ଷାତ୍ ପରଂବ୍ରହ୍ମ ସଦୃଶ ଜ୍ଞାନ କରି ସେହିପରି ତାଙ୍କୁ ସମ୍ମାନ ଦେଉଥିଲେ ।

ଗୁରୁର୍ବ୍ରହ୍ମା ଗୁରୁ ର୍ବିଷ୍ଣୁଃ ଗୁରୁର୍ଦେବ ମହେଶ୍ୱରଃ
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।

ଗୁରୁ (ମହିମା ଗୋସାଇଁ) ଯାହାଙ୍କୁ ସେ ସାକ୍ଷାତ୍ ଶଙ୍ଖ ଚକ୍ରଧାରୀ ରୂପେ ଦର୍ଶନ କରିଥିଲେ, ତାଙ୍କୁ ଅଯୋନି ସମ୍ଭୂତ ଓ ତିନି ଭୁବନର ହର୍ତ୍ତାକର୍ତ୍ତା ବିଧାତା ବୋଲି ମନେ କରୁଥିଲେ । ଗୁରୁ ହେଉଛି ଆଧ୍ୟାତ୍ମିକ ଜଗତରେ ମୁକ୍ତିର ମାର୍ଗ ବତାଇ ଶିଷ୍ୟକୁ ତିଆରି ଦେଉଥିବା ଧର୍ମପୁରୁଷ । ସେ ହେଉଛନ୍ତି ଶିଷ୍ୟ (ଭକ୍ତ) ଓ ଭଗବାନଙ୍କ ମଧ୍ୟରେ ଯୋଗସୂତ୍ର । ଭକ୍ତ, ଗୁରୁ ଓ ଭଗବାନ ହେଉଛନ୍ତି ଗୋଟିଏ ସରଳ ରେଖାର ତିନୋଟି ବିନ୍ଦୁ । ଭକ୍ତ ଭୀମଭୋଇ ଗୁରୁ ଓ ଭଗବାନଙ୍କ ମଧ୍ୟରେ ମୋଟେ ପାର୍ଥକ୍ୟ ଦେଖି ନାହାନ୍ତି । ଗୁରୁ ବନ୍ଦନା କରିବାକୁ ଯାଇ ସେ ଗାଇଛନ୍ତି:

''ଗୁରୁ ସେବାଧର୍ମ ଚାରିଯୁଗେ ରହେ
କ୍ଷୟବୃଦ୍ଧି କେବେ ନୁହେଁ ।
ସେବା ମଧ୍ୟରେ ପ୍ରଧାନ ଅଟେ
ସେହୁ ଶତେ ପୁରୁଷର ଯାଏ ।୫।
ଗୁରୁସେବା ଫଳ ଶତେକ ପୁରୁଷ ଖାଇ ବୋହିଲେ ନସରେ ।
ଗୁରୁ ଭକତିରେ ଅପାର ମହିମା ଅଶେଷ ଦୁରିତ ହରେ ।୬।
(ସପ୍ତପଞ୍ଚଶତ ବୋଲି, ସ୍ତୁତିଚିନ୍ତାମଣି)

ଭୀମଭୋଇ ନିଜେ ରଚନାବଳୀରେ ଗୁରୁ ଶିଷ୍ୟ ସମ୍ପର୍କକୁ ଏତେ ମହତ୍ୱ ଦେବାର ଯଥେଷ୍ଟ ବୈଜ୍ଞାନିକ କାରଣ ଅଛି । ଆଧ୍ୟାତ୍ମିକ କ୍ଷେତ୍ରରେ ଈଶ୍ୱର ପ୍ରାପ୍ତିର ଏକମାତ୍ର ବାଟ ହେଉଛି ସଦ୍‌ଗୁରୁର ସେବା କରିବା । ସେଥିପାଇଁ ଭୀମଭୋଇ ମୋକ୍ଷ ଲାଭ ପାଇଁ ସଦ୍‌ଗୁରୁ ସେବାରେ ମନପ୍ରାଣ ଢାଳି ଦେଇଛନ୍ତି । ସନାତନ ଧର୍ମରେ ଗୁରୁ ପରମ୍ପରା ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରାଯାଇଛି । ଶାସ୍ତ୍ର ପୁରାଣରେ ଗୁରୁଭକ୍ତିର ଭୁରି ଭୁରି ପ୍ରମାଣ ଦିଆଯାଇଛି । ମହାଭାରତରେ ଏକଲବ୍ୟର ଗୁରୁଭକ୍ତି ତାହାକୁ ଚିରଦିନ ଅଜର ଅମର କରି ରଖିଛି । ଗୁରୁର ପିତୁଳା ମଧ୍ୟ ଶିଷ୍ୟକୁ ସାଧନା ପଥରେ ସିଦ୍ଧି ପ୍ରଦାନ କରିପାରେ । ତାହାର ଏକ ଜ୍ୱଳନ୍ତ ଉଦାହରଣ ଏକଲବ୍ୟ ଓ ଦ୍ରୋଣ ଉପାଖ୍ୟାନ । ଗୁରୁ ହେଉଛି ସେହି ପୁରୁଷ ଯେ ଶିଷ୍ୟକୁ ଅଜ୍ଞାନରୁ ଜ୍ଞାନକୁ, ଅନ୍ଧକାରରୁ ଆଲୋକକୁ ଓ ମୃତ୍ୟୁରୁ ଅମୃତତ୍ୱ ଆଡକୁ ନେଇଯାଏ ।

ଗୁରୁ ସଂସାର ରୂପକ ଭବସାଗରରୁ ପାରିକରି ଲକ୍ଷ୍ୟ (ମୋକ୍ଷ)ପଥରେ ପହଞ୍ଚାଇ ଦେବା ନାବିକ । ସଂସାରରେ ସମସ୍ତଙ୍କୁ ସଦ୍‌ଗୁରୁ ପ୍ରାପ୍ତ ହୁଅନ୍ତି ନାହିଁ । ପୂର୍ବ ଜନ୍ମ (ପ୍ରାରବ୍ଧ) ଓ ଇହ ଜନ୍ମର ସୁକୃତିରୁ ସଦ୍‌ଗୁରୁ ପ୍ରାପ୍ତ ହୁଅନ୍ତି । ଏବେ ଆଧୁନିକ ସମାଜରେ ଭଣ୍ଡ ଗୁରୁମାନଙ୍କ ସଂଖ୍ୟା ଖୁବ୍ ବେଶୀ । ଭୌତିକ ଧନ ସମ୍ପତ୍ତି ସଂଗ୍ରହ ପାଇଁ ସେମାନେ ସବୁବେଳେ ନାନା ଯୋଜନା ଫାନ୍ଦିବାରେ ମନବଳାଇ ଥାନ୍ତି । ସେମାନଙ୍କ ଭଣ୍ଡାମୀ

ଦିନେନା ଦିନେ ଲୋକଲୋଚନକୁ ଆସେ ଏବଂ ସେମାନେ ସବୁକାଳ ପାଇଁ ନିନ୍ଦିତ ହୁଅନ୍ତି । ସେମାନଙ୍କ ମଧ୍ୟରୁ କେତେକ ଅଲୌକିକ ଶକ୍ତି ପ୍ରଦର୍ଶନ କରି ନିଜର ଆଧ୍ୟାତ୍ମିକ ଗୁଣକୁ ନ୍ୟୂନ କରି ଦିଅନ୍ତି । ଦିନକର କଥା– ଜଣେ ସାଧୁ ପରମହଂସ ରାମକୃଷ୍ଣଙ୍କ ସମ୍ମୁଖରେ ଗଙ୍ଗାନଦୀ ଉପରେ ପାଣିରେ ଏ କୂଳରୁ ସେ କୂଳକୁ ଚାଲିଗଲେ । ତାହା ଦେଖି ରାମକୃଷ୍ଣ କହିଲେ ଯେ ସେ ସାଧୁର ଏତେ କଷ୍ଟକର ସାଧନା ନିମିଷକେ ଧ୍ୱଂସ ହୋଇଗଲା । ନିଜ ଆଧ୍ୟାତ୍ମିକ ଶକ୍ତିର ଅପଚୟ ଏତେ ଛୋଟ କାମ ପାଇଁ ସେ କଲେ, ଯାହା ସେ ଦିଅଣା ପଇସା ଦେଇ ଡଙ୍ଗାରେ ପାରି ହୋଇ ଅପରପାର୍ଶ୍ୱକୁ ଯାଇ ପାରିଥାନ୍ତେ ।

ଭଗବାନ ସ୍ୱୟଂ ଶକ୍ତି ସ୍ୱରୂପ । ସେ ସକଳ ଶକ୍ତିର ଆଧାର । ତେଣୁ ଶକ୍ତିର ସର୍ବଦା ସଂଚୟ ହେବା ଉଚିତ୍ ଏବଂ ଶକ୍ତିର ଅପଚୟ ସର୍ବଦା ବର୍ଜନୀୟ । ମାତ୍ର କାମକୁ ଜାଣି ଶକ୍ତିର ଯଥାର୍ଥ ଉପଯୋଗ ହେବା ବିଧେୟ । ଭଗବାନ ସକଳ ଶକ୍ତିର ଉତ୍ସ । ସେ ସର୍ବ ଶକ୍ତିମାନ୍, ସର୍ବଜ୍ଞ ଓ ସର୍ବବ୍ୟାପୀ ବୋଲି ସାଧକର ଉପଲବ୍ଧି ହେଲେ ଭଗବାନଙ୍କ ସହ ତା'ର ସମ୍ବନ୍ଧ ଯୋଡି ହୋଇଯାଏ ।

ଭୀମଭୋଇ ସ୍ୱାମୀ ସ୍ତ୍ରୀର ସମ୍ପର୍କକୁ ଏତେ ପ୍ରାଧାନ୍ୟ ଦେଇ ସେ ସମ୍ପର୍କରେ ବାରମ୍ବାର ଅବତାରଣା କରିବାର ତାତ୍ପର୍ଯ୍ୟ କ'ଣ ? ଏ ସମ୍ପର୍କରେ ଅନୁଧ୍ୟାନ କଲେ ଜଣାଯାଏ ଯେ ସ୍ୱାମୀ ସ୍ତ୍ରୀ ସମ୍ପର୍କ ହେଉଛି ଏକ ସାଂସାରିକ ବନ୍ଧନ, ଜଣେ ମଲାପରେ ଆଉ ଜଣେ ସଙ୍ଗରେ ସ୍ୱର୍ଗକୁ ଯାଏ ନାହିଁ । ମନୁଷ୍ୟ ଏକୁଟିଆ ଆସିଛି ଓ ଗଲାବେଳେ ମଧ୍ୟ ଏକୁଟିଆ ଯିବ, ଏହା ଧ୍ରୁବ ସତ୍ୟ ତେବେ ସ୍ୱାମୀ ସ୍ତ୍ରୀ ସମ୍ପର୍କ ଏପରି ଏକ ବନ୍ଧନ ଯାହା ବିଭୁ ପଦରୁ ଜଣେ ସାଧକକୁ ଅଲଗା କରେ । ପ୍ରଭୁଙ୍କ ସହିତ ସାଧକର ଏକାତ୍ମଭାବ ସୃଷ୍ଟି ହୋଇ ପାରେନା । ସ୍ୱାମୀ ସ୍ତ୍ରୀ ସମ୍ପର୍କରୁ ଜାତ ସଂସାର ଜଞ୍ଜାଳ ତାକୁ ଏମିତି ମାଡି ବସେ ସେ ଈଶ୍ୱରଙ୍କ ନାମ ସ୍ମରଣ କଥା ମଧ୍ୟ ଭୁଲିଯାଏ । ରମଣ ମହର୍ଷିଙ୍କ ଶିଷ୍ୟ ସାଧୁ ପଲ ବ୍ରଣ୍ଟନ୍ ଏକଥା କହିଲେ ଯେ– ''ଆମେ ଭଗବାନଙ୍କୁ ସ୍ମରଣ ବ୍ୟତୀତ ଆଉ ଅଧିକ କ'ଣ କରିପାରିବା ?'' ଏ କଥାରେ ହୁଏତ ସତ୍ୟତା ଅଛି । ମାତ୍ର ସମ୍ପୂର୍ଣ୍ଣ ସତ୍ୟତା ନାହିଁ କାରଣ ନବଧା ଭକ୍ତିମତେ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବା, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ମାଧ୍ୟମରେ ପରମାତ୍ମା ଭଗବାନଙ୍କୁ ପ୍ରାପ୍ତ କରାଯାଇପାରେ । ଶରଣାଗତ ଭକ୍ତକୁ ସ୍ୱୟଂ ଭଗବାନ ମନେ ପକାନ୍ତି । ସେ ତା'ର ସମସ୍ତ ଯତ୍ନ ନିଅନ୍ତି, ଠିକ୍ ଯେପରି ମା' ବିଲେଇ ନିଜ ଛୁଆକୁ ତୁଣ୍ଡରେ ଧରି ଏ ଠାବରୁ ନିଆଅଣା କରେ । ବିଲେଇ ଛୁଆର ସେଠାରେ କିଛି କର୍ତ୍ତୃତ୍ୱ ନଥାଏ । ଠିକ୍ ସେହିପରି ଶରଣାଗତ ଭକ୍ତ ଭଗବାନଙ୍କ ସାହା ଭରସାରେ ଚଳେ । ତେଣୁ ସେହି ଭରସାରେ ଭୀମଭୋଇ ଗାଇଛନ୍ତି–

''ଅଭୟ ବ୍ରହ୍ମକୁ ଆଶ୍ରେ କଲେ ପରା ନଥାଇ ମନରେ ଭୟ ।
ଚିରାନନ୍ଦ ଯେବେ କରୁଣା କରନ୍ତି ଚିରକାଳ ରହେ ଦେହ ।୩।

X X X

ଅଭୟ ପାଦପଦ୍ମକୁ ଆଶ୍ରାକଲେ ନାହିଁ ପରା ଜନ୍ମ ମୃତ୍ୟୁ ।
ପିଣ୍ଡ ନପଡଇ ଶ୍ରୋତା ନବୁଡଇ ଚାରିଯୁଗେ ରହେ ହେତୁ ।୫।
(ସ୍ତୁତିଚିନ୍ତାମଣି ଏକଷଷ୍ଠୀ ବୋଲି)

ଯେଉଁ ଲୋକ ପ୍ରଭୁ ନାମ ସ୍ମରଣ ଶୁଦ୍ଧା ବିସ୍ମରଣ ହୁଏ, ସେଭଳି ଲୋକ ନବଧା ଭକ୍ତିର କେଉଁ ଭାବକୁ ବା ଆଶ୍ରୟ କରିବ ? ଶରଣାଗତ ଭକ୍ତକୁ ଭଗବାନଙ୍କ ବ୍ୟତୀତ ଆଉ କିଛି ଦେଖାଯାଏ ନାହିଁ । ସଦା ସର୍ବଦା ସେ ଭଗବାନଙ୍କୁ ହିଁ କେବଳ ଦେଖୁଥାଏ । ସର୍ବବ୍ୟାପୀ ଭଗବାନ ସର୍ବତ୍ର ତାକୁ ଦୃଷ୍ଟିଗୋଚର ହୁଅନ୍ତି । ପାର୍ଥିବ ସଂସାର ଜଂଜାଳରେ ତା'ର ମନ ନଥାଏ । ତଥାପି ଯେ ଗୃହୀ ତା'ର ମଧ୍ୟ ଭକ୍ତି କରିବାର ଅଧିକାର ଅଛି । ସଂସାର ମଧ୍ୟରେ ପଦ୍ମ ପତ୍ରରେ ପାଣି ସଦୃଶ ତାହାକୁ ରହିବାକୁ ହୁଏ । ଗୃହୀ ହେଲେ ମଧ୍ୟ ଅନାସକ୍ତ ତା'ର ଜୀବନ, ଯେଉଁ ଅନାସକ୍ତ ଭାବର ଜ୍ଞାନ ଗୀତା ମାନବ ସମାଜକୁ ପ୍ରଦାନ କରେ । ଗୀତାରେ ମଧ୍ୟ ଯୋଗେଶ୍ୱର କୃଷ୍ଣ ସଂସାର ଭିତରେ ଥିଲେ ମଧ୍ୟ ଅର୍ଜୁନଙ୍କୁ ଜଣେ ଯୋଗୀ ହୋଇଯିବା ପାଇଁ ପରାମର୍ଶ ଦେଇଥିଲେ । ସଂସାର ଭିତରେ ଥିଲେ ଜଣେ ଗୃହସ୍ଥକୁ ତା'ର ଧର୍ମ ପାଳନ କରିବାକୁ ହୋଇଥାଏ ଏବଂ ଗୃହସ୍ଥର ଧର୍ମ କିପରି ପାଳନ କରିବା ଉଚିତ୍ ସେ କଥା ଭୀମଭୋଇ ନିଜ ଜୀବନରେ ପାଳନ କରି ସମଗ୍ର ଜଗତ ଭଗତଙ୍କୁ ସେପରି କରିବାକୁ ପରାମର୍ଶ ଦେଇଛନ୍ତି ।

''ମହିମା ଭଜିଲେ ପର ପୁରୁଷଙ୍କୁ
ବୋଲିବ ଏ ମୋର ବାପ ।
ଗୁରୁ ପ୍ରସନ୍ନେ ସେ ଜଳ ଫଳ ପାଇ
ତପସ୍ୟାଠାରୁ ଅଧିକ ।''୯।

ମହିମା ଭଜିଲେ ପର ଯୁବତୀକି ବୋଲିବ ଏ ମୋର ମାତା ।
ମାତା ବୋଲନ୍ତେ ମୋହ ମାୟା
ନଲାଗେ ଆପେ ଛଡାନ୍ତି କରତା ।୧୦।
ମହିମା ଭଜିଲେ ସ୍ତିରୀ ସଙ୍ଗମକୁ ନ କଳ୍ପିବ କଦାଚିତେ ।
ଆପଣା ଭାରିଯା ହେଲେ କିସ
ହେଲା ବିଚାରିବ ଅନ୍ତର୍ଗତେ ।୧୨।
ଯେତେହେଲେ ସେହି କୁମ୍ଭୀ ନର୍କକୁଣ୍ଡ
ବୁଡିଲେ ସକଳ ଗଲା ।
ଚାରିଯୁଗେ ଜୀବ ପଡି ପଡି ତହିଁ
ନିଜ ହେତୁ ପାଶୋରିଲା ।୧୩।
ମହିମାକୁ ଭଜି ଯୋନି ଶକତିକୁ ଛାଡି ନପାରଇ ଯେହୁ ।
ଗିଳି ପକାଉଛି ଆଚ୍ଛାଦି ହେଉଛି
ଚେତା ଥାଉଁ ମଳା ସେହୁ ।୧୪।''
(ସ୍ତୁତିଚିନ୍ତାମଣି ତେୟାନବେ ବୋଲି)

ଗୋଟିଏ ପଟରେ ସ୍ତ୍ରୀ ସଙ୍ଗ ସମ୍ପୂର୍ଣ୍ଣ ନିବାରଣ କରିବା ସକାଶେ ଭୀମଭୋଇ ମାନବ ସମାଜକୁ ପରାମର୍ଶ ଦେଲା ବେଳେ ସେଭଳି ସଂସର୍ଗ ମୋକ୍ଷ ପ୍ରାପ୍ତିର ବାଧକ ବୋଲି ଘୋଷଣା କରୁଛନ୍ତି । ଏ କଥାର ଅବତାରଣା ଅନେକ ଶାସ୍ତ୍ର ପୁରାଣରେ କରାଯାଇଛି । ଭଗବାନଙ୍କ ସାନ୍ନିଧ ଲାଭ କରିବା ସକାଶେ ଯୌନ ସମ୍ପର୍କକୁ ଏକ ହିଂସା ଓ କୁତ୍ସିତ କ୍ରିୟାର ଆଖ୍ୟା ଦେଇ ଜ୍ଞାନୀ ଲୋକ ସଂସାର ତ୍ୟାଗ କରି ସନ୍ନ୍ୟାସୀ ହୋଇଯାଆନ୍ତି । ପ୍ରଶ୍ନ ଉଠେ ତେବେ ସତରେ କ'ଣ ଗୃହସ୍ଥମାନଙ୍କ ପାଇଁ ଧର୍ମ ଆଚରଣ କରି ମୁକ୍ତିଲାଭ କରିବାର ବାଟ ନାହିଁ? ନିଜେ ଭୀମଭୋଇ ମହିମା ଧର୍ମ ଦୀକ୍ଷା ନେଇ ପୁଣି କିପରି ଗୃହସ୍ଥ ହେଲେ ? ତେବେ ତାଙ୍କ ପାଇଁ କ'ଣ ମୁକ୍ତିର ବାଟ ବନ୍ଦ ହୋଇଗଲା ? ନୁହେଁ ! ଗୃହସ୍ଥମାନଙ୍କ ମୁକ୍ତି ସକାଶେ ନିଜେ ଭୀମଭୋଇ ବାଟ ବତାଇ ଦେଇଛନ୍ତି । ଜଣେ ଅନୁସନ୍ଧିତ୍ସୁର ମନନେଇ ବିଶ୍ଳେଷଣ କଲେ ଜଣାପଡେ ଯେ କେତେ ଗଭୀର ତାଙ୍କର ଜ୍ଞାନ, ଆତ୍ମା ପରମାତ୍ମାର ସମ୍ପର୍କ ନେଇ । କେତେ ସାଧନା ଓ ସିଦ୍ଧିର ସେ ଥିଲେ ଆଧାର । ଏଭଳି ଜ୍ଞାନ ଗରିମା କେବଳ ତାଙ୍କ ଭଳି ଜଣେ ପରମ ଯୋଗୀପକ୍ଷେ ସମ୍ଭବ ।

ପତି ସେବାକଲେ ସତୀପଣ ପାଇ ଗତିକି ଲଭଇ ସେହି ।
ପିଣ୍ଡପ୍ରାଣ ଜାନୁ ଯଉବନ ଦେଇ ପତିକି ଭୋଗ୍ୟ କରାଇ ।୩।
(ସ୍ତୁତିଚିନ୍ତାମଣି ଚଉରାନବେ ବୋଲି)

ଭୀମଭୋଇଙ୍କ ପକ୍ଷେ ଗୃହସ୍ଥର ଧର୍ମପାଳନ ସକାଶେ ଯେଉଁ ଉପଲବ୍ଧି ତାହା ଅନନ୍ୟ । ସେହି ପରମ ଉପଲବ୍ଧିକୁ ବିଶ୍ଳେଷଣ କଲେ ଯେଉଁ ନିଷ୍କର୍ଷ ଉପନୀତ ହୁଏ, ତାହା ଏହିପରି । ଭୀମଭୋଇ ନିଜ ଜୀବନରେ ଏକନିଷ୍ଠ ସାଧନା କରି ଯେଉଁ ସିଦ୍ଧି ପାଇଛନ୍ତି, ସେହି ସିଦ୍ଧି ସମ୍ପର୍କରେ ଜଗତବାସୀଙ୍କୁ ଅମୂଲ୍ୟ ଜ୍ଞାନ ବିତରଣ କରିଯାଇଛନ୍ତି । ତାହାକୁ ସାଧାରଣ ଲୋକ ନିଜ ନିଜର ସାମାନ୍ୟ ସାଧାରଣ ବୁଦ୍ଧି, ଚର୍ମ ଚକ୍ଷୁରେ ଦେଖି ନ୍ୟୁନ ଭାବରେ ଲଘୁ ମନ୍ତବ୍ୟ ଦେଇଥାନ୍ତି । ମାତ୍ର ଅନ୍ତର୍ଦୃଷ୍ଟି ନେଇ ଦେଖିବାକୁ ଚେଷ୍ଟାକଲେ ମହାଯୋଗୀ ଭୀମଭୋଇଙ୍କ ଦିବ୍ୟଦୃଷ୍ଟିର ସନ୍ଧାନ ମିଳେ । ଗୃହ ଧର୍ମମାର୍ଗର ବାଟ ବତାଇବାକୁ ଯାଇ ଭୀମଭୋଇ ମାନବ ସମାଜକୁ ଯେଉଁ ଶିକ୍ଷା ଦେଇଛନ୍ତି, ତାହା ହେଉଛି ଆଧ୍ୟାତ୍ମିକ ସାଧନାର ଏକ ପ୍ରକୃଷ୍ଟ ମାର୍ଗ । ଯୌନରୁ ଜୀବନ ମୁକ୍ତିର ଯେଉଁ ବାଟ ଭୀମଭୋଇ ନିର୍ଦ୍ଦେଶ କରିଛନ୍ତି, ତାହା ବାସ୍ତବିକ ବିରଳ । ଏତେ ସାବଲୀଳ ଭାଷା ଓ ଭାବନେଇ ସେ ତାହାର ଯେଉଁ ସରଳ ବ୍ୟାଖ୍ୟା କରିଛନ୍ତି, ତାହା ଜଣେ ସାଧକକୁ ଚମତ୍କୃତ କରେ । ସେହି ବାଟଟି ହେଲା– ସାଧକ ଅବାଟରେ ଇନ୍ଦ୍ରିୟ ସୁଖ ପାଇଁ ଯେତେବେଳେ ଅଗ୍ରସର ହୁଏ, ସେତେବେଳେ ମଧ୍ୟ ସେ ନାମକୁ ନଛାଡି ତାହାକୁ ଜପୁଥିବା ଆବଶ୍ୟକ । ଭୀମଭୋଇଙ୍କ କହିବାନୁସାରେ ରତିସୁଖ ସମ୍ଭୋଗ ସମୟରେ ମଧ୍ୟ ଅଲେଖ ମହିମା ଗୁରୁ ପରଂବ୍ରହ୍ମର ନାମ ଜପୁଥିବ ।

''ଗୁରୁ ସୁମରି ରତିସୁଖ କରିବ ଭାରିଯାକୁ କୋଳେ ଘେନି ।
ସେତେବେଳରେ ବିରୁଦ୍ଧ ନକରିବ ଜପୁଥିବ ନାମଧ୍ୱନି ।୮।
(ସ୍ତୁତିଚିନ୍ତାମଣି ପଞ୍ଚାଅଶୀ ବୋଲି)

ତୈଳଧାରବତ୍ ନାମ ସ୍ମରଣ ହେବା ଉଚିତ୍ । ମୁହୂର୍ତ୍ତକ ପାଇଁ ମଧ୍ୟ ପ୍ରଭୁନାମ ସ୍ମରଣରୁ ସାଧକ ବିଚ୍ୟୁତ ହେବା ଉଚିତ୍ ନୁହେଁ । କେତେବେଳେ କାହାକୁ ମହାକାଳ ଗ୍ରାସକରି ମୃତ୍ୟୁମୁଖକୁ ଠେଲି ଦେବ କିଏ ଜାଣେ ? ଅନ୍ତ କାଳରେ ବିଭୁନାମ ସ୍ମରଣ ହେଲେ ମନୁଷ୍ୟ ମୋକ୍ଷ ଲାଭକରେ ବୋଲି

ବିଶ୍ୱାସ ଅଛି । ଅଜାମ୍ବିଳ ଭଳି ପାପୀ ପୁଅର ନାମ ଧରି ‘‘ରଖିରେ ନାରାୟଣ’’ କହି ଭବସାଗରୁ ପାରି ହୋଇଗଲା । ତେବେ ନିରନ୍ତର କିପରି ପ୍ରଭୁଙ୍କ ନାମ ଜପ ହେବ ସେ ସମ୍ପର୍କରେ ଆମର ପୂର୍ବସୂରୀମାନେ ଦିଶା ନିର୍ଦ୍ଦେଶ କରିଯାଇଛନ୍ତି । ଏପରିକି ଆମର ଶାରୀରିକ କ୍ରିୟାକଳାପ ସମୟରେ ଯେତେବେଳେ ନାମ ସ୍ମରଣ ବିସ୍ମରଣ ହେବାର ସମ୍ଭାବନା ଅଛି, ସେତେବେଳେ କିପରି ପ୍ରଭୁଙ୍କ ସ୍ମରଣ ହେବ ସେ କଥା ବତେଇ ଦେଇଛନ୍ତି । ପ୍ରଥମେ ଛିଙ୍କିଲା ସମୟରେ ପ୍ରତ୍ୟେକ ମଣିଷର ହୃଦୟନ୍ତ୍ର କ୍ରିୟା ବନ୍ଦ ହୋଇଯାଏ । ସେଥିପାଇଁ ଛିଙ୍କିଲା ସମୟରେ ହେ ରାମ୍, ହେ ଭଗବାନ୍ ଭଳି ପ୍ରଭୁଙ୍କ ନାମ ଉଚ୍ଚାରଣ କରିବା ପାଇଁ ପିଲାବେଳୁ ଆଇ ମା’ ଆମକୁ ଶିଖାଇ ଥା’ନ୍ତି, ଯାହା ଆମେ କରୁ । ଠିକ୍ ସେହିପରି ରତିସୁଖ ସମ୍ଭୋଗ ବେଳେ ବିନ୍ଦୁପାତ ବା ରଜବୀର୍ଯ୍ୟ ମିଳନ ସମୟରେ ମସ୍ତିଷ୍କ ଶୂନ୍ୟ ହୋଇଯାଏ । ତାହାକୁ ‘ସମାଧି’ ସହିତ ତୁଳନା କରି ମହାସୁଖ ବୋଲି ଆଖ୍ୟା ଦିଆଯାଇଛି । ସେତିକିବେଳେ ଭଗବାନଙ୍କୁ ଭୁଲିଯିବାର ସମ୍ଭାବନା ଅଛି । ତେଣୁ ଭୀମଭୋଇ ସେତେବେଳେ ମଧ ନାମଧ୍ୱନି ଜପ କରୁଥିବା ପାଇଁ ଭକ୍ତ ସାଧକକୁ ଅମୂଲ୍ୟ ପରାମର୍ଶ ଦେଇଛନ୍ତି । ସେଭଳି ନାମଜପ, ସାଧନା ବଳରେ ନିଶ୍ଚିତଭାବେ ସମ୍ଭବ ବୋଲି ଏ ଲେଖକର ଉପଲବ୍ଧି ହୋଇଛି । ଭୀମଭୋଇ ତାଙ୍କ ରଚନାବଳୀରେ କୌଣସି ଅବାନ୍ତର ବା ଅସମ୍ଭବ କଥାର ଅବତାରଣା ମୋଟେ କରି ନାହାନ୍ତି । ସାଧାରଣ ଲୋକ ଭୀମଭୋଇଙ୍କ କଥା ବୁଝି ପାରିବେ ନାହିଁ ମାତ୍ର ସାଧକମାନଙ୍କ ପାଇଁ ଭୀମଭୋଇ ଏକ ଖୋଲାପୃଷ୍ଠା ଯାହାକୁ ପଢି ସାଧକମାନେ କେବଳ ଜ୍ଞାନ ଆହରଣ କରିପାରିବେ ନାହିଁ ବରଂ ତାଙ୍କ ପ୍ରଦର୍ଶିତ ପଥ ଦେଇ ସାଧନା ମାର୍ଗରେ ସିଦ୍ଧିଲାଭ ମଧ କରିପାରିବେ ।

‘‘ବଡିମା କହିଲା ବୋଲିବେ ଜଗତେ ତେଣୁ କରି ମୋର ଭୟ
ମୁହିଁସିନା ଜାଣେ ମୋ ଜନ୍ମର କଥା ଅନାଦି ଗୁରୁଙ୍କ ପୁଅ ।୮।
ସଂସାର ମଧରେ କେମନ୍ତେ ଜାଣିବେ ନର ଅଙ୍ଗେ ଦେହ ବହି
ଆତଯାତ କଥା ଯୁଗର ବ୍ୟବସ୍ଥା ସମସ୍ତଙ୍କୁ ଜଣାନାହିଁ ।୯।
ହୃଦୟରେ ଭେଦ ସାରସ୍ୱତ ପଦ ଅନୁଭବେ ନାହିଁ ବୁଦ୍ଧି ।
ନରଦେହ ବହି ସର୍ବେ ଅଣଚେତା କାହୁଁ ଜାଣିବେ ସେ ସିଦ୍ଧି ।୧୦।
ରୂପ ରସ ଗନ୍ଧ ରଙ୍ଗେ ମାତି ସର୍ବେ ଭୁଲାଇ ନେଉଛି ମାୟା ।
ମୋହିନୀ ମଦେ ପଡିଛନ୍ତି ସମସ୍ତେ ପାଶୋରି ଜୀବନ କାୟା ।୧୧।
ଜଗତ ଭିତରେ ସଂସାରସାଗରେ ବଖାଣିଲି କବିକୃତ ।
ଯେତେ ବୁଝାଇଲି ନ ବୁଝିଲେ କେହି କୋପ କରି ଅପ୍ରମିତ ।୧୨।
କୋଳରେ ବସାଇ ମନରେ ମିଶାଇ କହୁ କହୁ କର୍ଣ୍ଣପାଶେ ।
ନଦୀଜଳ ପ୍ରାୟ ବଢି ଯାଉଅଛି ଜ୍ଞାନ ନ ଭେଦିଲା ଲେଶେ ।୧୩।
ମୁହିଁ କହୁଥାଇ ମନରେ ବିଚାରି ମୁକତି ପଦକୁ ଭାଳି ।
ଜଣ ଜଣ କରି ବୁଝାଇ କହଇ ସର୍ବେ ତରିଯିବୁ ବୋଲି ।୧୪।
ଦୁର୍ଲ୍ଲଭ ଜନମ ଦେହ ବହିଛନ୍ତି କରି ନୁହେଁ ବଡସାନ ।
କଥାର ପ୍ରସଙ୍ଗେ କହି ନେଉଥାଉ ଶୁଣ ଶୁଣ ସର୍ବଜନ ।୧୫।
ଧରମ ପଥକୁ ଆଶ୍ରିତ କରାଇ ବତାଇ ଦିଅଇ ଜ୍ଞାନ ।
ଆତ୍ମା ଭକତିକି ଜୀବ ମୁକତିକି ପ୍ରତ୍ୟକ୍ଷ କରାଇ ଚିହ୍ନ ।୧୬।
କପଟ ନକରି ଧୂଳି ମାଟିପରି ବାଣ୍ଟି ଦେଉଥାଇ ଭାଗ ।
ପୁତ୍ର ପରାଏ ଆହ୍ଲାଦ କରାଇ କହୁ ଥାଇ ଜ୍ଞାନ ଯୋଗ ।୧୭।
କିଅବା ସ୍ତିରୀ ସେ କି ଅବା ପୁରୁଷ ବାଳ ବୃଦ୍ଧ ଯୁବା ଯେତେ ।
ଭିନ୍ନ ଭିନ୍ନ କରି ଚିହ୍ନାଇ ଦିଅଇ ସଂଶୟ ନରଖି ଚିତ୍ତେ ।୧୮।
(ସ୍ତୁତିଚିନ୍ତାମଣି, ଚତୁଃତ୍ରିଂଶ ବୋଲି)

ବ୍ଲକ୍ ଛକ, ସୁବର୍ଣ୍ଣପୁର



# ଓଡ଼ିଶାରେ ରଜ ଓ ରଜଦୋଳି ଗୀତ

ବିପିନ ବିହାରୀ ମହାନ୍ତି

ରଜ ଓଡ଼ିଆ ହିନ୍ଦୁମାନଙ୍କର ଜାତୀୟ ପର୍ବ । ଏହି ପର୍ବଟି ମିଥୁନ ସଂକ୍ରାନ୍ତିକୁ ଧରି ପାଳିତ ହୁଏ । ବୃଷ ଶେଷଦିନକୁ ପହଲି ରଜ, ମିଥୁନ ସଂକ୍ରାନ୍ତିର ପ୍ରଥମ ଦିନକୁ ମଧ୍ୟ ରଜ ଏବଂ ଦ୍ୱିତୀୟ ଦିନକୁ ଭୂମି ଦହନ ରଜ କୁହନ୍ତି ।

ଏହି ପର୍ବଟି କୃଷି ସମ୍ପର୍କିତ ଅଟେ । ଶାସ୍ତ୍ରମତେ ମା' ଧରିତ୍ରୀ ଏହି ତିନିଦିନ ଧରି ଋତୁମତୀ ବା ରଜସ୍ୱଳା ହୁଅନ୍ତି । ଏଣୁ ଏହି ଦିନଗୁଡ଼ିକରେ ଭୂମି ପ୍ରତି ସମସ୍ତ କର୍ଷଣ କାର୍ଯ୍ୟ ବନ୍ଦ ରୁହେ ଏବଂ ଧରିତ୍ରୀ ମାତାର ପୂଜାର୍ଚ୍ଚନା କରାଯାଏ ।

ଶ୍ରୀମନ୍ଦିରରୁ ଆରମ୍ଭ କରି ପୁରପଲ୍ଲୀର ସମସ୍ତ ଦେବ ମନ୍ଦିରରେ ସ୍ୱତନ୍ତ୍ର ଭାବରେ ପୂଜାର୍ଚ୍ଚନା କରାଯାଏ । ଜଗନ୍ନାଥକୁ କେନ୍ଦ୍ର କରି ଓଡ଼ିଆ ଜାତିର ସବୁକିଛି । ଏଣୁ ଏହା ଜନମାନସକୁ ପ୍ରଭାବିତ କରିଥାଏ । ଏହା ଏକ ଖୁସିବାସୀ, ମଉଜ ମଜଲିସ୍ , ପିଠାପଣା, ନୂଆ ପୋଷାକ ପରିଧାନ, ଜାନିଯାତ୍ରା, ଭ୍ରମଣ, ନାଚ, ଗୀତ, ସଂଗୀତ, ସୁଆଙ୍ଗ, ନାଟକ, ସଭା ଏବଂ କବିତା ପାଠୋତ୍ସବ ଇତ୍ୟାଦିର ଦିନ । ଏଥିରେ ନାନା ଖେଳ ଯଥା ପଶା, ତାସ୍, ଜୁଆ, କବାଡ଼ି ଇତ୍ୟାଦି ଅନୁଷ୍ଠିତ ହୁଏ । ଏହି ପର୍ବରେ ରଜ ପାନର ମଧ୍ୟ ବିଶେଷତା ରହିଛି । ପାରମ୍ପରିକତାରେ ଘର ଘର ବୁଲି ଚର୍ଚ୍ଚିତ ହେବା ଅଥବା ନିଜଘରେ ବନ୍ଧୁମାନଙ୍କୁ ଚର୍ଚ୍ଚା କରିବା ଖିଆପିଆ, ଦିଆନିଆ ଏବଂ ଭାବର ଆଦାନ ପ୍ରଦାନରେ ଅଂଶୀଦାର ହେବା ବନ୍ଧୁମିଳନର ଏକ ଭିନ୍ନ ପର୍ବ ଏ ରଜ । ରଜରେ ନାନାବିଧ ସଜ । ରଜ ଏକ ପ୍ରୀତିପାର୍ବଣର ପର୍ବ । ବିଶେଷକରି ନାରୀମାନଙ୍କର ଏକ ମହାନ୍ ପର୍ବ । ଏହି ପର୍ବରେ ସେମାନଙ୍କୁ ଅନେକ କିଛି ବାରଣ କରାଯାଏ । ଅଥଚ ଆନନ୍ଦ ଉଲ୍ଲାସରେ ଏହାକୁ ପାଳନ କରାଯିବା ନିମନ୍ତେ ସେମାନଙ୍କୁ



ବ୍ୟାପକ ସ୍ୱାଧୀନତା ଦିଆଯାଇଛି। ସବୁଠାରୁ ବଡ଼କଥା ହେଉଛି ନାରୀମାନଙ୍କର ରଜଦୋଳି ଏବଂ ତହିଁକୁ ବୟସର ମନମତାଣିଆ ଗୀତ।

ସୁସଜ୍ଜିତ ରଜଦୋଳି ଏବଂ ତହିଁରେ କୁମାରୀ କନ୍ୟା ଓ ଭୁଆସୁଣୀମାନଙ୍କ ମନକୁ ନେଇ ଯେଉଁ ଗୀତ, ବାସ୍ତବିକ୍ ତାହା ବାଙ୍ମୁଗ୍ଧତାର ପରିଚାୟକ।

ବନସ୍ତେ ଡାକିଲା ଗଜ, ବରଷକେ ଥରେ
ଆସିଛି ରଜ ଲୋ, ଘେନି ନୂଆ ସଜବାଜ॥

ରାଣିରୁ ଛାଡ଼ିଲା ଚୋପା, ଗୋଡ଼ରେ ନାଇଛୁ ସରୁ
ଅଳତା ଲୋ, ମଥାରେ ସିନ୍ଦୂର ଟୋପା॥

ଉଡ଼ିଲା ଶୁଆ ନାହାକା, ଦୋଳିଟା କାହିଁକି ଲାଗୁଛି
ଏକା ଲୋ, କାହା ବିନା ଏକା ଏକା॥

ପାଚିଲା ଭଇଁଚ କୋଳି, ବେକରେ ନାଇଚି ଗଜରା
ମାଳି ଲୋ, ଝୁଲାଅ ରଜରେ ଦୋଳି॥

ପଣସ ପାଚିଲା ବନେ, ବନ ପୋଡ଼ିଗଲେ ଦୁନିଆ
ଜାଣେ ଲୋ, ମନ କଥା କିଏ ଜାଣେ॥

ଶଂଖ ମଲମଲ ଗିନା, ଦରଦ ଜାଣେଲୋ ଦରଦୀ
ସିନା ଲୋ, ବଣିଆ ଚିହ୍ନେଟି ସୁନା॥

ନିମ୍ବର ବୁକେ ଚନ୍ଦନ, ଦେବତା ଗଢ଼ିଲା ନାରୀ
ଜୀବନ ଲୋ, ଦେଲା ତହିଁ ଯଉବନ॥

ଢେମଣା ଛାଡ଼ିଲା କାତି, ପୁରୁଷ ସିନାଲୋ ଭ୍ରମର
ଜାତି ଲୋ, ନୂଆ ଖୋଜୁଥାନ୍ତି ନିତି॥

ଚାନ୍ଦରେ କଳଙ୍କ ଚିହ୍ନ, ନବ ଯଉବନି ଲୋ କିଆଁ ଗୁମାନ
ଆସିଲେଣି ଜୀବ ଧନ॥

ପୋଖରୀ ତୁଠ ପଥର, ତୋତେ ଦେଖିଥିଲି ବାଲି
ବନ୍ଧରରେ, ଆଖି ଥିଲା ଏଣେ ତୋର॥

ସାହାଡ଼ା ଗଛର ଛାଇ, ସେଦିନ କଥାକି ତୋ ମନେ
ନାହିଁ ଲୋ, ଏତେ ମାନ କାହିଁପାଇଁ॥

ଖୋସାରେ ଖୋସିଲି ଫୁଲ, କେତେ ଦେଖାଉଛୁ ନୁଖୁରା
ଗେଲରେ..., ଭାଙ୍ଗି ଦେବି ତୋର ଗାଲ॥

ନଈରେ ଶୁଖିଲା ବାଲି, କେତେ ଫୁଲି ହେଉ ପୁଚିକି
ଗାଲିଲୋ...., ଦେଖାଉଛୁ କେତେ ବେଲି॥

ବାଜିଲା ତେଲିଙ୍ଗି ବାଜା, ରସିକ ଯେ ଜାଣେ, ସ୍ନେହର
ମଜା..., ସେ ସିନା ମୋ ମନ ରଜା।

ଯୌବନରେ ଉଙ୍କି ମାରୁଥିବା ମିଳନୀର ସ୍ୱପ୍ନର ବିଭୋର ଯୁବକ ଓ ଯୁବତୀମାନଙ୍କର ଭାଷା ହିଁ ରଜ ଗୀତି। କେଉଁଠି କିଏ କାହା ପ୍ରେମ ପାଇଁ ପାଗଳ ତ', କିଏ କାହାକୁ କେଉଁମତେ କହୁଛି ତ', ସିଏ ତାକୁ କେମିତି ବି ବୁଝୁଛି ? ପରସ୍ପରକୁ ନିଜର କରିବାରେ କିଏ କେମିତି ବ୍ୟକ୍ତ କରୁଛି ଅନ୍ୟ ପାଖରେ ନିଜକୁ। ବାସ୍ତବତାର କି ଚମତ୍କାରିତା ଇଏ ସତେ।

ଦୋଳିର ପ୍ରକୃତି ବିଷୟରେ ରଜଗୀତିରେ ସୁନ୍ଦର ବର୍ଣ୍ଣନାମାନ ଦିଆଯାଇଛି।

ଲୁଚିଗଲା ମେଘେ ଚାନ୍ଦ, ଦୋଳି କଟ କଟ କରେ
ଶବଦ ଲୋ, ବହନ୍ତେ ପବନ ମନ୍ଦ॥
ଦୋଳି ହୁଏ ରଟ ରଟ, ମୋ ଭାଇ ମୁଣ୍ଡରେ ସୁନା
ମୁକୁଟ ଲୋ, ଦିଶୁଥାଏ ଝଟଝଟ॥
ପରବତେ ଜଳେ ନିଆଁ, ପହଞ୍ଚାଇ ଦୋଳି, ତେଣେ ନ
ଚାହାଁ ଲୋ, ପୁଣି ହେବ ବାଆଁ ଡାଁ॥

ପ୍ରେମ ପାଇଁ ପ୍ରତୀକ୍ଷା ଏବଂ ଏହା ପୁଣି ଯନ୍ତ୍ରଣା ଦାୟକ। ବଡ଼ ସୁନ୍ଦର ଭାବରେ ଚିତ୍ରିତ କରେ ଏ ଦୋଳି ଗୀତ।

କରମଙ୍ଗା କଲି ରାଇ, କ'ଣ ନକଲେ କଳା
କହ୍ନାଇ ଲୋ, କଣ୍ଟ ଦେଇ ଗଲା କାହିଁ।
ସାଉଁଟିଲି ବିଲ ଘଷି, କିମ୍ପାଇଁ ରାଧିକା ବସିଲା
ରଷି ଲୋ, ଫୁଲ ଶେଯ ହେଲା ବାସି॥
କଟ କଟ ହୁଏ ଦୋଳି, ଭାଉଜଙ୍କ ମନ ଯାଉଛି ଜଳି
ଗୋ, ଭାଇ ବିଦେଶୁ ନଇଁଲେ ବୋଲି॥

ସେହିପରି କିଛି ପ୍ରେମର ଭାଷା ଏବଂ ତା'ପରିଣତିରେ ଦୋଳି ଗୀତ କୁହେ –

ଉତୁରି ପଡ଼ିଲା ଦୁଗ୍ଧ, ଉଙ୍କି ମାରି ମାରି ଅନାଉ
ଥାଏଲୋ..., ନନ୍ଦର ଉଦିଆ ଚାନ୍ଦ॥

ଦୋଳି ଗୀତିରେ ଭରିରହିଛି କିଛି ସତର୍କତା, କିଛି ସତ୍ୟତା, କିଛି ଅନୁଭୂତି, ଯେମିତି –

ଗରଜେ କଳା ବଉଦ, ମୋତେ ତ ବରଷ ହେଲା
ଚଉଦ ଲୋ, ଗଲାଣି ପିଲା ସୁଆଦ ॥
ବଇଁଶୀ ବାଜିଲା କୁଞ୍ଜେ, ବଡ଼ କଥା ବଡ଼ ଘରକୁ
ସାଜେ ଲୋ, ଛୋଟ କଲେ ଛାଟ ବାଜେ ॥
ଲାଞ୍ଜ ଟେକିଗଲା ବାଘ, ନଇଁ ଚାଲୁଥିବ ବଡ଼ଙ୍କ
ଆଗ ଲୋ, ଲାଗିବ ନାହିଁଟି ଦାଗ ॥
ଛତୁ ଫୁଟେ ବରଷାରେ, ଛତରଟା କେତେ ଛଇ
ଦେଖାଉରେ, ଅଛି କି ତୋ ଭରଷାରେ ।
କରଡ଼ି ଖସିଲା ଆମ୍ବ, ପର କାହୁଁ ଘର ପରାଣୀ
ହେବରେ, ମନ ଜାଣି ଖଞ୍ଜି ଦେବ ?
ବିରାଡ଼ି ଛିଙ୍କିଲା ବଣେ, ଆଗରେ ଯାଉଛି ନାଗର
ଜଣେ ଲୋ, ମୁଣ୍ଡି ଝାଡୁ ଖଲି ପଣେ ॥
ଅଦିନେ ପଣସ ସଠା, ବଚନରେ ଯା'ର ନଥାଏ
ମିଠା ଲୋ, ସେ'ଟା ବାଡ଼ ପକା କଣ୍ଟା ॥
ପାହାନ୍ତି ରାବିଲେ ପେଚା, ଯିଏ ହୋଇଥିବ ସିଂହର
ବଚା ଲୋ, ନଦେବ ସେ ପଛ ଘୁଞ୍ଚା ॥

ପ୍ରୀତି ଏକ ସମ୍ପତ୍ତି । କେଉଁଠି ଏହାକୁ ପାଇବାରେ ସୃଷ୍ଟି କରୁଛି ଭୀତି ତ, କେଉଁଠି ଶୁଣାଏ ମନଛୁଆଁ ଗୁଡାଏ ପଂକ୍ତି ।

ମଇଁଷି ଶିଙ୍ଗରେ ଖସା, ମଉସା ପୁଅଟା ଏଡ଼େ
ସାହାସା ଲୋ, ମୋତେ କଲା ଲୋକହସା ॥

ଜାରା ମାରିଦେଲା ବାଣ, ଯାହାଠାରେ ଯାହାର ମିଶିଛି
ମନ ଲୋ, ସେହି ଜାଣେ ତା'ର ଗୁଣ ॥
ଥିରି ଥିରି ଚାଲେ ହାତୀ, ଥୟ ନହେଉଛି କିମ୍ପାଏ
ଛାତି ଲୋ, ଥକା ଦୋଳି ହେଲା ରାତି ॥
କାଟି ଗଲି କଳା ଦୁବ, ଝିଅ ଜନମରେ ଏତିକି
ଲାଭ ଲୋ, ବନ୍ଧୁ ଘର ଅରଜିବ ।
କାଳି ଗାଈ ଦୁଗ୍ଧ କ୍ଷୀରୀ, ନୂଆ ପୀରତିରେ ମଉଜ
ଭାରି ଗୋ, ପୁରୁଣାଟି ନିମ୍ବ ପରି ॥
ଆମ୍ବ ପତ୍ର ଗହଳିଆ, ପ୍ରୀତି ପଙ୍କେ ତୁହି ହେବୁ
ଗୋଳିଆ ଲୋ, ତୋଫା ହେବଟି ଧୂଳିଆ ॥

ଦୋଳି ଖେଳ ଓ ଗୀତର ମଜା ଉଠାଇବା ପାଇଁ ରଜର ଏକ ଅନୁକୂଳ ପାଗ ଦରକାର । ସାଧାରଣତଃ ଏହା ମେଘୁଆ ପାଗ ହୋଇଥିବ । ନୋହିଲେ ରଜ ମଜା ବିଗିଡ଼ି ଯିବ । ଏଣୁ କୁହାଯାଇଛି –

ସଜନୀଲୋ, ମଉସୁମୀ ଗଲା ବଦଳି, ସାବଧାନ ଏବେ
ନହେଲେ ବାଦଲ, ରଜ ସଜ ଦେବ ଉଜାଡ଼ି ॥

ଓଡ଼ିଶାର ଦୋଳିଗୀତିଗୁଡ଼ିକର ରଚୟିତା ଅନେକ ଅଛନ୍ତି । ସେମାନଙ୍କ ମଧ୍ୟରେ ଯଥାକ୍ରମେ ସ୍ୱର୍ଗତଃ ବୈଷ୍ଣବ ପାଣି, ବ୍ରଜବାସୀ ଦାସ, ବୈଷ୍ଣବ ଚରଣ ଦାସ ଏବଂ ଲାଲା ଗୋପୀନାଥ ଚାନ୍ଦ ଇତ୍ୟାଦି ପ୍ରଧାନ । ଯିଏ ଯେମିତି ଲେଖିଲେ ହେଁ ସବୁଗୁଡ଼ିକ ଗୋଟିଏ ଛନ୍ଦରେ ଲେଖିଛନ୍ତି । ରଜଦୋଳି ଗୀତଗୁଡ଼ିକ ବହୁ ସାରସ୍ୱତ ତତ୍ତ୍ୱ ବହନ କରନ୍ତି । କେବଳ ବୟସ କଥା କୁହନ୍ତୁ ନାହିଁ ଜୀବନକୁ ବିତାଇବାର ଦିଗ ସହ କିଛି ସାବଧାନତା ମଧ୍ୟ ଶୁଣାଇଥାନ୍ତି । ଏସବୁ ଗବେଷଣା ସାପେକ୍ଷ ।

ସଂପ୍ରତି ରଜ ପରମ୍ପରାରେ ସେମିତି କିଛି ଆଉ ଆଗଭଳି ମହକ କିମ୍ବା ଚମକ ନାହିଁ । ଆଧୁନିକ ମନୋରଞ୍ଜନର ସାମଗ୍ରୀ ଏହାଠୁ ଆମକୁ ଦୂରେଇବାରେ ଲାଗିଛି । ଆମେ କ'ଣ ସତରେ ଏଡ଼େ ସୁନ୍ଦର ପରମ୍ପରାକୁ ଦୂରେଇ ଯିବାକୁ ଦେବା !

ବିକାଶନଗର, ଜଟଣୀ
ଖୋର୍ଦ୍ଧା



# ମଇ ଦିବସର ଇତିହାସ

ସୌରୀବଂଧୁ କର

ବିଶ୍ୱ ଶ୍ରମିକ ଦିବସର ଇତିହାସ ହେଉଛି ଆମେରିକା ଶ୍ରମିକ ଶ୍ରେଣୀର ସଂଗ୍ରାମର ଇତିହାସ । ୧୮୪୮ ମସିହାରେ ପ୍ରକାଶିତ ମାର୍କସ୍‌ଙ୍କର କମ୍ୟୁନିଷ୍ଟ ମାନିଫେଷ୍ଟୋର ସେହି ବୈପ୍ଳବିକ ଆହ୍ୱାନ, ବିଶ୍ୱର ସମସ୍ତ ଶ୍ରମିକ ଶ୍ରେଣୀ ଏକ ହୁଅ, ତୁମର କିଛି ହରାଇବାକୁ ନାହିଁ, କେବଳ ତୁମର ଶୃଙ୍ଖଳ– ସମଗ୍ର ଆମେରିକା ସାରା ବ୍ୟାପିଗଲା । ୮ଘଣ୍ଟା କାର୍ଯ୍ୟ ଦିବସ ପାଇଁ ଶ୍ରମିକମାନେ ସଭା ଓ ଶୋଭାଯାତ୍ରା କଲେ । ସେମାନେ ନ୍ୟୁୟର୍କଠାରୁ ସାନ୍‌ଫ୍ରାନ୍‌ସିସ୍‌କୋ ପର୍ଯ୍ୟନ୍ତ ଗାଇ ଗାଇ ଶୋଭାଯାତ୍ରାରେ ଆଗେଇ ଚାଲିଲେ ।

ଆମେ କଠିନ ଶ୍ରମ କରି ତିଆରି କରୁଛୁ
ଆମେ କ୍ଳାନ୍ତ, ପରିଶ୍ରମର ମୂଲ ନ ପାଇ
ବଞ୍ଚିବା ପାଇଁ ସାମାନ୍ୟ କିଛି ମାତ୍ର, ଆଉ ନୁହେଁ ।
ଘଣ୍ଟାଟିଏ ଚିନ୍ତାକର ।
ଆମେ ସୂର୍ଯ୍ୟୋଦୟକୁ ଅନୁଭବ କରିବାକୁ ଚାହୁଁ
ଆମେ ଚାହୁଁ ଫୁଲକୁ ଆଘ୍ରାଣ କରିବାକୁ ।
ଆମେ ନିଶ୍ଚିତ, ଈଶ୍ୱର ମଧ୍ୟ ଏକଥା ଚାହାଁନ୍ତି
ଏବଂ ଆମେ ଆଠ ଘଣ୍ଟାର କାମ ଚାହୁଁ ।
ଆମେ ଆହ୍ୱାନ କରୁଛୁ ଆମର ସୈନ୍ୟ ଦଳକୁ
ପୋତ ପ୍ରାଙ୍ଗଣରୁ, ଦୋକାନରୁ, କାରଖାନାରୁ
କାମ ପାଇଁ ଆଠ ଘଣ୍ଟା, ଆଠଘଣ୍ଟା ବିଶ୍ରାମ ପାଇଁ
ଏବଂ ଆମ ଇଚ୍ଛାରେ ଆଉ ଆଠ ଘଣ୍ଟା ।

୨୫ ଏପ୍ରିଲ ୧୮୮୬ ମସିହା ନ୍ୟୁୟର୍କ ଟାଇମ୍‌ସ ଏହି ଆନ୍ଦୋଳନକୁ 'ଅଣ–ଆମେରିକୀୟ' ଭାବେ ବର୍ଣ୍ଣନା କଲା ଏବଂ ସେଥିରେ ଯୋଗ କଲା ଯେ ବିଦେଶୀମାନେ ଶ୍ରମିକ ଅଶାନ୍ତି ସୃଷ୍ଟି କରୁଛନ୍ତି । ଆମେରିକାର ପ୍ରାୟ ସମସ୍ତ ଖବରକାଗଜ ଏହି ଆନ୍ଦୋଳନକୁ କମ୍ୟୁନିଷ୍ଟ ଆନ୍ଦୋଳନ ଭାବେ ଉଲ୍ଲେଖ କଲା । ଏଥିରେ ମଧ୍ୟ ଘୋଷଣା କରାଗଲା ଯେ ଏହା ଆମେରିକାର ଶ୍ରମିକମାନଙ୍କ ପାଇଁ ନିମ୍ନତମ ମଜୁରି, ଦାରିଦ୍ର୍ୟ ଓ ସାମାଜିକ ଦୁରବସ୍ଥା ସୃଷ୍ଟି କରିବ । ଖବରକାଗଜମାନଙ୍କର ଏହି ସତର୍କବାଣୀ ଓ ଚେତାବନୀ ସତ୍ତ୍ୱେ ସେମାନେ ଦବି ଗଲେ ନାହିଁ । ସେମାନେ ଆଠଘଣ୍ଟା କାର୍ଯ୍ୟ ନିର୍ଘଣ୍ଟ କରିଥିବା କମ୍ପାନୀ ପ୍ରସ୍ତୁତ 'ଆଠ ଘଣ୍ଟା ଯୋତା' ଓ 'ଆଠ ଘଣ୍ଟା ତମାଖୁ' ଟାଣି ରାସ୍ତାରେ ଗୀତ ବୋଲି ଚାଲିଲେ । ଶ୍ରମିକମାନଙ୍କର ସଂଖ୍ୟା ୧ ଲକ୍ଷରୁ ୬ ଲକ୍ଷରେ ପହଞ୍ଚିଲା । ଶ୍ରମିକମାନଙ୍କର ସ୍ଲୋଗାନ୍ ହେଲା, ଜଣକ ପ୍ରତି ଆଘାତ, ସମସ୍ତଙ୍କ ପାଇଁ ଉଦ୍‌ବେଗ । ଶ୍ରମିକମାନଙ୍କର ସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେମାନେ ମଇ ୧ ତାରିଖକୁ ଧର୍ମଘଟ କରିବା ପାଇଁ ସ୍ଥିର କଲେ । ୬୦ ହଜାର ନିଗ୍ରୋ ଏହି ଶ୍ରମିକମାନଙ୍କ ସହିତ ଯୋଗ ଦେଲେ । ନ୍ୟୁୟର୍କରେ ଥିବା ନିଗ୍ରୋ ନେତା ଫ୍ରାଙ୍କ୍ ଫେରେଲ ଥିଲେ ଜାତୀୟ ଅଧିକାରୀ । ବିଦେଶରେ ଜନ୍ମିତ ଓ ଅଣକୁଶଳୀ ଶ୍ରମିକମାନେ ହଜାର ହଜାର ସଂଖ୍ୟାରେ ଏହି ସଂଗଠନରେ ଯୋଗଦେଲେ । ସେମାନେ ଉତ୍ପାଦନକାରୀ ସମବାୟ ଶିକ୍ଷା ପ୍ରତି ଆକୃଷ୍ଟ ହେଲେ ନାହିଁ । ସେମାନଙ୍କର ଏକମାତ୍ର ଲକ୍ଷ୍ୟ ହେଲା ମଜୁରି ବୃଦ୍ଧି ଏବଂ ଟ୍ରେଡ୍ ୟୁନିୟନ୍ ସୁରକ୍ଷା । ଲିଓନୋରା ବାରିଙ୍କ ନେତୃତ୍ୱରେ ମହିଳା ଶ୍ରମିକମାନେ ଅଧିକ ସଂଖ୍ୟାରେ ସକ୍ରିୟ ହେଲେ ।

ସେମାନେ ଅନେକ । ଏହାର ନେତୃତ୍ୱ ନେଉଥିବା ପାଉଡ଼ରଲେ ଚାହୁଁଥିଲେ ଶ୍ରମିକ ଶାନ୍ତି କିନ୍ତୁ ଖବରକାଗଜରେ

ତାଙ୍କୁ ଚିତ୍ରିତ କରାଗଲା ନୀତିହୀନ ବିଶୃଙ୍ଖଳାକାରୀ ଭାବେ ଯାହାଙ୍କର ଉଦ୍ଦେଶ୍ୟ ଶକ୍ତି ଓ ହିଂସା ବଳରେ ସରକାରକୁ ଗାଦିଚ୍ୟୁତ କରିବା। ଶ୍ରମିକମାନଙ୍କର ସଂଗ୍ରାମର ଜୁଆରକୁ ପ୍ରତିରୋଧ କରିବାର ଶକ୍ତି ତାଙ୍କର ନ ଥିଲା କାରଣ ସେହି ଜୁଆରରେ ସେ ମଧ୍ୟ ଭାସିଗଲେ ଏବଂ ଏଥିପାଇଁ ଅନୁତପ୍ତ ହେଲେ ମଧ୍ୟ। ହକିଂ ଉପତ୍ୟକାରେ ମାଲିକମାନଙ୍କର ହିଂସ୍ରକ ଆଚରଣରେ ବ୍ୟତିବ୍ୟସ୍ତ ହୋଇ ସେ କହିଲେ, ମୁଁ ଏତେ ବିବ୍ରତ ଯେ ପ୍ରତ୍ୟେକ ଗୃହକୁ ବନ୍ଧୁକ, ଗୁଳି ଯୋଗାଇ ଦେବାକୁ ହେବ ଯେତେବେଳେ ଆମେ ଧର୍ମଘଟରେ ଯିବୁ। ତୁମେ ଯଦି ଧର୍ମଘଟ କରିବ, ତେବେ ସୈନ୍ୟବାହିନୀକୁ ଡକାଯାଇ ତୁମର ଧର୍ମଘଟକୁ ଧୂଳିସାତ କରିଦିଆଯିବ ଏବଂ ତୁମେ ଖାଲି ହାତରେ ଏହାର ପ୍ରତିରୋଧ କରିପାରିବ ନାହିଁ। ଏପରି ବକ୍ତବ୍ୟରେ ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ। ସେ ତତ୍‌କ୍ଷଣାତ୍ ସେହି ବକ୍ତବ୍ୟ ଦେଇନାହାନ୍ତି ବୋଲି ଅସ୍ୱୀକାର କଲେ ମାତ୍ର ଯାହା କ୍ଷତି ହେବାର କଥା ହୋଇ ଯାଇଥିଲା ।

ସେହି ସମୟରେ ଆମେରିକାରେ ଆମେରିକାନ୍ ଫେଡ଼େରେସନ୍ ଅଫ୍ ଲେବର ନାମରେ ଅନ୍ୟ ଗୋଟିଏ ଶ୍ରମିକ ସଂଗଠନ ଗଢ଼ି ଉଠିଲା ଏବଂ ଏହା କୁଶଳୀ ଶ୍ରମିକମାନଙ୍କର କେନ୍ଦ୍ରସ୍ଥଳୀ ହେଲା। ଏହା ଜାତୀୟ ସ୍ତରରେ ଶକ୍ତିଶାଳୀ ଶ୍ରମିକ ସଂଗଠନ ଗଠନ କରି ଆର୍ଥିକ ଭାବରେ ସଶକ୍ତ ହେବା ସହିତ ଧର୍ମଘଟକୁ ପରିଚାଳିତ କରିବା ଏବଂ ଆବଶ୍ୟକ ହେଲେ ମଜୁରି ବୃଦ୍ଧି, କାର୍ଯ୍ୟ କରିବାର ସମୟ ହ୍ରାସ ଓ କାର୍ଯ୍ୟ କରିବା ଅବସ୍ଥାରେ ଉନ୍ନତି ପାଇଁ ଚେଷ୍ଟା କଲା। ୧୮୮୬ ମସିହାରେ ଏହି ଆମେରିକାନ୍ ଫେଡ଼େରେସନ୍ ଅଫ୍ ଲେବର ଗଠନ ହେଲା।

ଶ୍ରେଣୀ ସଂଘର୍ଷ ଓ ଧର୍ମଘଟ ଶ୍ରମିକର ସବୁଠାରୁ ଶକ୍ତିଶାଳୀ ଅସ୍ତ୍ର ଭାବରେ ଗ୍ରହଣ କରି ଏହି ନୂତନ ଲଢ଼ୁଆ ସଂଗଠନ ଯଦିଓ ତା'ର ଶୈଶବରେ ଥିଲା । ଜାତୀୟ ସ୍ତରରେ ଶ୍ରମିକମାନଙ୍କୁ କୌଣସି ଗୋଟିଏ ଦାବିନେଇ ଏକାଠି କରିବାକୁ ସ୍ଥିର କଲା। ଆଠଘଣ୍ଟା କାର୍ଯ୍ୟ ସମୟ ଏଥିପାଇଁ ସଠିକ୍ ବୋଲି ସେହି ସଂଗଠନ ସ୍ଥିର କଲା। ପାଉଡ଼ରଲେ ଏହି ୮ଘଣ୍ଟା କାର୍ଯ୍ୟ ସମୟର ମଇ ପହିଲା ଧର୍ମଘଟକୁ ଭଣ୍ଡୁର କରିବା ପାଇଁ ସବୁପ୍ରକାର ଚେଷ୍ଟା କଲେ ମାତ୍ର ସେତେବେଳକୁ ଆମେରିକାର ଶ୍ରମିକମାନେ ଏହା ସଂଘଟିତ କରିବାକୁ ବଦ୍ଧପରିକର ହୋଇଥିଲେ। ସଭା, ଆଲୋଚନାଚକ୍ର, ପ୍ରସ୍ତାବ, ସମାବେଶ ଇତ୍ୟାଦି ମଇ ୧ ତାରିଖ ପୂର୍ବରୁ ଅନୁଷ୍ଠିତ ହେବାରେ ଲାଗିଥିଲା। ଖବରକାଗଜରେ ପ୍ରକାଶ ପାଇଲା 'ଆଠଘଣ୍ଟାର ପାଗଳାମି'। ମଶାଲ ଶୋଭାଯାତ୍ରା କରି ଶ୍ରମିକମାନେ ଗାଇ ଗାଇ ଚାଲିଲେ–

ଖଟିଖିଆ ନିୟୁତ ନିୟୁତ ବର୍ତ୍ତମାନ ଜାଗିଲେଣି
ଦେଖ ସେମାନେ ଶୋଭାଯାତ୍ରାରେ ଯାଉଛନ୍ତି
ସ୍ୱେଚ୍ଛାଚାରୀମାନେ ଭୟରେ ସନ୍ତ୍ରସ୍ତ
କାଳେ ଚାଲିଯିବ ସେମାନଙ୍କ କ୍ଷମତା।
ଦୁର୍ଗକୁ ଭାଙ୍ଗି ପକାଅ, ହେ ଶ୍ରମିକ ଦଳ
ତୁମ ପାଇଁ ଏହି ସଂଗ୍ରାମ
ସ୍ୱେଚ୍ଛାଚାରୀ ଆଇନ୍ ମୁର୍ଦ୍ଦାବାଦ୍ ॥

ମାଲିକମାନଙ୍କର ଗୁଣ୍ଡାବାହିନୀ ଲାଗିଗଲେ ଭାଙ୍ଗିବାକୁ ଶ୍ରମିକ ସଂଗଠନକୁ। ପୋଲିସ୍ ବିଶ୍ୱାସ କଲା ଯେ, ପ୍ରତ୍ୟେକ ଧର୍ମଘଟକାରୀ ହେଉଛନ୍ତି ବିଦେଶୀ ଦଲାଲ ଓ ପ୍ରତ୍ୟେକ ବିଦେଶ ଜନ୍ମିତ ବ୍ୟକ୍ତି ହେଉଛନ୍ତି କମ୍ୟୁନିଷ୍ଟ, ଯେଉଁମାନେ ବ୍ୟବସ୍ଥିତ ସଂସ୍ଥାକୁ ଭାଙ୍ଗିବା ପାଇଁ ସଂକଳ୍ପବଦ୍ଧ। ୧୮୮୬ ମସିହା ମଇ ପହିଲା ଧର୍ମଘଟର ବହୁପୂର୍ବରୁ ନ୍ୟୁୟର୍କରେ ଧର୍ମଘଟର ବୀଜବପନ ହୋଇଥିଲା ଓ ତାହାକୁ ଲକ୍ଷ୍ୟ କରି ୨୩ ନଭେମ୍ବର ୧୮୭୫ରେ ଚିକାଗୋ ଟ୍ରିବ୍ୟୁନ୍‌ରେ ପ୍ରକାଶ ପାଇଲା–... ଚିକାଗୋର ପ୍ରତ୍ୟେକ ବତୀଖୁଣ୍ଟ କମ୍ୟୁନିଷ୍ଟମାନଙ୍କର ପଞ୍ଜରାହାଡ଼ରେ ସୁଶୋଭିତ ହେବ ଯଦି ଦରକାର ପଡ଼େ ଧର୍ମଘଟକୁ ସବୁମତେ ରୋକିବା ପାଇଁ ।

ମଇ ୧ ତାରିଖର ଦୁଇମାସ ପୂର୍ବରୁ ଚାରିଆଡ଼େ ବିଶୃଙ୍ଖଳା ଲାଗି ରହିଲା ଏବଂ ସଶସ୍ତ୍ର ପୋଲିସବାହିନୀ ଚିକାଗୋ ସହରରେ ଛାଇ ହୋଇଗଲେ। ମଇ ୧ ତାରିଖ ଯେତିକି ଯେତିକି ପାଖେଇ ଆସିଲା, ଶ୍ରମିକମାନଙ୍କର ଧର୍ମଘଟରେ ଯୋଗ ଦେବାର ସଂଖ୍ୟା ବଢ଼ି ଚାଲିଲା। ଶ୍ରମିକମାନଙ୍କର ନେତା ଆଲବର୍ଟ ଆର. ପାରସନ୍ ଓ ଅଗଷ୍ଟ ସ୍ପାଇସ୍ ମାର୍ଚ୍ଚ ଓ ଏପ୍ରିଲ ଦୁଇମାସ ଧରି ଅକ୍ଲାନ୍ତ ପରିଶ୍ରମ କଲେ, ଚିକାଗୋର ସମସ୍ତ ଶ୍ରମିକ ଯେପରି ଏହି ଧର୍ମଘଟରେ ଯୋଗ ଦିଅନ୍ତି ସେଥିପାଇଁ

ପ୍ରବର୍ତ୍ତାଇଲେ । ଚିକାଗୋରେ ମଇ ୧ ତାରିଖ ଥିଲା ଏକ ମନୋଜ୍ଞ ଦିବସ । ହଠାତ୍ ହ୍ରଦ ଉପର ଦେଇ ବହି ଆସୁଥିବା ଶୀତୁଆ ପବନ ବନ୍ଦ ହୋଇଗଲା । ସୂର୍ଯ୍ୟଙ୍କର କିରଣ ବୃଦ୍ଧି ପାଇଲା । କାରଖାନା ସବୁ ବନ୍ଦ ଥିଲା, ନିର୍ମାଣ କାର୍ଯ୍ୟ ଠପ୍ ହୋଇଯାଇଥିଲା, ଓୟାରହାଉସ୍‌ର ତାଲା ଖୋଲି ନ ଥିଲା । ସହରର ମୁଖ୍ୟ ରାସ୍ତା, ଗଳିକନ୍ଦି ଶୁନ୍‌ଶାନ୍ ଥିଲା । କାରଖାନା ଚିମିନିରୁ ଧୂଆଁ ବାହାରୁ ନଥିଲା ।

ଏହା ଥିଲା ଶନିବାର । ସାଧାରଣ ଭାବରେ କାର୍ଯ୍ୟଦିବସ । କିନ୍ତୁ ମିଚିଗାନ୍ ଆଭେନ୍ୟୁଠାରେ ଦଳଦଳ ଶ୍ରମିକ ସେମାନଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ଧରି, ନିଜ ନିଜର ସବୁଠାରୁ ଉତ୍ତମ ପୋଷାକ ପିନ୍ଧି ରୁଣ୍ଡ ହେବାକୁ ଲାଗିଥିଲେ ଶୋଭାଯାତ୍ରାରେ । ଶୋଭାଯାତ୍ରାର ରାସ୍ତାଠାରୁ କିଛି ଦୂରରେ ଗଳି ରାସ୍ତାରେ ଜମା ହେଉଥିଲେ ସଶସ୍ତ୍ର ପୋଲିସ ଓ ଅଫିସରମାନେ । ଚିକାଗୋ ନଗରପାଳିକାର ସଭ୍ୟମାନେ ରୁଣ୍ଡ ହୋଇଥିଲେ ସେମାନଙ୍କ କାର୍ଯ୍ୟାଳୟରେ କ'ଣ ଘଟିବାକୁ ଯାଉଛି ତା'ର ସବିଶେଷ ବିବରଣୀ ଜାଣିବା ପାଇଁ ।

ଆଲବର୍ଟ ପାର୍ସନ ନିଜର ପତ୍ନୀ ଲୁସି ଓ ଦୁଇଜଣ ପିଲାଙ୍କୁ ଧରି ମିଚିଗାନ୍ ଆଭେନ୍ୟୁ ଆଡ଼କୁ ଚାଲିଥିଲେ । ସେ ଦେଖୁଥିଲେ ହଜାର ହଜାର ସଂଖ୍ୟାରେ ଶ୍ରମିକ ଶୋଭାଯାତ୍ରା ପାଇଁ ଧାଡ଼ି ବାନ୍ଧିବାରେ ବ୍ୟସ୍ତ । ଅଗଷ୍ଟ ସ୍ପାଇସ୍‌ଙ୍କ ହାତରେ ଥିଲା ଚିକାଗୋ ମେଲ୍, ଯେଉଁଥିରେ କୁହାଯାଇଥିଲା ଆମେରିକାର ବିଭିନ୍ନ ପ୍ରାନ୍ତରରେ ୩,୪୦,୦୦୦ ଶ୍ରମିକ ଧର୍ମଘଟ ଶୋଭାଯାତ୍ରାରେ ଯୋଗ ଦେବାବେଳେ ୧,୯୦,୦୦୦ ଧର୍ମଘଟରେ ରହିଛନ୍ତି ଏବଂ ଚିକାଗୋରେ ୮୦,୦୦୦ ଶ୍ରମିକ ଆଠ ଘଣ୍ଟା ଧର୍ମଘଟର ଶୋଭାଯାତ୍ରାରେ ସାମିଲ ହୋଇଛନ୍ତି । ସ୍ପାଇସ୍ ସେମାନଙ୍କୁ ହାତ ହଲାଇ ଶୁଭେଚ୍ଛା ଜଣାଇଲେ । ଖବରକାଗଜରେ ଲେଖାଥିଲା, ଯେକୌଣସି ଗଣ୍ଡଗୋଳ ପାଇଁ ପାର୍ସନ ଓ ସ୍ପାଇସ୍‌ଙ୍କୁ ଦାୟୀ କର । ଶୋଭାଯାତ୍ରା ଆରମ୍ଭ ହେଲା । ସଂଖ୍ୟାର ଯେପରି ଶେଷ ନ ଥିଲା । ନାଇଟସ୍ ଅଫ୍ ଲେବର ଓ ଆମେରିକାନ୍ ଫେଡ଼େରେସନ୍ ଅଫ୍ ଲେବରର ଶ୍ରମିକମାନେ, ବୋହିମିହାନସ, ଜର୍ମାନୀ, ପୋଲାଣ୍ଡ, ଋଷିଆନ, ଇହୁଦୀ, ଇଟାଲିଆନ, ନିଗ୍ରୋ ଏବଂ ଅନ୍ୟମାନେ । ଏମାନେ ଥିଲେ କ୍ୟାଥୋଲିକ୍, ପ୍ରୋଟେଷ୍ଟାଣ୍ଟ, ଇହୁଦୀ, ଅରାଜକତାବାଦୀ, ରିପବ୍ଲିକାନ୍, କମ୍ୟୁନିଷ୍ଟ, ଗଣତନ୍ତ୍ରବାଦୀ, ସମାଜବାଦୀ ଓ ସାଧାରଣ ଲୋକେ । ସମସ୍ତେ ଗୋଟିଏ ହୋଇ ଯାଇଥିଲେ ଆଠ ଘଣ୍ଟାର କାର୍ଯ୍ୟସମୟ ପାଇଁ ।

ଶୋଭାଯାତ୍ରାର ଅଗ୍ରଭାଗରେ ନେତୃତ୍ୱ ନେଇ ପାର୍ସନ ପତ୍ନୀ ଲୁସିର ହାତଧରି ଛିଡ଼ା ହେଲେ । ସାତବର୍ଷର ପୁଅ ଲୁଲୁ ବାପାର ହାତକୁ ଧରିଥିଲା । ଆଠ ବର୍ଷର ପୁଅ ଆଲବର୍ଟ ମା'ର ହାତକୁ । ପାର୍ସନ ଓ ସ୍ପାଇସ୍ ଭାଷଣ ଦେଲେ । ମଇ ଦିବସ ଶୋଭଯାତ୍ରା ଶେଷ ହେଲା । ସମଗ୍ର ଆମେରିକାରେ ମଇ ଦିବସ ପ୍ରକମ୍ପିତ ହୋଇ ଉଠିଲା ।

ଶ୍ରମିକ ଆନ୍ଦୋଳନକୁ ଦମନ କରିବା ପାଇଁ ସରକାର ଓ ମାଲିକ ସଂକଳ୍ପବଦ୍ଧ ହେଲେ । ମଇ ୩ ତାରିଖରେ ମ୍ୟାକ୍ ହରମିନ୍ ହାର୍‌ଭେଷ୍ଟ ପ୍ଲାଣ୍ଟର ଧର୍ମଘଟକାରୀ ଶ୍ରମିକମାନଙ୍କ ଉପରେ ପୁଲିସ୍ ଆକ୍ରମଣ କଲା । ଶାନ୍ତିପୂର୍ଣ୍ଣ ସଭା ଉପରେ ପୋଲିସ୍ ଆକ୍ରମଣ ଫଳରେ ୬ ଜଣ ଶ୍ରମିକ ପ୍ରାଣ ହରାଇଲେ ଓ ଅନେକ ଆହତ ହେଲେ । ମଇ ୪ ତାରିଖରେ ଏହାର ପ୍ରତିବାଦ ସଭା 'ହେ ମାର୍କେଟ'ରେ ଅନୁଷ୍ଠିତ ହେଲା । ସଭାଶେଷ ବେଳକୁ ହଠାତ୍ ଏକ ବୋମା ବିସ୍ଫୋରଣ ଘଟି ୭ ଜଣ ପୋଲିସ୍ ଓ ୪ ଜଣ ଶ୍ରମିକଙ୍କର ମୃତ୍ୟୁ ହେଲା । ନିରସ୍ତ୍ର ଜନତା ଉପରେ ପୁଲିସର ନୃଶଂସ ଓ ନିର୍ମମ ଆକ୍ରମଣ ଆରମ୍ଭ ହେଲା । ଶ୍ରମିକ ରକ୍ତରେ ରଞ୍ଜିତ ହୋଇଗଲା 'ହେ ମାର୍କେଟ ସ୍କୋୟାର ।' ସେଠାରେ ଉପସ୍ଥିତ ଓ ଅନୁପସ୍ଥିତ ଶ୍ରମିକ ନେତା ଆଲବର୍ଟ ଆର ପାରସନ୍, ଅଗଷ୍ଟ ସ୍ପାଇସ୍, ସାମୁଏଲ ଜେ ପିଲେଡ଼୍, ୟଜେନ ସ୍କାଓ୍ୱାବ, ଓ୍ୱାଡ଼ଲଫ୍ ଫିସର, ଜର୍ଜ ଏଙ୍ଗେଲସ, ଲିଇ ସିଙ୍ଗ ଓ ଓସ୍କାର ନିବେଙ୍କୁ ଗିରଫ କରାଗଲା । ସେମାନଙ୍କର ବିଚାର ହେଲା । ବିଚାରରେ ୭ ଜଣଙ୍କୁ ଫାଶୀ ଓ ନିବେଙ୍କୁ ୧୫ ବର୍ଷର ଜେଲ୍ ହେଲା ।

ପାର୍ସନ ବୋମା ବିସ୍ଫୋରଣ ପରେ ସେଠାରୁ ଖସି ଚାଲିଯାଇଥିଲେ ଏବଂ ଏକ ନିରାପଦ ସ୍ଥାନରେ ଥିଲେ । ତାଙ୍କୁ ପୋଲିସ୍ ଚାରିଆଡ଼େ ଖୋଜିବାରେ ଲାଗିଥିଲା । ସେ ଜାଣିଥିଲେ ସେ ଫେରି ଆସିଲେ ତାଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଯିବ ।

କିନ୍ତୁ ସେ ନିଜର ସାଥୀମାନେ ବିପଦରେ ଥିବାବେଳେ ନିଜକୁ ନିରାପଦ ସ୍ଥାନରେ ରହିବାକୁ ଉଚିତ ମନେ କଲେ ନାହିଁ ଏବଂ ବିଚାର ଆରମ୍ଭ ହେବା ଦିନ କୋର୍ଟରେ ଉପସ୍ଥିତ ହୋଇ କହିଥିଲେ, ମୁଁ ବିଚାରକୁ ସମ୍ମୁଖୀନ ହେବା ପାଇଁ ଆସିଛି, ମୋର ନିରାପରାଧ ସାଥୀମାନଙ୍କ ସହିତ । ସେ ତାଙ୍କର ଜଣେ ବନ୍ଧୁଙ୍କୁ କହିଥିଲେ, ମୁଁ ଜାଣେ ମୁଁ କରୁଛି । ସେମାନେ ମୋତେ ମାରିଦେବେ । କିନ୍ତୁ ମୁଁ ସ୍ୱାଧୀନତାକୁ ସହ୍ୟ କରିପାରିବି ନାହିଁ, ଏହା ଜାଣେ ଯେ ମୋର ସାଥୀମାନେ ଯନ୍ତ୍ରଣା ଭୋଗ କରିବେ ସେହି ଅପରାଧ ପାଇଁ ଯେଉଁଥିରେ ମୋ' ପରି ସେମାନେ ମଧ୍ୟ ନିର୍ଦ୍ଦୋଷ ।'

ଜନ୍ ସିଭନଟନ୍ ଏହି ବୋମା ବିସ୍ଫୋରଣକୁ ଲକ୍ଷ୍ୟ କରି ଲେଖିଥିଲେ, ଅଜଣା ବ୍ୟକ୍ତିର ହାତରୁ ଫିଙ୍ଗା ଯାଇଥିବା ଏହି ବୋମା ଶ୍ରମିକ ଆନ୍ଦୋଳନର ଶତ୍ରୁମାନଙ୍କ ପାଇଁ ଦୈବୀପ୍ରେରିତ ପ୍ରମାଣିତ ହୋଇଥିଲା । ସେମାନେ ଏହାକୁ ଶ୍ରମିକ ଶ୍ରେଣୀର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ପୂରଣ ପାଇଁ ପ୍ରତିବଦ୍ଧତା ଓ ପୁଞ୍ଜିଦ୍ୱାରା ଉତ୍ପନ୍ନ ସମସ୍ତ ପ୍ରକାର ମନ୍ଦ ଉଦ୍ଦେଶ୍ୟକୁ ପ୍ରତିହତ କରିବାର ଚେଷ୍ଟା ବିରୁଦ୍ଧରେ ଏକ ପ୍ରଚଣ୍ଡ ବିସ୍ଫୋରଣ ଭାବେ ବ୍ୟବହାର କଲେ । ଶ୍ରମିକ ନେତାମାନଙ୍କର ଏହି ଅମୂଲ୍ୟ ବଳିଦାନର ଫଳ ଭୋଗ କଲେ ବିଶ୍ୱର କୋଟି କୋଟି ଶ୍ରମିକ । ୧୮୮୯ ଜୁଲାଇ ୪ ତାରିଖରେ ପ୍ୟାରିସ୍ ଠାରେ 'ଦ୍ୱିତୀୟ ଆନ୍ତର୍ଜାତିକ' ଗଠିତ ହେଲା ଏବଂ ୧୮୯୦ ମଇ ପହିଲାକୁ ଆନ୍ତର୍ଜାତିକ ଶ୍ରମିକ ଦିବସ ରୂପେ ପାଳନ ହେବାକୁ ନିଷ୍ପତ୍ତି ଗ୍ରହଣ କରାଗଲା ।

ଫାଶୀଖୁଣ୍ଟରେ ଝୁଲିବା ବେଳେ ପାର୍ସନ ପଚାରିଲେ, ହେ ଆମେରିକାର ମଣିଷମାନେ, ମୋତେ କହିବାକୁ ଅନୁମତି ମିଳିବ କି ? 'ମୁଁ କହେ, ସରିଫ୍ ମାଟସନ୍ ! ଲୋକମାନଙ୍କର ସ୍ୱର ଶୁଣାଯାଉ ।' ଫାଶୀଖୁଣ୍ଟରେ ଝୁଲି ପଡ଼ିଲେ ପାର୍ସନ । ଐତିହାସିକ ଦୃଷ୍ଟିକୋଣରୁ ଏହି ସ୍ୱାଧୀନ ସାଧାରଣତନ୍ତ୍ର ଚାରିଜଣ ବ୍ୟକ୍ତିଙ୍କୁ ସେମାନଙ୍କର ମତାମତ ପାଇଁ ହତ୍ୟା କଲେ ।

କିନ୍ତୁ ସେମାନେ ଏବେ ବି ଅମର । ଶ୍ରମିକ କେବେ ମରେ ନାହିଁ । ଶ୍ରମିକର ସ୍ୱର ସଦାସର୍ବଦା ବିଜୟ ଲାଭ କରେ । ତାହା ହିଁ ଆନ୍ତର୍ଜାତିକ ଶ୍ରମିକ ଦିବସ । ମଇ ପହିଲାର ମଇ ଦିବସ ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫



# ପରମ୍ପରା, ପ୍ରଭାବ ଓ ଅନୁଭୂତିରେ ଶ୍ରୀଗୀତଗୋବିନ୍ଦ

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ
ଡକ୍ଟର ଅଜିତ କୁମାର ତ୍ରିପାଠୀ

ଶ୍ରୀଜୟଦେବ ଓ ତାଙ୍କ ରଚିତ ଶ୍ରୀଗୀତଗୋବିନ୍ଦ ସମ୍ପର୍କରେ ବହୁ ଗପ ଦେଶରେ ବିଭିନ୍ନ ରାଜ୍ୟରେ ପ୍ରଚଳିତ ଥିଲେ ବି ଓଡ଼ିଶାରେ ସେସବୁର ଅଲୌକିକତା ଲିଭି ଯାଇନାହିଁ। ଓଡ଼ିଆମାନଙ୍କ ମଧ୍ୟରେ ପ୍ରଚଳିତ ଅଛି ଯେ ଶ୍ରୀଗୀତଗୋବିନ୍ଦ ଠିଆ ହୋଇ ବୋଲିଲେ ମହାପ୍ରଭୁ ଶ୍ରୀଜଗନ୍ନାଥ ବସି ଶୁଣନ୍ତି ଓ ବସି ବୋଲିଲେ ଭକ୍ତ ପାଖରେ ଠିଆ ହୋଇ ସେ ଶୁଣିଥାନ୍ତି। ତେଣୁ ଯିଏ ଯେପରି ଭାବରେ ବୋଲିଲେ ବି ପ୍ରଥମେ ପ୍ରଭୁଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ପ୍ରଣାମ କରିଥାନ୍ତି । ଏହା ହେଉଛି ଓଡ଼ିଆମାନଙ୍କ ପରମ୍ପରା । ମାତ୍ର ବର୍ତ୍ତମାନ ଟେଲିଭିଜନ ଯୁଗରେ ସେଥିପ୍ରତି ଆଉ କେହି ଗୁରୁତ୍ୱ ଦେଉନାହାନ୍ତି। ମୋର ପାଠପଢ଼ା ସମୟରେ ଆମ ଅଞ୍ଚଳରେ ଥିବା ବିଦ୍ୟାଳୟମାନଙ୍କରେ ଶ୍ରୀଗୀତଗୋବିନ୍ଦର ଦଶାବତାର ସ୍ତୋତ୍ର ବା ନାରାୟଣଙ୍କ ବନ୍ଦନା (ଶ୍ରୀତକମଳା କୁଚମଣ୍ଡଳ) ପ୍ରଥମେ ବୋଲା ଯାଉଥିଲା। ଶ୍ରୀଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ଶ୍ରୀମନ୍ଦିର ସେବାରେ ସ୍ଥାନ ପାଇବା ପରେ ତତ୍କାଳୀନ କଳିଙ୍ଗର ପ୍ରତିଟି ଦେବ ମନ୍ଦିରରେ ତାହା ସେବା ଭାବରେ ଗୃହୀତ ହୋଇଥିଲା ଓ ସେପରି ପରମ୍ପରା ଏବେ ବି ବହୁ ମନ୍ଦିରମାନଙ୍କରେ ପ୍ରଚଳିତ ଅଛି। ଗଙ୍ଗ ଓ ଗଜପତି ବଂଶର ଶାସନ ବେଳେ ଶ୍ରୀଗୀତଗୋବିନ୍ଦ ରାଷ୍ଟ୍ରୀୟ ସଙ୍ଗୀତ ଭାବେ ଗୃହୀତ ହୋଇଥିଲା। କଳିଙ୍ଗ ବା ଉତ୍କଳର ସମ୍ରାଟ୍‌ମାନଙ୍କର ପ୍ରତ୍ୟହ ରାଜସଭା ଆରମ୍ଭ ହେଉଥିବାବେଳେ ପ୍ରଥମେ ଶ୍ରୀଗୀତଗୋବିନ୍ଦ ବୋଲା ଯାଉଥିଲା। କାରଣ ଥିଲା ଶ୍ରୀଜଗନ୍ନାଥଙ୍କ ନାମରେ ଦେଶ ଶାସନ ହେବା ସହ ଏହି ଭୂମିକୁ ଶ୍ରୀଜଗନ୍ନାଥଙ୍କ ଦେଶ ନାମରେ ଅନ୍ୟତ୍ର ଚିହ୍ନିତ ହୋଇଥିଲା। ଶ୍ରୀଗୀତଗୋବିନ୍ଦ ବୋଲିଲେ ପ୍ରଭୁ ପ୍ରତ୍ୟହ ରାଜସଭାରେ ଉପସ୍ଥିତ ହୋଇଥାନ୍ତି ବୋଲି ଥିଲା ବିଶ୍ୱାସ। ଶ୍ରଦ୍ଧା ଓ ଭକ୍ତିର ସହିତ ଠିଆ ହୋଇ ଶ୍ରୀଗୀତଗୋବିନ୍ଦ ଗାନ କଲେ ସମସ୍ତ ମନକାମନା ପୂରଣ ହୋଇଯାଇଥାଏ ବୋଲି ବିଶ୍ୱାସ ରହିଛି ।

ଦେଶର ଅନ୍ୟତ୍ର ଦେବ ମନ୍ଦିରମାନଙ୍କରେ ମଧ୍ୟ ଶ୍ରୀଗୀତଗୋବିନ୍ଦ ବୋଲା ଯିବାର ପରମ୍ପରା ଚଳିଆସୁଛି।

ହିନ୍ଦୁମାନଙ୍କର ପ୍ରସିଦ୍ଧ ଚାରି ପବିତ୍ର ଧାମରେ ପ୍ରତିଷ୍ଠିତ ବିଗ୍ରହମାନଙ୍କ ସେବାରେ ଶ୍ରୀଗୀତଗୋବିନ୍ଦ ବୋଲାଯାଏ। ଏପରିକି ବହୁ ଶିବ ଓ ଶକ୍ତି ମନ୍ଦିରମାନଙ୍କରେ ଏହା ବୋଲା ଯିବାର ପରମ୍ପରା ରହିଛି। ପୂର୍ବାଞ୍ଚଳ ରାଜ୍ୟ ଆସାମରେ ଥିବା ପ୍ରସିଦ୍ଧ ଶକ୍ତିପୀଠ କାମାକ୍ଷା ଦେବୀଙ୍କ ମନ୍ଦିର ଓ ଓଡ଼ିଶାର ପ୍ରାଚୀ ଉପତ୍ୟକାର ପ୍ରସିଦ୍ଧ ମଙ୍ଗଳା ମନ୍ଦିରରେ ମଧ୍ୟ ଏପରି ପରମ୍ପରା ଥିବାର ଦେଖାଯାଏ। ଦାକ୍ଷିଣାତ୍ୟର ବହୁ ପ୍ରସିଦ୍ଧ ଶିବ ଓ ବିଷ୍ଣୁ ମନ୍ଦିରମାନଙ୍କର ସେବାରେ ଶ୍ରୀଗୀତଗୋବିନ୍ଦ ସ୍ଥାନ ପାଇଛି। ଏପରିକି ତାମିଲନାଡୁ ଓ କର୍ଣ୍ଣାଟକ ରାଜ୍ୟର ପ୍ରତିଟି ଗୃହସ୍ଥଙ୍କ ଘରେ ପ୍ରତ୍ୟହ ସକାଳ ଓ ସନ୍ଧ୍ୟାବେଳେ ପରିବାରର ଲୋକମାନେ ଏକତ୍ର ବସି ଶ୍ରୀଗୀତଗୋବିନ୍ଦ ବୋଲିଥାନ୍ତି। ସେମାନଙ୍କ ମତରେ ଶ୍ରୀଗୀତଗୋବିନ୍ଦର ଦୁଇଟି ସ୍ତୋତ୍ର ଦଶାବତାର ଓ ନାରାୟଣ ବନ୍ଦନା (ଶ୍ରୀତକମଳା କୁଚମଣ୍ଡଳ) ହେଉଛି ମନ୍ତ୍ରସିଦ୍ଧ। ଏହାକୁ ବୋଲାଗଲେ ପରିବାର ପ୍ରତି କୌଣସି ଅଶୁଭ ଆତ୍ମାର ଦୃଷ୍ଟି ପଡ଼ି ନଥାଏ। ଏପରି ପ୍ରଚଳିତ ପରମ୍ପରା ସମ୍ପର୍କରେ କିଛିଟା ଅନୁଭୂତି ନିମ୍ନରେ ଦିଆଗଲା ।

ରାଜ୍ୟ ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ପକ୍ଷରୁ ଗତ ପ୍ରାୟ ଆଠବର୍ଷ ତଳେ ବାଙ୍ଗାଲୋର ସହରରେ ଆୟୋଜିତ ହୋଇଥିଲା ଓଡ଼ିଶା ଉତ୍ସବ। ପ୍ରବାସୀ ଓଡ଼ିଆମାନଙ୍କ ସହିତ ସେହି ରାଜ୍ୟର ଜନସାଧାରଣଙ୍କୁ ଓଡ଼ିଆ ସଂସ୍କୃତି ସହ ପରିଚିତ କରାଇବା ଥିଲା ଏପରି ଆୟୋଜନର ଲକ୍ଷ୍ୟ। ଆୟୋଜନର ମୁଖ୍ୟ ଥିଲେ ତତ୍କାଳୀନ ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ, ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି ଓ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି। ଓଡ଼ିଶାର ବହୁ କଳାକାରଙ୍କୁ ଏହି ଉତ୍ସବରେ ସାମିଲ କରାଯାଇଥିଲା। ବାଙ୍ଗାଲୋରରେ ଥିବା ଓଡ଼ିଆମାନେ ବି ଏଥିରେ ବହୁ ସହଯୋଗ କରିଥିଲେ। ଓଡ଼ିଶାର ସାଂସ୍କୃତିକ କାର୍ଯ୍ୟକ୍ରମର ଆରମ୍ଭରେ ଥିଲା ଓଡ଼ିଆ କଣ୍ଠଶିଳ୍ପୀ ଶ୍ରୀମତୀ ମିନତୀ ଭଞ୍ଜଙ୍କର ଶ୍ରୀଗୀତଗୋବିନ୍ଦ ଗାୟନ। ସହର ସାରା ସବୁ କାର୍ଯ୍ୟକ୍ରମ ସମ୍ପର୍କରେ ପ୍ରଚାର ବି ହୋଇଗଲା। ଉତ୍ସବ ଆରମ୍ଭ ଦିନ ବହୁ କାନାଡ଼ି ସ୍ତ୍ରୀ ଓ ପୁରୁଷଙ୍କୁ କାର୍ଯ୍ୟକ୍ରମ ହେଉଥିବା ପ୍ରେକ୍ଷାଳୟ ନିକଟରେ ଦେଖିବାକୁ ମିଳିଥିଲା। ସେମାନଙ୍କର ପ୍ରଶ୍ନ ଥିଲା ଶ୍ରୀଗୀତଗୋବିନ୍ଦ ଗାୟନର ଆରମ୍ଭ କେତେବେଳେ ହେଉଛି ? ଆମେ ଓଡ଼ିଶାର ପରମ୍ପରା ଅନୁସାରେ ଉତ୍ସବ ପ୍ରଥମରୁ ଶ୍ରୀଗୀତଗୋବିନ୍ଦ ବୋଲା ଯିବାର ସୂଚନା ଦେଇଥିଲୁ। ଏପରି ଶୁଣି ପ୍ରେକ୍ଷାଳୟର ପ୍ରାୟ ୭୦ ପ୍ରତିଶତ ସ୍ଥାନ ସେମାନେ ନିଜର ଦଖଲକୁ ନେଇଗଲେ। ଶ୍ରୀମତୀ ମିନତୀ ଭଞ୍ଜଙ୍କର ସୁଲଳିତ କଣ୍ଠରେ ଶ୍ରୀଗୀତଗୋବିନ୍ଦ ବୋଲା ଆରମ୍ଭ ହେବାବେଳେ ଦେଖାଗଲା ଯେ ପ୍ରତ୍ୟେକ କାନାଡ଼ି ଲୋକେ ପ୍ରଥମେ ଭୂମି ସ୍ପର୍ଶ ମୁଦ୍ରାରେ ପ୍ରଣାମ ଜଣାଇ ହାତଯୋଡ଼ି ବସି ରହିଲେ। ଉତ୍ସବରେ ଶ୍ରୀଗୀତଗୋବିନ୍ଦ ବୋଲିବା କାର୍ଯ୍ୟକ୍ରମ ପ୍ରାୟ ଏକ ଘଣ୍ଟା ଧରି ଚାଲିଲା। ଗୀତ ବୋଲା କାର୍ଯ୍ୟକ୍ରମ ସରିଲା ପରେ ସେମାନେ ଚାଲିଗଲେ। ଶ୍ରୀଗୀତଗୋବିନ୍ଦ ବୋଲାବେଳେ ଏପରି ବସିବାର କାରଣ ପଚାରିବାରୁ ମୋ ପାଖରେ ବସିଥିବା ଜଣେ ଯୁବା ସିନେମା ଅଭିନେତ୍ରୀଙ୍କର ଉତ୍ତର ଥିଲା ଯେ ଶ୍ରୀଗୀତଗୋବିନ୍ଦ ବୋଲିଲାବେଳେ କୃଷ୍ଣ ଭଗବାନ ଉପସ୍ଥିତ ହୋଇଥାନ୍ତି। ସେମାନଙ୍କର ପ୍ରତି ଘରେ ସକାଳ ଓ ସନ୍ଧ୍ୟାରେ ଗୃହର ଉପାସିତ ଠାକୁରଙ୍କ ନିକଟରେ ଶ୍ରୀଗୀତଗୋବିନ୍ଦ ବୋଲାଯାଏ। ପରିବାରର ବୟସ୍କ ଲୋକେ ପ୍ରଥମେ ଗୀତ ବୋଲା ଆରମ୍ଭ କରୁଥିବାବେଳେ ଅନ୍ୟମାନେ ତାହାର ପାଳି ଧରିଥାନ୍ତି। ତିନିଦିନ ଧରି ପାଳିତ ଏହି ଉତ୍ସବରେ ଘଣ୍ଟାକ ପାଇଁ ଶ୍ରୀଗୀତଗୋବିନ୍ଦ ଶୁଣିବା ପାଇଁ ସେମାନେ ଆଗ୍ରହରେ ଆସୁଥିଲେ। ସଭାରେ ଉପସ୍ଥିତ କର୍ଣ୍ଣାଟକର ମନ୍ତ୍ରୀ ଓ ଉଚ୍ଚ ଅଫିସରମାନେ ମଧ୍ୟ ଏଥିରୁ ବାଦ୍ ପଡୁ ନଥିଲେ। ସେହିଭଳି ତାମିଲନାଡୁର ଚେନ୍ନାଇ ସହରରେ ଆୟୋଜିତ ଉତ୍ସବରେ ମଧ୍ୟ ଏପରି ପରମ୍ପରା ପ୍ରଚଳିତ ଥିବାର ମୁଁ ଦେଖିଛି।

ଓଡ଼ିଆଙ୍କ ପ୍ରତ୍ୟେକ ଶୁଭ କାର୍ଯ୍ୟରେ ଶ୍ରୀଗୀତଗୋବିନ୍ଦ ପାରାୟଣ ହେବାର ପ୍ରଥା ଚଳି ଆସୁଥିଲା। ପ୍ରତ୍ୟେକ ମନ୍ଦିର, ମଠ ଓ ରାଜା ବା ଜମିଦାରଙ୍କ ଗୃହର ପ୍ରବେଶ ଦ୍ୱାରରେ ଶ୍ରୀଗୀତଗୋବିନ୍ଦର ଦଶାବତାର ଚିତ୍ରମାନ ଶୋଭା ପାଉଥିଲା। ତାଳପତ୍ରରେ ଶ୍ରୀଗୀତଗୋବିନ୍ଦର ଲେଖା ଥିବା ମାଳା ରାଜ୍ୟ ସଂଗ୍ରହାଳୟରେ ଏବେ ବି ପ୍ରଦର୍ଶିତ ହୋଇଛି। ମତ୍ସ୍ୟାକୃତି ଶ୍ରୀଗୀତଗୋବିନ୍ଦ ପୋଥି, ଦଶାବତାର ଚିତ୍ରାବଳୀ ଥିବା ପୋଥି ପ୍ରାୟତଃ ଓଡ଼ିଶାର ମଠ ଓ ମନ୍ଦିରମାନଙ୍କରେ ଥିବାର ଦେଖାଯାଏ। ବାଉଁଶ ପତ୍ରରେ ଶ୍ରୀଗୀତଗୋବିନ୍ଦର ପ୍ରତିଲିପି ରାଜ୍ୟ ସଂଗ୍ରହାଳୟରେ ରହିଛି । ଲୁହା ଲେଖନୀ ସାହାଯ୍ୟରେ

ଏହାର ଲିପିକରଣ ହୋଇଥିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପଚିଶଟି ବାଉଁଶ ପତ୍ରରେ ଏହି ପୋଥି ତିଆରି ହୋଇଛି ଓ ସେଥିରୁ ଗୋଟିକରେ ରହିଛି ଦଶାବତାର ସ୍ତୁତି । ଶ୍ରୀଗୀତଗୋବିନ୍ଦ ପ୍ରତି ଓଡ଼ିଆମାନଙ୍କର କିଭଳି ଦୁର୍ବଳତା ରହିଛି, ତାହା ଏଥିରୁ ସହଜେ ଅନୁମେୟ । ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଶ୍ରୀଗୀତଗୋବିନ୍ଦ ବୋଲିବା ସହ ଦେବଦାସୀମାନେ ନୃତ୍ୟ କରୁଥିଲେ । ଦେବଦାସୀ ପ୍ରଥା କ୍ରମଶଃ ଲୁଚି ଯିବାରୁ ସେହି ସେବା ଏବେ ବନ୍ଦ ହୋଇଯାଇଛି । ମହାପ୍ରଭୁ ପ୍ରତ୍ୟହ ପିନ୍ଧୁଥିବା ଶ୍ରୀଗୀତଗୋବିନ୍ଦ ଶ୍ଳୋକାବଳୀ ମଣ୍ଡିତ ଖଣ୍ଡୁଆ ଓ ଲୁଗା ଓଡ଼ିଶାର କୁଶଳୀ କାରିଗରମାନେ ବୁଣିଥାନ୍ତି । ଦିନେ ଓଡ଼ିଶାର କେନ୍ଦୁଲି ଶାଢ଼ୀ ବିଶ୍ୱ ପ୍ରସିଦ୍ଧ ଥିଲା । ବାଉଁଶ ନଳ ଭିତରେ ଏହି ଶାଢ଼ୀକୁ ରଖାଯାଇ ବିଦେଶକୁ ପଠା ଯାଉଥିଲା । ତେଣୁ ଅତୀତରେ ଶ୍ରୀଗୀତଗୋବିନ୍ଦର ଲୋକପ୍ରିୟତା ବୟନ ଶିଳ୍ପ ଉପରେ କିଭଳି ପ୍ରଭାବ ପକାଇ ପାରିଥିଲା ତାହା ସହଜେ ଅନୁମେୟ ।

ବିବାହ ପରେ କନ୍ୟାକୁ ବର ସହିତ ବିଦାୟ ଦେବାବେଳେ ଶ୍ରୀଗୀତଗୋବିନ୍ଦ ଲେଖାଥିବା ଶାଢ଼ୀ ବା ଖଣ୍ଡୁଆ ଓ ପୋଥିଟିଏ ତାହାର ପେଡ଼ିରେ ଦିଆଯାଉଥିଲା । ଏପରି ପରମ୍ପରା କ୍ରମଶଃ ଲିଭି ଆସୁଥିଲେ ମଧ୍ୟ କେତେକ ସ୍ଥାନରେ ତାହା ଏବେ ବି ପ୍ରଚଳିତ ଅଛି ।

ଶ୍ରୀଗୀତଗୋବିନ୍ଦ ଓଡ଼ିଆ ଜନଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲା । ଦେଶରେ ପ୍ରଚଳିତ କେତୋଟି ଲୋକପ୍ରିୟ କିମ୍ବଦନ୍ତୀ ସହିତ ଅନୁଭୂତି ସମ୍ପର୍କରେ ସମ୍ୟକ୍ ଆଲୋଚନା ନିମ୍ନରେ ପ୍ରଦତ୍ତ ହୋଇଛି ।

**କିମ୍ବଦନ୍ତୀରେ ଶ୍ରୀଗୀତଗୋବିନ୍ଦ**

ଜ୍ୟୋତ୍ସ୍ନାଧୌତ ପୂର୍ଣ୍ଣମୀ ରାତ୍ରୀର ଶେଷ ପ୍ରହର । ଅଶାନ୍ତ ସାଗରର ବାରିକଣାକୁ ନେଇ ବହି ଆସୁଥିବା ମୃଦୁ ମଳୟ ହିଲ୍ଲୋଳର ପରଶରେ ଦେହ ହେଉଥିଲା ପୁଲକିତ । ସେପରି ଏକ ପରିବେଶରେ ମାଳିନୀ ବୃନ୍ଦା କଣ୍ଟକିତ ବାଇଗଣ କ୍ଷେତରେ ଥିଲେ ଫଳ ତୋଳିବାରେ ବ୍ୟସ୍ତ । ଆଉ ଭାସି ଆସୁଥିଲା ତାଙ୍କ କଣ୍ଠରୁ ଦେବ ବନ୍ଦିତ ଶ୍ରୀଗୀତଗୋବିନ୍ଦର ଅମୃତ ପଦାବଳୀରୁ କେତୋଟି ପଂକ୍ତି–ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ.... । ସ୍ୱର ସହ ତାଳ ମିଳାଇ ଭାସି ଆସିଲା ବଂଶୀର ନାଦ । ସେପରି ନାଦରେ ଥମିଗଲା ବୃନ୍ଦାଙ୍କ ସ୍ୱର । ବିସ୍ମିତ ହୋଇ ସେ ଚାହିଁ ରହିଲେ ଚାରିଆଡ଼କୁ । କାହିଁ ! କେଉଁଠାରେ କେହିତ ନାହାନ୍ତି ? ମନରେ ଆସିଲା ତାଙ୍କର ଦ୍ୱନ୍ଦ୍ୱ । ପୁଣି ଗାଇ ଉଠିଲେ ବୃନ୍ଦା । ଭାସିଆସିଲା ପୁଣି ସେହି ଅପୂର୍ବ ବଂଶୀର ସ୍ୱର । ଗୀତ ବୋଲାରେ ପଛକୁ ଚାହିଁଦେଲେ ବୃନ୍ଦା । ନୀରଦ ନିନ୍ଦିତ କାନ୍ତିରେ ଝଟକୁଥିବା ଜଣେ ଅପୂର୍ବ ଯୁବାପୁରୁଷ ବଂଶୀ ବଜାଇ ତାଙ୍କୁ ଅନୁସରଣ କରିଚାଲିଛନ୍ତି । ଗଳାରୁ ପାଦ ପର୍ଯ୍ୟନ୍ତ ତାଙ୍କର ଲମ୍ବିଥିଲା ସୁନ୍ଦର ବନଫୁଲର ମାଳ । କଟିରେ ପିନ୍ଧିଥିବା ପୀତାମ୍ବର ସମୀର ପରଶରେ ଉଡୁଥିବାବେଳେ ଦୋହଲି ଉଠୁଥିଲା ଗଭାରେ ଖୋସାଥିବା ବାଙ୍କ ଶିଖଣ୍ଡ ଚୂଳ । ପୁଣି ମୃଦୁମନ୍ଦ ସମୀରଣ ସହ ଭାସି ଆସୁଥିଲା ମୃଗମଦ କସ୍ତୁରୀ ଓ ଚନ୍ଦନର ମହକ । ହତବାକ୍ ହେଲେ ବୃନ୍ଦା । କଣ୍ଠରୁ ଥମିଗଲା ତାଙ୍କର ଶ୍ରୀଗୀତଗୋବିନ୍ଦର ସ୍ୱର । ଆଉ ଚେତନାଶୂନ୍ୟ ଦେହ ତାଙ୍କର ଲୋଟି ପଡ଼ିଲା ସେହି ବାଇଗଣ କିଆରିରେ ।

ପ୍ରତ୍ୟୁଷରେ ଘରେ ନ ପହଞ୍ଚିବାରୁ ପରିବାର ଲୋକେ ତାଙ୍କୁ ଖୋଜି ପାଇଲେ ବାଇଗଣ କ୍ଷେତରେ । ଚେତନାଶୂନ୍ୟ ଶରୀରର ଉପଚାର ପରେ ବୃନ୍ଦାଙ୍କର ପଛ କଥା ମନେ ପଡ଼ିଗଲା । ପରିବାର ଲୋକମାନଙ୍କ ଆଗରେ ଦେଖିଥିବା କଥାକୁ ସେ ବର୍ଣ୍ଣନା କଲେ । ଚମତ୍କୃତ ପରିବାର କେବଳ ଦୁଇହାତ ଯୋଡ଼ି ସେହି ଅଦୃଶ୍ୟ ସ୍ରଷ୍ଟାଙ୍କୁ ଶତ ସହସ୍ର ପ୍ରଣାମ ଜଣାଇ ମାତାଙ୍କ ପାଦ ଦୁଇଟିକୁ ଜାବୋଡ଼ି ଧରିଥିଲେ । ପ୍ରତିଟିଙ୍କର ମୁହଁରୁ ଶୁଣାଗଲା ଧନ୍ୟା ତୁମେ ମାତା ! ଜଗତର ସମସ୍ତ ପ୍ରାଣୀ ଯାହାଙ୍କୁ ପାଇବା ପାଇଁ ବ୍ୟାକୁଳ ତୁମେ ତାଙ୍କୁ ଆଜି ଦେଖି ପାରିଲ ? ତୁମକୁ ପାଇ ଆମେ ଆଜି ଧନ୍ୟ ହୋଇଗଲୁ ।

ଏଣେ ପ୍ରତ୍ୟୁଷରୁ ସେବା ଆରମ୍ଭ ନିମନ୍ତେ ଶ୍ରୀମନ୍ଦିର କବାଟ ଖୋଲିବା ପରେ ଦେଖାଗଲା ପ୍ରଭୁଙ୍କୁ ପୂର୍ବ ରାତ୍ରୀରୁ ପିନ୍ଧା ଯାଇଥିବା ଶ୍ରୀଗୀତଗୋବିନ୍ଦ ପଦାବଳୀ ଲେଖାଥିବା ଲୁଗା ଓ ଖଣ୍ଡୁଆରେ ଲାଗିଛି ବାଇଗଣ ପତ୍ରର କଣ୍ଟା । ଆଉ ତାହାସବୁ ଚିରିଯାଇଛି । କାହିଁକି ଏପରି ହେଲା ? ବିସ୍ମୟ ଓ ବିଷାଦରେ ସେବାୟତଗଣ ଥରି ଉଠିଲେ । ନିଶ୍ଚିତ ରାଜଦଣ୍ଡ ଅପେକ୍ଷାରେ କେବଳ ଅଶ୍ରୁ ଗଡ଼ାଇବା ଛଡ଼ା ସେମାନଙ୍କର ଆଉ କିଛି ଉପାୟ ନଥିଲା । କଥାଟା ଯାଇ କଟକର ବାରବାଟୀ ଗଡ଼ରେ ପହଞ୍ଚିଲା । ସେତେବେଳେ ଥିଲେ ଉତ୍କଳର ମହାମହିମ ସମ୍ରାଟ୍ ଗଜପତି

ପ୍ରତାପରୁଦ୍ର ଦେବ। ଘଟଣା କ'ଣ ଜାଣିବାକୁ ତୁରନ୍ତ ପାତ୍ର, ମନ୍ତ୍ରୀ ଓ ସୁରକ୍ଷାବଳଙ୍କ ଗହଣରେ ସେ ଶ୍ରୀକ୍ଷେତ୍ରରେ ପହଞ୍ଚି ସମସ୍ତ କଥା ଦେଖିଲେ। ସବୁବର୍ଗର ସେବକମାନଙ୍କର କଥାକୁ ବିଶ୍ୱାସରେ ନେଇ ସମ୍ପୂର୍ଣ୍ଣ ଅନ୍ନ ଜଳ ତ୍ୟାଗ କରି ପୁରୀର ରାଜନିଳୟରେ ବସି ରହିଲେ ମହାମହିମ। ପଥଶ୍ରମରେ ତାଙ୍କର କେତେବେଳେ ନିଦ୍ରା ଆସିଯାଇଥିଲା। ନିଦ୍ରା ଯାଇଥିବାବେଳେ ସେ ଦେଖିଲେ ଜଣେ ଦେବପୁରୁଷ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହୁଛନ୍ତି ହେ ରାଉତ! ସେବକମାନଙ୍କର ସେବାରେ କୌଣସି ବ୍ୟତିକ୍ରମ ହୋଇନାହିଁ। ସମୁଦ୍ର ନିକଟରେ ଥିବା ଏକ କଣ୍ଟକିତ ବାଇଗଣ କିଆରିରେ ବୃଦ୍ଧା ମାଳିନୀ ଶ୍ରୀଗୀତଗୋବିନ୍ଦ ବୋଲି ବାଇଗଣ ତୋଳୁଥିଲା। ସେହି ମଧୁର ଆବୃତ୍ତିରେ ଆକୃଷ୍ଟ ହୋଇ ମୁଁ ରତ୍ନ ସିଂହାସନ ଛାଡ଼ି ସେହି ସ୍ୱର ସହିତ ତାଳ ଦେଇ ତାହା ପଛରେ ବଂଶୀ ବଜାଇ ଘୂରି ବୁଲୁଥିଲି। ସେଥିପାଇଁ ପିନ୍ଧିଥିବା ପାଟ ପୀତାମ୍ବର କଣ୍ଟକିତ ହୋଇଯାଇଛି। ଏପରି ସ୍ୱପ୍ନରେ ହଠାତ୍ ନିଦ୍ରାରୁ ଉଠି ବସିଲେ ଗଜପତି ସମ୍ରାଟ୍। ଖୋଜା ପଡ଼ିଲା ସେହି ବୃଦ୍ଧା ମାଳିନୀଙ୍କୁ। ଆଉ ତାଙ୍କୁ ପାଇଗଲେ ବି ରାଜ ଅନୁଚରଗଣ। ରାଜୋଚିତ ସମସ୍ତ ସମ୍ମାନକୁ ତୁଚ୍ଛ କରି ମୁକ୍ତ ପଦରେ ଧାଇଁ ଗଲେ ଗଜପତି ସେହି ମାଳିନୀଙ୍କର ଗୃହକୁ। ତାଙ୍କ ପଦ ଦୁଇଟିକୁ ଧରି କାନ୍ଦି ଉଠିଲେ ସେ। ଅବିରତ ଚକ୍ଷୁରୁ ବହିଯାଉଥିବା ଅଶ୍ରୁର ଧାରରେ ବୃଦ୍ଧାଙ୍କର ପଦଯୁଗଳ ତିନ୍ତିଗଲା। ମସ୍ତକ ଉଠାଇ ଯୋଡ଼ହସ୍ତରେ ସେ କହିଲେ ଧନ୍ୟ ମାତା। ତୁମେ ଆଜି ସମସ୍ତ ଓଡ଼ିଆ ପ୍ରାଣର ମାତା। ପ୍ରଭୁଙ୍କୁ ସ୍ୱଚକ୍ଷୁରେ ଦେଖିପାରିଲ ? ଆଉ ତୁମ କଣ୍ଠନିସୃତ ମଧୁର ସ୍ୱର ତାଙ୍କୁ ଟାଣି ନେଇଗଲା ତୁମର ବାଇଗଣ କିଆରିକୁ। ଧନ୍ୟା ତୁମେ ମାତା। ତୁମ ଭଳି ମାତା ପାଇ ଆଜି ଉତ୍କଳ ଧନ୍ୟ। ଯଥା ରାଜକୀୟ ସମ୍ମାନରେ ବୃଦ୍ଧାଙ୍କୁ ପୁରୀରେ ଥିବା ରାଜନଅରକୁ ଅଣାଗଲା। ଶ୍ରୀମନ୍ଦିରରେ ଶ୍ରୀଗୀତଗୋବିନ୍ଦ ବୋଲିବା ନିମନ୍ତେ ପର୍ଯ୍ୟାପ୍ତ ସମ୍ପତ୍ତି ତାଙ୍କୁ ଦିଆଗଲା। ସେହିଦିନଠାରୁ ଶ୍ରୀଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ପ୍ରଭୁଙ୍କ ଛାମୁରେ ବୋଲା ନ ହେବା ପାଇଁ ନିର୍ଦ୍ଦେଶ ହେଲା। ଏଥିପାଇଁ ଥିବା ଶିଳାଲିପିର ସେହି ନିର୍ଦ୍ଦେଶ ଆଜି ବି ଶ୍ରୀମନ୍ଦିରରେ ଦେଖିବାକୁ ମିଳେ। ପୁଣି ଉତ୍କଳର ପ୍ରତିଟି ଦେବପୀଠରେ ଶ୍ରୀଗୀତଗୋବିନ୍ଦ ବୋଲା ହେଲା। ସେଥିପାଇଁ ଶ୍ରୀଗୀତଗୋବିନ୍ଦ ଠିଆ ହୋଇ ବୋଲିଲେ ପ୍ରଭୁ ବସିକରି ଶୁଣନ୍ତି ଓ ବସିକରି ବୋଲିଲେ ସେ ଠିଆ ହୋଇ ଶୁଣିଥାନ୍ତି ବୋଲି ପ୍ରବାଦ ପ୍ରଚଳିତ ଅଛି। ଆଜି ବି ତାହା ବହୁ ସ୍ଥାନରେ ଅନୁସୃତ ହେଉଛି। ଓଡ଼ିଶା ବ୍ୟତୀତ ଅନ୍ୟ ରାଜ୍ୟ ସ୍ୱତନ୍ତ୍ର ଭାବେ ଦାକ୍ଷିଣାତ୍ୟରେ ଶ୍ରୀଗୀତଗୋବିନ୍ଦ ବୋଲିଲେ ଭଗବାନ ଶ୍ରୀକୃଷ୍ଣ ବିରାଜମାନ ହୁଅନ୍ତି ବୋଲି କଥା ଅଛି। ସେମାନଙ୍କର ପ୍ରତି ପରିବାରରେ ସକାଳ ଓ ସନ୍ଧ୍ୟାରେ ଶ୍ରୀଗୀତଗୋବିନ୍ଦ ଗାନ କରାଯାଇଥାଏ। ଏପରି ପରମ୍ପରା ସେଠାରେ ଆଜି ବି ରହିଛି।

### ଶ୍ରୀଗୀତଗୋବିନ୍ଦର ପ୍ରଭାବ

କଳିଙ୍ଗ ସମ୍ରାଟ୍‌ଙ୍କର ପାଟରାଣୀ ଓ ପଦ୍ମାବତୀଙ୍କର ମିତ୍ରତା ବେଶ୍ ରହିଥିଲା। ଏକତ୍ର ବସି ବିଭିନ୍ନ ସାଂସାରିକ ବିଷୟରେ ସେମାନେ ବେଳେବେଳେ ଆଲୋଚନା କରୁଥିଲେ। ଦିନେ ମହାରାଣୀ ତାଙ୍କ ଭାଇଙ୍କର ମୃତ୍ୟୁ ହୋଇଯାଇଥିବାର ସମ୍ବାଦ ପଦ୍ମାବତୀଙ୍କୁ କହିଥିଲେ। ପଦ୍ମାବତୀ ଏହାର ଉତ୍ତରରେ କହିଲେ ଯେ ଜଗତରେ ଜନ୍ମ ହେଲେ ମୃତ୍ୟୁ ହେବା ନିଶ୍ଚିତ। ଆପଣଙ୍କ ଭାଇଙ୍କର ଯେଉଁ ମୃତ୍ୟୁ ହେଲା ତାହା ଥିଲା ବିଧି ନିର୍ଦ୍ଦେଶ। ତେଣୁ ଏଥିରେ ଶୋକ କରିବା ଆଦୌ ଉଚିତ୍ ନୁହେଁ। ମହାରାଣୀଙ୍କୁ ପଦ୍ମାବତୀଙ୍କର କଥାଟା ବହୁ ବାଧିଲା। ପରଦିନ ପୁଣି ପଦ୍ମାବତୀ ମହାରାଣୀଙ୍କ ଉଆସକୁ ପୂର୍ବପରି ଆସିଥିଲେ। ସେତେବେଳେ ପଦ୍ମାବତୀଙ୍କୁ ମିଛରେ ମହାରାଣୀ ଖବର ଦେଲେ ଯେ ଜଙ୍ଗଲ ବାଟରେ ଆସୁଥିବା ବେଳେ ଜୟଦେବ ବାଘ ହାବୁଡ଼ରେ ପଡ଼ି ମୃତ୍ୟୁବରଣ କରିଛନ୍ତି। ଏପରି କଥାରେ ପଦ୍ମାବତୀ ଅଧିରା ହୋଇପଡ଼ିବା ସହ ତତ୍‌କ୍ଷଣାତ୍ ମୂର୍ଚ୍ଛିତ ହୋଇ ତଳେ ଲୋଟି ପଡ଼ିଲେ। ମହାରାଣୀ ଓ ଅନ୍ତପୁରର ନାରୀମାନେ ଏପରି ଦେଖି ବହୁ ବ୍ୟସ୍ତ ହେଲେ। ତୁରନ୍ତ ରାଜବୈଦ୍ୟଙ୍କୁ ଡକାଇ ପଦ୍ମାବତୀଙ୍କର ଚିକିତ୍ସା ଆରମ୍ଭ କରାଗଲା। ମହାରାଣୀଙ୍କର ପରିହାସ କଥାରେ ପଦ୍ମାବତୀଙ୍କର ଏପରି ଅବସ୍ଥା ହୋଇଥିବାରୁ ସେ ମଧ ଦୁଃଖରେ ଭାଙ୍ଗି ପଡ଼ିଲେ। ସେଦିନ ଶ୍ରୀଜୟଦେବ ଶ୍ରୀକ୍ଷେତ୍ର ପୁରୀରେ ନଥିଲେ। ମହାରାଣୀଙ୍କ ଆଦେଶରେ ରାଜ କର୍ମଚାରୀମାନେ ଶ୍ରୀଜୟଦେବଙ୍କୁ ଖୋଜି ତୁରନ୍ତ ଡକାଇ ଆଣିଲେ। ମହାରାଣୀ ବି ଯୋଡ଼ହସ୍ତରେ ନିଜର ଭୁଲ୍ ସ୍ୱୀକାର କରି ଶ୍ରୀଜୟଦେବଙ୍କ ନିକଟରେ କ୍ଷମା ମାଗି ଚାଲିଥିଲେ। ମାତ୍ର ମହାକବି ଏପରି କଥାରେ ଆଦୌ ବିଚଳିତ ନ ହୋଇ ପଦ୍ମାବତୀଙ୍କ ମୁହଁ ପାଖରେ ଶ୍ରୀଗୀତଗୋବିନ୍ଦର

ଶ୍ରୀତକମଳା....କୁ ପ୍ରାର୍ଥନା ବୋଲିବା ଆରମ୍ଭ କରିଦେଲେ । ସେହି ସ୍ୱର ସଙ୍ଗୀତରେ ପଦ୍ମାବତୀଙ୍କର ଚେତନା ଫେରିଆସିଲା । ସେ ଦେଖିଲେ ମହାରାଣୀ ତାଙ୍କ ପାଦ ପାଖରେ ବସି ନିଜର ଦୋଷ ପାଇଁ ଯୋଡ଼ହସ୍ତରେ କ୍ଷମା ମାଗୁଛନ୍ତି । ମହାରାଣୀଙ୍କୁ ଏପରି ନକରିବା ପାଇଁ ପଦ୍ମାବତୀ ଅନୁରୋଧ କରିଥିଲେ । ରାଜନଅରରେ ଉପସ୍ଥିତ ଥିବା ସମସ୍ତ କର୍ମଚାରୀ ଏଥିରେ ବିସ୍ମିତ ହୋଇଥିଲେ ।

### ତୁଳସୀପତ୍ରରେ ଶ୍ରୀଗୀତଗୋବିନ୍ଦ ଲେଖା

ପୁରୀରେ ଥିବା ବର୍ତ୍ତମାନର ଦଶାବତାର ମଠରେ ରହୁଥିଲେ ଶ୍ରୀଜୟଦେବ ଓ ପତ୍ନୀ ପଦ୍ମାବତୀ । ଦିନେ ପଦ୍ମାବତୀ ତୁଳସୀପତ୍ରରେ ସମ୍ପୂର୍ଣ୍ଣ ଶ୍ରୀଗୀତଗୋବିନ୍ଦର ପଦଗୁଡ଼ିକ ଲେଖି ମାଳା ରୂପରେ ତାହାକୁ ଶ୍ରୀଜଗନ୍ନାଥଙ୍କୁ ପିନ୍ଧାଇବା ନିମନ୍ତେ ମନରେ ସ୍ଥିର କଲେ । ସେଥିପାଇଁ ପରଦିନ ସେ ତୁଳସୀ ପତ୍ରଗୁଡ଼ିଏ ତୋଳି ଆଣିବା ସହ ଚନ୍ଦନ ଘୋରି ଗୋଟିଏ ପାତ୍ରରେ ରଖିଲେ । ସମୁଦାୟ ଶ୍ରୀଗୀତଗୋବିନ୍ଦକୁ ତୁଳସୀ ପତ୍ରରେ ଲେଖିବା ଥିଲା କଷ୍ଟ କାମ । ମାତ୍ର ଯେତେବେଳେ ସେପରି କଥା ତାଙ୍କ ମନକୁ ଆସିଛି ତାହାକୁ ନିଶ୍ଚିତ କରିବାକୁ ହିଁ ହେବ । ମାତ୍ର କିପରି ଲେଖିବେ ତାହା ତାଙ୍କର ଚିନ୍ତାର ବାହାରେ ରହିଥିଲା । ଭାବବିହ୍ୱଳ ହୋଇ ପଦ୍ମାବତୀ କେବଳ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ମଥାନତ କରି ନିଜର ଉଦ୍ଦେଶ୍ୟ ଜଣାଇଥିଲେ । ସେହି ଦିନର ସନ୍ଧ୍ୟାରେ ଦୁଇଜଣ ସାଧୁ ତାଙ୍କ ରହୁଥିବା ଘର ଆଡ଼କୁ ଆସୁଥିବାର ସେ ଦେଖିଲେ । ସାଧୁମାନଙ୍କୁ ଦେଖି ପଦ୍ମାବତୀ ନିଜ ମନକଥା ସେମାନଙ୍କୁ ଜଣାଇବାରୁ ସେ ଦୁଇଜଣ ସେପରି କାମ ପ୍ରଭାତ ପୂର୍ବରୁ ସାରିଦେବେ ବୋଲି ପଦ୍ମାଙ୍କୁ ନିଶ୍ଚିତ ପ୍ରତିଶ୍ରୁତି ଦେଲେ । ସାଧୁଦ୍ୱୟ ନିଜ ନିଜର ସନ୍ଧ୍ୟା କାର୍ଯ୍ୟ ସମାପନ ପରେ ଶ୍ରୀଗୀତଗୋବିନ୍ଦ ପଂକ୍ତିଗୁଡ଼ିକୁ ତୁଳସୀ ପତ୍ର ଉପରେ ଚନ୍ଦନ ଦେଇ ଲେଖା ଆରମ୍ଭ କରିଦେଲେ । ଲେଖା ସରିବା ପରେ ସେଗୁଡ଼ିକୁ ସଜାଇ କଦଳୀ ପଟୁକାରେ ସୁନ୍ଦର ମାଳଟିଏ ସୂର୍ଯ୍ୟୋଦୟ ପୂର୍ବରୁ ତିଆରି ହୋଇଗଲା । ପୂର୍ବଦିନରୁ ଶ୍ରୀଜୟଦେବ କୌଣସି ଦୂର ଗ୍ରାମକୁ ଯାଇଥିଲେ । ଏକାକୀ ପଦ୍ମାବତୀ ତୁଳସୀ ମାଳକୁ ନେଇ ଶ୍ରୀମନ୍ଦିର ଭିତରକୁ ଯାଇ ପାଳିଆ ସେବକଙ୍କୁ ପ୍ରଭୁଙ୍କୁ ତାହା ପିନ୍ଧାଇ ଦେବାକୁ ନିବେଦନ କଲେ । ମାତ୍ର ସେହି ସେବକ ତୁଳସୀ ପତ୍ର ଉପରେ କ'ଣ ଗୁଡ଼ାଏ ଲେଖାଯାଇଛି ନ ପଢ଼ି ତାହା ପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗିପାରିବ ନାହିଁ କହି ପଦ୍ମାଙ୍କୁ ଫେରାଇ ଦେଇଥିଲେ ।

ଅତି ଦୁଃଖରେ ପଦ୍ମାବତୀ ମାଳାଟିକୁ ସେବକଙ୍କଠାରୁ ଫେରାଇ ଆଣି ମହୋଦଧିର ଜଳରେ ଭସାଇ ଦେଇଥିଲେ । ମାତ୍ର ପରକ୍ଷଣରେ ଦେଖାଗଲା ଯେ ତୁଳସୀପତ୍ର ମାଳଟି ସମୁଦ୍ର ଜଳରୁ ହଠାତ୍ ଉଭାନ୍ ହୋଇଯାଇଛି । ପରେ ତାହା ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଶୋଭା ପାଉଥିବାର ଦେଖାଗଲା । ଏପରି ଘଟଣାରେ ପଦ୍ମାବତୀ ତଥା ସେବାୟତମାନେ ସ୍ତମ୍ଭୀଭୂତ ହୋଇଗଲେ । ମାଳା ଫେରାଇ ଦେଇଥିବା ସେବକଙ୍କୁ ଅନ୍ୟମାନେ ଧିକ୍କାର କଲେ । ଜଗତପତିଙ୍କର ଏପରି କରୁଣାରେ ପଦ୍ମାବତୀଙ୍କ ଆଖିରୁ ଅଶ୍ରୁର ଧାର ବହିଗଲା । ଶ୍ରୀଜୟଦେବ ଫେରିଆସି ସମସ୍ତ ଘଟଣା ଶୁଣି ବିସ୍ମିତ ହେଲେ ଏବଂ ସ୍ୱାମୀ ସ୍ତ୍ରୀ ମିଶି ପ୍ରଭୁଙ୍କ ଛାମୁରେ ଶ୍ରୀଗୀତଗୋବିନ୍ଦ ଗାଇଥିଲେ । ଗଜପତି ସମ୍ରାଟ୍ ଏପରି କଥା ଜାଣିବା ପରେ ସମ୍ପୃକ୍ତ ସେବକଙ୍କୁ ଦଣ୍ଡସ୍ୱରୂପ ସେବାନିବୃତ୍ତ କରିଦେଲେ ।

### ଶ୍ରୀଗୀତଗୋବିନ୍ଦଙ୍କୁ ଶ୍ରୀଜଗନ୍ନାଥଙ୍କ ସ୍ୱୀକୃତି

ଗଜପତି ପ୍ରତାପରୁଦ୍ର ଦେବଙ୍କର ରାଜତ୍ୱର ସମୟ । ଶ୍ରୀଗୀତଗୋବିନ୍ଦର ଅବିକଳ ରାଗ ଓ ଛନ୍ଦରେ ଗଜପତି ପୁରୁଷୋତ୍ତମଦେବଙ୍କ ନାମରେ ସମ୍ପାଦିତ 'ଅଭିନବ ଗୀତଗୋବିନ୍ଦ'କୁ ଶ୍ରୀଗୀତଗୋବିନ୍ଦ ସ୍ଥାନରେ ପ୍ରଚଳନ ପାଇଁ ଆଦେଶ ଦିଆଗଲା । ସେବାୟତମାନେ ଏଥିରେ ଭୟଭୀତ ହୋଇ ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହେଲେ । ଗଜପତିଙ୍କୁ ସ୍ୱପ୍ନାଦେଶ ହେଲା ହେ ରାଜା! ଶ୍ରୀଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ମୋର ଅତି ପ୍ରିୟ । ତା'ର ସୁଲଳିତ ଛନ୍ଦ ଓ ରାଗରେ ମୁଁ ଆକୃଷ୍ଟ ହୋଇଥାଏ । ଏଥିପାଇଁ ଗଜପତିଙ୍କର ମାନ ଭାଙ୍ଗିଗଲା । ନତମସ୍ତକରେ ସମ୍ରାଟ୍ ପ୍ରତାପରୁଦ୍ରଦେବ ଶ୍ରୀଜୟଦେବଙ୍କର ଜୟଗାନ କରି ପ୍ରଭୁଙ୍କ ସେବାରେ ଶ୍ରୀଗୀତଗୋବିନ୍ଦର ପୁନଃ ପ୍ରଚଳନ ପାଇଁ ଆଦେଶ ଦେଇଥିଲେ ।

### ଶ୍ରୀଗୀତଗୋବିନ୍ଦ ବସ୍ତ୍ର ଓ ଖଣ୍ଡୁଆ

ଶ୍ରୀଜୟଦେବ ନିଜ ଗ୍ରାମ କେନ୍ଦୁଳିର ବସ୍ତ୍ର ବୁଣାଳୀମାନଙ୍କଠାରୁ ଶ୍ରୀଗୀତଗୋବିନ୍ଦ ଶ୍ଳୋକାବଳୀ ରଚିତ ଖଣ୍ଡୁଆ ଉପହାର ପାଇଥିଲେ । ସେହି ଖଣ୍ଡୁଆଟିକୁ ସେ ନିଜର

ଅତି ପ୍ରିୟଭାବେ ରଖିଥିଲେ । ଦିନେ ରାତ୍ରିରେ ପ୍ରଭୁ ତାଙ୍କୁ ସ୍ୱପ୍ନରେ କହିଲେ ହେ ଭକ୍ତ ପ୍ରବର ! ତୁମ ପାଖରେ ଥିବା ଶ୍ରୀଗୀତଗୋବିନ୍ଦ ଖଣ୍ଡୁଆକୁ ମୋତେ ଦେଇଦିଅ । ରାତ୍ରୀରେ ଶ୍ରୀଗୀତଗୋବିନ୍ଦ ଗାନ ଓ ନୃତ୍ୟ ପରେ ବଡ଼ସିଂହାର ବେଶରେ ମୋ ଉପରେ ତାହା ଘୋଡ଼ାଇ ଦେବ । ଜଗତ୍‌ପତିଙ୍କର ଏ କି ଅଭିଳାଷ ? ପୂଜକମାନଙ୍କୁ ମଧ୍ୟ ଏହି ଆଦେଶ ପୂର୍ବରୁ ମିଳିଥିଲା । ସେହି କାଳରୁ ଏପରି ବିଧି ଆଜି ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ପ୍ରଚଳିତ ଅଛି । କେନ୍ଦୁଲି ଅଞ୍ଚଳରୁ ସ୍ୱତନ୍ତ୍ର ଭାବେ ନିର୍ମିତ ଶ୍ରୀଗୀତଗୋବିନ୍ଦର ଖଣ୍ଡୁଆ ଓ ଲୁଗା ଶ୍ରୀଜୀଉଙ୍କ ସେବା ନିମନ୍ତେ ପୂର୍ବରୁ ଯାଉଥିଲା । ଏବେ ତାହା ଅନ୍ୟ ସ୍ଥାନରୁ ଅଣାଯାଉଛି । ଶ୍ରୀଗୀତଗୋବିନ୍ଦ ଲିଖିତ ବସ୍ତ୍ର ତିନି ବିଗ୍ରହଙ୍କୁ ପିନ୍ଧାଇବା ସହ ସେମାନଙ୍କ ଉପରେ ସେପରି ଖଣ୍ଡୁଆ ଘୋଡ଼ାଇ ଦିଆଯାଇଥାଏ ।

### କୁଷ୍ଠରୋଗରୁ ମୁକ୍ତି

ଢେଙ୍କାନାଳ ଜିଲ୍ଲାର ଏକ କ୍ଷୁଦ୍ର ପଲ୍ଲୀ କୁଆଳୋରେ ଥିଲା ଏକ ଶିବମନ୍ଦିର । ପ୍ରତ୍ୟହ ସନ୍ଧ୍ୟାବେଳେ ଜଣେ କୁଷ୍ଠ ରୋଗୀଙ୍କୁ ତାଙ୍କର ଭାଇ ସେହି ମନ୍ଦିର ପାଖରେ ରୋଗମୁକ୍ତ ହେବା ଆଶାରେ ଧାରଣା ଦେବାପାଇଁ ଛାଡ଼ିଦେଇ ଆସନ୍ତି । ସେଠାରେ ଶ୍ରୀଗୀତଗୋବିନ୍ଦ ବୋଲି ରୋଗରୁ ମୁକ୍ତ ହେବା ହିଁ ଥିଲା ତାଙ୍କର ବିଶ୍ୱାସ । ସେହି କୁଷ୍ଠ ରୋଗୀଙ୍କର ସୁଲଳିତ କଣ୍ଠରେ ଶ୍ରୀଗୀତଗୋବିନ୍ଦ ଗାନ ଅତ୍ୟନ୍ତ ହୃଦୟସ୍ପର୍ଶୀ ଥିଲା । ଦିନେ କୌଣସି ଅଦୃଶ୍ୟ ଶକ୍ତିର ବଜ୍ର ନିର୍ଘୋଷ ଶବ୍ଦ ତାଙ୍କୁ ଶୁଣାଗଲା । ତାହା ଥିଲା ମନ୍ଦିର ପଶ୍ଚାତ୍‌ଭାଗରେ ବସି ଯିଏ ଶ୍ରୀଗୀତଗୋବିନ୍ଦ ଗାଉଛ ମନ୍ଦିର ସମ୍ମୁଖରେ ଆସି ତାହା ଗାନ କର । ଏପରି ଶବ୍ଦରେ ରୋଗୀ ଉତ୍ତର ଦେଲେ– ମୋ ଗୀତରେ ଯଦି କାହାର ଶ୍ରଦ୍ଧା ଥାଏ ତେବେ ସେ ମୋ ସମ୍ମୁଖରେ ଉପସ୍ଥିତ ହୁଅନ୍ତୁ । କାରଣ ମୋର ଚାଲିବାର ଶକ୍ତି ନାହିଁ । ଘୋର ଘର୍ଘର ଶବ୍ଦରେ ମନ୍ଦିରଟି ଆନ୍ଦୋଳିତ ହୋଇଉଠିଲା ଓ ମୁଖ୍ୟଦ୍ୱାରଟି ରୋଗୀଙ୍କ ସମ୍ମୁଖକୁ ଆସିଗଲା । ତାହାପରେ ରୋଗୀଙ୍କ ରୋଗର କୌଣସି ଚିହ୍ନ ଆଉ ତାଙ୍କ ଦେହରେ ଦେଖାଗଲା ନାହିଁ । (ଢେଙ୍କାନାଳ ଜିଲ୍ଲା କୁଆଳୋ ଗ୍ରାମରେ ଏହି ଘଟଣା ଘଟିଥିବାର ପ୍ରଶାସକ ସ୍ୱର୍ଗତ ବିମଳକୃଷ୍ଣ ମିଶ୍ରଙ୍କଠାରୁ ଶୁଣିଥିଲି । ତେବେ ଏପରି ଗଳ୍ପ ଅନ୍ୟ କେତୋଟି ଶିବ ମନ୍ଦିର ସହ ସମ୍ପୃକ୍ତ ଥିବା ଜଣାପଡ଼ିଛି ।)

### ଶ୍ରୀଗୀତଗୋବିନ୍ଦ ଓ ମୋଚି

ଦାର୍ଢ୍ୟତା ଭକ୍ତିରୁ ଜଣାଯାଏ ଯେ ଜଣେ ମୋଚି ତାଙ୍କ ଚର୍ମପାଦୁକା ଦୋକାନରେ ଏକ ଚିକ୍କଣ ପ୍ରସ୍ତର ଉପରେ ଚର୍ମ କଟା ଛୁରୀକୁ ଘଷି ପ୍ରତ୍ୟହ ଧାର କରିଥାନ୍ତି । ସେ ଥିଲେ ଅତ୍ୟନ୍ତ ଧର୍ମପରାୟଣ ଓ କୃଷ୍ଣ ଭକ୍ତ । କାମ କରୁଥିବା ବେଳେ ମଧୁର ସ୍ୱରରେ ଶ୍ରୀଗୀତଗୋବିନ୍ଦ ବୋଲି ସେ ତାଙ୍କ କାର୍ଯ୍ୟରେ ଲାଗୁଥିଲେ । ଥରେ ଜଣେ ବ୍ରାହ୍ମଣ ମୋଚିଙ୍କ ଦୋକାନକୁ ଚର୍ମପାଦୁକା କିଣିବା ପାଇଁ ଯାଇ ଦେଖନ୍ତି ଯେ ଧାର କରିବା ପଥରଟି ଚକ୍ର ଚିହ୍ନ ଶୋଭିତ ଏକ ଶାଳଗ୍ରାମ । ସେ ଶାଳଗ୍ରାମଙ୍କର ସେଠାରେ ଏପରି ଅପବ୍ୟବହାର ଦେଖି ମୋଚିଙ୍କଠାରୁ ନେଇ ଘରେ ରଖି ପୂଜା କଲେ । ମାତ୍ର ରାତ୍ରୀରେ ଶୋଇଥିବା ବେଳେ ସ୍ୱପ୍ନରେ ସେ ଦେଖିଲେ ଯେ ଜଣେ ଦେବପୁରୁଷ ତାଙ୍କୁ ନିର୍ଦ୍ଦେଶ ଦେଇ କହୁଛନ୍ତି ହେ ବ୍ରାହ୍ମଣ ! ଏହି ଶାଳଗ୍ରାମକୁ ନେଇ ମୋଚିଙ୍କ ଦୋକାନରେ ରଖିଦେଇ ଆସ ! ବ୍ରାହ୍ମଣ ମୋଚିଙ୍କୁ ସ୍ୱପ୍ନାଦେଶ ପାଇବା ବୃତ୍ତାନ୍ତ ଜଣାଇଲେ । ମୋଚି ସେହି ଶାଳଗ୍ରାମକୁ ନେଇ ଯଥୋଚିତ ପୂଜା ଅର୍ଚ୍ଚନା କରିବା ସହ ନିଜେ ପ୍ରତ୍ୟହ ଶ୍ରୀଗୀତଗୋବିନ୍ଦ ଗାଇ ଶୁଣାଉଥିଲେ ।

### ଯବନଙ୍କ ଭକ୍ତି

ଓଡ଼ିଶାରେ ଯବନ ରାଜତ୍ୱର ସମୟ । ଜଣେ ଯୁବା ଅଶ୍ୱାରୋହୀ ଭାବିଲେ ଯେ ଶ୍ରୀଗୀତଗୋବିନ୍ଦ ବୋଲାହେଲେ ସେଥିରେ ଆକୃଷ୍ଟ ହୋଇ କୁଆଡ଼େ ହିନ୍ଦୁ ଠାକୁର ଶ୍ରୀଜଗନ୍ନାଥ ପାଖକୁ ଆସିଯାଆନ୍ତି । ତେଣୁ ସେ ଘୋଡ଼ା ଉପରେ ବସି ଶ୍ରୀଗୀତଗୋବିନ୍ଦ ବୋଲିବାକୁ ଲାଗିଲେ । ତାଙ୍କର ସ୍ୱର ଥିଲା ଅତି ମଧୁର । ମାତ୍ର କାହାନ୍ତି ଶ୍ରୀଜଗନ୍ନାଥ ? ଯବନ ଯୁବକ ଭାବିଲେ ଯେ ବୋଧହୁଏ ସେ ଭିନ୍ନ ଧର୍ମର ଲୋକ ହୋଇଥିବାରୁ ଶ୍ରୀଜଗନ୍ନାଥ ତାଙ୍କ ପାଖକୁ ଆସୁନାହାନ୍ତି । ଏପରି ଭାବିବା ସମୟରେ ତାଙ୍କର ଗୀତ ସହ ତାଳଦେଇ ଭାସିଆସିଲା ବଂଶୀଧ୍ୱନି । କି ମଧୁର ଥିଲା ତାହାର ମୂର୍ଚ୍ଛନା ? ଘୋଡ଼ାର ଗତି ସହ ତାଳଦେଇ ବଂଶୀବାଦକ ସତେ ଅବା ତାଙ୍କ ସହ ଦୌଡ଼ି ଚାଲିଛନ୍ତି । ସ୍ତବ୍ଧ ହେଲେ ଯୁବକ । ଘୋଡ଼ା ଅଟକାଇ ସେ ଚତୁର୍ଦ୍ଦିଗକୁ ଚାହିଁଲେ । କାହିଁ, କାହାକୁ ତ ସେ ଦେଖୁ ନାହାନ୍ତି ! ପୁନର୍ବାର ଶ୍ରୀଗୀତଗୋବିନ୍ଦ ଗାଇଚାଲିଲେ । ପୁଣି ଭାସିଆସିଲା

ସେପରି ବଂଶୀ ଧ୍ୱନି । ଯବନ ଯୁବକ ନତଜାନୁ ହୋଇ ସେହି ଅଦୃଶ୍ୟ ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ଶତସହସ୍ର ପ୍ରଣାମ ଜଣାଇ ନିଜର ଗନ୍ତବ୍ୟ ପଥରେ ଆଗେଇ ଗଲେ ।

## ଅନୁଭୂତିରେ ଶ୍ରୀଗୀତଗୋବିନ୍ଦ

ଗତବର୍ଷର କଥା । ସେଦିନ ଥିଲା ଫଗୁଣ ମାସର ଶୁକ୍ଳ ଦ୍ୱାଦଶୀ ତିଥି । କଟକ ବଡ଼ ମେଡ଼ିକାଲରେ ଚିକିତ୍ସିତ ହେଉଥିବା ନିଜ ପିଉସୀଙ୍କୁ ଦେଖି ଗ୍ରାମକୁ ଫେରୁଥିଲେ ଯୁବ ଦମ୍ପତି ରମାକାନ୍ତ ଓ ରେବତୀ । କଟକରୁ ବାହାରିବା ବେଳକୁ ସେମାନଙ୍କୁ ସେହି ରୁଟ୍‌ରେ ଯାଉଥିବା ଶେଷ ବସ୍‌କୁ ଅପେକ୍ଷା କରିବାକୁ ପଡ଼ିଥିଲା । ବସ୍ ଆସି ପହଞ୍ଚିଲାବେଳକୁ ବେଳଟିକେ ଅଧିକା ଗଡ଼ିଗଲା । ପୁଣି ବସ୍ ଚାଲିଲା ବେଳକୁ କାହୁଁ କୁଆଡୁ ଆକାଶରେ ଘୋଟି ଆସିଲା ଅଦିନିଆ ମେଘ । ଫଗୁଣ ମାସର ଅଦିନିଆ ମେଘକୁ ପବନ ବି ଜୋର୍‌ରେ ବହି ଚାଲୁଥିଲା । ବସ୍‌ରେ ବସିଥିବା ଯାତ୍ରୀମାନେ ଏଥିରେ ଆତଙ୍କିତ ହୋଇଉଠିଲେ । ତେବେ ବର୍ଷା ଓ ପବନର ବେଗ ଧୀରେ ଧୀରେ କମିଗଲେ ବି ରଣିଫୁଲ ଭଳି ବିଛେଇ ହୋଇ ପଡ଼ିଥିବା ଚନ୍ଦ୍ରକିରଣ ଆଉ ଦେଖାଗଲା ନାହିଁ । ବର୍ଷା କମିଥିଲେ ବି ଆକାଶରେ ଭାସୁଥିବା ବଉଦଗୁଡ଼ାକ ଛାଇ ହୋଇ ରହିଥିଲା । ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ଯାତ୍ରୀମାନେ ଓହ୍ଲାଇବା ପାଇଁ ବସ୍ ରହୁଥିଲା ଓ ସେଥିରୁ ଓହ୍ଲାଇ ଯିଏ ଯାହାର ଗନ୍ତବ୍ୟ ସ୍ଥଳକୁ ଚାଲିଯାଉଥିଲେ । ଯୁବ ଦମ୍ପତିଙ୍କ ଓହ୍ଲାଇବାର ବଜାର ବି ଆସିଗଲା । ହେଲ୍‌ପର ଡାକରେ ଅଧା ଘୁମାଉଥିବା ଦୁହେଁ ଉଠି ଓହ୍ଲାଇଗଲେ ଓ ବସ୍ ପୁଣି ତାହା ବାଟରେ ଚାଲିଲା । ଓହ୍ଲାଇବା ସ୍ଥାନଟା ବଜାର ନ ହେଲେ ବି ସେଠାରେ ଥିଲା ଯୋଡ଼ାଏ ଟିଣ ବାଡ଼ିଆ କ୍ୟାବିନ ସହ ଗୋଟାଏ ମାଟି କାନ୍ଥ ଥିବା ଚାଳଘର । ବର୍ଷା ଓ ପବନ ସହ ରାତି ଅଧିକ ହୋଇଯିବାରୁ ସେସବୁକୁ ବନ୍ଦ କରି ଲୋକେ ସେତେବେଳକୁ ଚାଲିଯାଇଥିଲେ । କେବଳ ଏହି ଦୁଇଜଣଙ୍କ ବ୍ୟତୀତ ତୃତୀୟ ବ୍ୟକ୍ତି ସେଠାରେ ଆଉ କେହି ନଥିଲେ । ଏପରି ଦେଖି କ'ଣ କରିବେ ଚିନ୍ତା ବି ସେମାନଙ୍କର ମୁଣ୍ଡକୁ ଜୁଟୁ ନଥିଲା । ସେଠାରୁ ତାଙ୍କ ଗ୍ରାମର ଦୂରତା ଥିଲା ପ୍ରାୟ ୪ କିଲୋମିଟର ଜଙ୍ଗଲିଆ ରାସ୍ତା । ରାସ୍ତାରେ କେହି ବଦ୍‌ମାସ ବା ହିଂସ୍ରଜନ୍ତୁଙ୍କ ହାବୁଡ଼ରେ ପଡ଼ିଗଲେ କଥା ସରିଲା । ରାତ୍ରୀସାରା ଉଜାଗର ରହି ସେମାନେ କେଉଁଠି ବା ବସିବେ ? ପବନ ମାଡ଼ରେ ସେଠାରେ ଥିବା ଛଣ ଛପର ଚାଳଟା ବି ସେତେବେଳକୁ ଉଡ଼ି ଯାଇଥିଲା । ରମାକାନ୍ତ ଓ ରେବତୀ ଦୁହିଁଙ୍କର ହୋଇଥିଲା ପ୍ରେମ ବିବାହ । ଉଭୟେ ଭୁବନେଶ୍ୱର ସଙ୍ଗୀତ ମହାବିଦ୍ୟାଳୟରେ ସଙ୍ଗୀତ ଓ ନୃତ୍ୟ ଶିକ୍ଷା କରି ଭଲ ଡିଭିଜନରେ ପାଶ୍ ବି କରିଥିଲେ । ଯୁବକଟି ଓଡ଼ିଶୀ ସଙ୍ଗୀତ ଗାନରେ ନିପୁଣ ଥିବାବେଳେ ଯୁବତୀଟି ଥିଲେ ନୃତ୍ୟ ପ୍ରବୀଣା । ମହାବିଦ୍ୟାଳୟରୁ କୃତିତ୍ୱର ସହିତ ପାସ୍ କଲାପରେ ପ୍ରଥମେ କୌଣସିଠାରେ ନିଯୁକ୍ତି ନପାଇ ନିଜ ଗାଁରେ ଆସି ସେମାନେ ରହିଥିଲେ । ତେବେ ଉଭୟେ ପରିବାରର ଠାକୁର ଘରେ କେଉଁ କାଳରୁ ପୂଜା ପାଇ ଆସୁଥିବା ଶ୍ରୀଜଗନ୍ନାଥଙ୍କ ବିଗ୍ରହ ସେବାରେ ଆଦୌ ଉଣା କରୁ ନଥିଲେ । ଆଗରୁ ପରିବାରର ମୁରବୀମାନେ ଯେପରି ପୂଜା କରିଆସୁଥିଲେ ଏ ଦୁହିଁଙ୍କ ଆସିବାରେ ତାହା ବହୁତ ବଢ଼ି ଯାଇଥିଲା । ସ୍ୱାମୀ ରମାକାନ୍ତ ପ୍ରତ୍ୟହ ସନ୍ଧ୍ୟାରେ ଶ୍ରୀଗୀତଗୋବିନ୍ଦ ବୋଲୁଥିବା ବେଳେ ରେବତୀ ମଧ୍ୟ ଗୀତ ସହିତ ତାଳ ଦେଇ ନାଚି ଉଠୁଥିଲେ । ଏପରି ପୂଜାର ଆସର ବି ଛୋଟ ଗାଁଟିରେ ବେଶ୍ ଜମି ଉଠିଥିଲା । ପାଖ ପଡ଼ୋଶୀ ଓ ଗାଁର କେତେକ ବୟସ୍କ ସନ୍ଧ୍ୟାବେଳର ଆରତୀ ଦେଖିବା ପାଇଁ ସେଠାରେ ଆସି ପହଞ୍ଚି ଯାଉଥିଲେ । ଛୋଟ ବୟସର ପିଲାମାନେ ବି ଗୀତ ସହିତ ତାଳ ଦେଇ ମୁଖସ୍ଥ କରିଥିବା ଶ୍ରୀଗୀତଗୋବିନ୍ଦର ପଦଗୁଡ଼ିକୁ ସେମାନଙ୍କ ସହ ବୋଲୁଥିଲେ । ଶ୍ରୀଗୀତଗୋବିନ୍ଦର ଶ୍ରୀତକମଳା କୁଚମଣ୍ଡଳ ବୋଲୁଥିବା ବେଳେ ସେହି ସ୍ୱର ଝଙ୍କାରରେ ସେଠାରେ ଉପସ୍ଥିତ ଥିବା ଲୋକେ ଭାବବିହ୍ୱଳ ହୋଇ ଉଠୁଥିଲେ । କେତେକଙ୍କ ଆଖିରୁ ବି ଝରି ଆସୁଥିଲା ଲୁହ । ଏପରି ବୋଲିଲା ବେଳେ ସନ୍ଧ୍ୟା ଆରତୀର ଆଲୋକରେ ଚକାନୟନଙ୍କ ବିଗ୍ରହଟା ବେଶ୍ ଝଲସି ଉଠୁଥିଲା । ଆଉ ମନେ ହେଉଥିଲା ସତେବା ପ୍ରଭୁ ଭକ୍ତମାନଙ୍କ ଗହଣରେ ରହି ହସି ଉଠୁଥିଲେ । ଏହିଭଳି ସେମାନଙ୍କର କଟିଯାଉଥିଲା ପ୍ରତିଦିନର ସନ୍ଧ୍ୟା । ତେବେ ସେ ଦୁହେଁ ସେଦିନ କଟକ ଆସିଯାଇଥିବାରୁ ପୂଜା ଘରେ ହେଉଥିବା ଶ୍ରୀଗୀତଗୋବିନ୍ଦର ସଙ୍ଗୀତ ଓ ନୃତ୍ୟର ଆସର ଜମି ନଥିଲା । ପ୍ରତ୍ୟେକ ସନ୍ଧ୍ୟାରେ ଆସୁଥିବା ଭକ୍ତମାନେ ସେଦିନ ନିରାଶ ହୋଇ ଫେରିଯିବା ସହ ଚାହିଁ ରହିଥିଲେ ସେମାନଙ୍କର ଆସିବାକୁ । ଗ୍ରାମରେ ଏପରି ପରିବେଶ ସୃଷ୍ଟି ହୋଇଯାଇଥିଲା ଯେ ଶ୍ରୀଗୀତଗୋବିନ୍ଦ

ନଶୁଣିଲେ ରାତ୍ରୀରେ କେହି ଅନ୍ନଜଳ ଗ୍ରହଣ ବି କରୁ ନଥିଲେ। ଏଣେ ରାସ୍ତାକଡ଼ର ଅନ୍ଧାର ଭିତରେ ଦମ୍ପତି ଦୁଇଜଣ ଗୋଟାଏ ଟିଣ କ୍ୟାବିନ ପଛରେ ଠିଆ ହୋଇ ରହିଥିଲେ। ମେଘୁଆ ପାଗର ଶୀତରେ ଦେହ ବି ସେମାନଙ୍କର ଥରି ଉଠୁଥିଲା। ଅପେକ୍ଷା ଥିଲା କେହି ଯଦି ଗ୍ରାମର ଜଣାଶୁଣା ଲୋକଙ୍କ ସହିତ ଭେଟ ହୋଇଗଲା ତେବେ ସେମାନଙ୍କ ସାଥୀରେ ସହଜରେ ଗ୍ରାମକୁ ଚାଲିଯାଇପାରିବେ। ରାତ୍ରୀ କ୍ରମଶଃ ବଢ଼ିଲେ ମଧ୍ୟ ସେପରି କେହି ଆସିବାର ଦେଖାଗଲା ନାହିଁ। ପୁଣି ରାତ୍ରୀ ଯେତିକି ବଢୁଥାଏ ସେମାନଙ୍କର ମନରେ ଭୟ ବି ସେତିକି ଜମି ଆସୁଥିଲା। ତେବେ ପାହାନ୍ତାକୁ ଅପେକ୍ଷା କରିବା ବ୍ୟତୀତ ସେମାନଙ୍କ ପାଇଁ ଆଉ କୌଣସି ଉପାୟ ନଥିଲା। ଆକାଶରେ ଢାଙ୍କି ଯାଇଥିବା ମେଘ କ୍ରମଶଃ ଚାଲିଯାଇ ପୁଣି ଚନ୍ଦ୍ରକିରଣ ଖେଳିଗଲା। ବସନ୍ତର ମନ ମତାଣିଆ ପବନରେ ବି ଦେହ ଶୀତେଇ ଉଠୁଥିଲା। ସେତେବେଳକୁ ହୋଇଯାଇଥିଲା ରାତ୍ରି ପ୍ରାୟ ବାରଟା ଉପରେ। ସେପରି ସମୟରେ ଦେଖାଗଲା ଶ୍ୟାମଳ ବର୍ଣ୍ଣର ଲଉଡ଼ି ଖେଳି ଆସୁଥିବା ବାଳକ ଦଳଙ୍କୁ । ସେମାନଙ୍କର ବୟସ ଅତି ବେଶିରେ ଥିଲା ୧୫ ଓ ସଂଖ୍ୟା ୯। ସମସ୍ତେ ଏକ ପ୍ରକାରର ଚିତ୍ରିତ ପୋଷାକରେ ସୁସଜ୍ଜିତ ହୋଇଥିବାରୁ ବେଶ୍ ସୁନ୍ଦର ଦେଖାଯାଉଥିଲେ। ସେମାନଙ୍କର ମଧ୍ୟରୁ ମୁଣ୍ଡରେ ମୟୂର ଚନ୍ଦ୍ରିକା ଖୋସି ନାଚୁଥିବା ପିଲାଟି କୃଷ୍ଣ ରୂପରେ ନିଜକୁ ସଜେଇ ଦେଇଥିଲା। ସେ ଥିଲା ସମସ୍ତଙ୍କଠାରୁ ବହୁ ସୁନ୍ଦର। ବସନ୍ତ ପବନ ପରଶରେ ତାହାର ମୁଣ୍ଡଖୋଷା ବାଙ୍କ ମୟୂର ଚୂଳଟା ବେଳେବେଳେ ହଲି ତାକୁ ବେଶ୍ ମାନୁଥିଲା। ଏପରି ସୁନ୍ଦର ଗଢ଼ଣର ଛୋଟପିଲା ସେମାନେ ଆଗରୁ କେବେ ଦେଖିଥିବା ମନେ ହେଉ ନଥିଲା। ପୁଣି ଗଳାରୁ ଆଣ୍ଠୁ ପର୍ଯ୍ୟନ୍ତ ତାହାର ଲମ୍ବି ଯାଇଥିଲା ବହୁ ଜାତିର ଫୁଲମାଳ। ବାଳକ ଦଳ ସେହି ଦୁଇଜଣ ଠିଆ ହୋଇଥିବା କ୍ୟାବିନ ପାଖରେ ପହଞ୍ଚି ସେମାନଙ୍କର ଅବସ୍ଥା ସମ୍ପର୍କରେ ପଚାରି ବୁଝିଲେ। କୃଷ୍ଣ ରୂପରେ ସଜେଇ ହୋଇଥିବା ପିଲାଟି କହିଲା ଆମେ ତୁମ ଗ୍ରାମକୁ ଲାଗି ରହିଥିବା ଗୋପାଳ ବସ୍ତିକୁ ଲଉଡ଼ି ଖେଳିବାକୁ ଯାଉଛୁ। ଆଉ ସେଠାରେ ଦୋଳପୂର୍ଣ୍ଣମୀ ପର୍ଯ୍ୟନ୍ତ ବି ରହିବୁ। ତୁମେ ଦୁହେଁ ଆମ ସହିତ ଚାଲ। ବାଟଯାକ ଏକାଠି ଗୀତ ନାଚ କରି ଚାଲିଲେ ପଥଶ୍ରମ ଜଣାପଡ଼ିବ ନାହିଁ। ତୁମେ ଦୁହେଁ ଭଲଭାବରେ କୁଆଡ଼େ ଶ୍ରୀଗୀତଗୋବିନ୍ଦ ବୋଲିବା ସହ ନାଚ ବି ଜାଣିଛ ପରା ? ଲଉଡ଼ି ଖେଳ ଗୀତ ନ ବୋଲି ତୁମେ ଶ୍ରୀଗୀତଗୋବିନ୍ଦ ବୋଲିବା ସହ ଭଉଣୀଟା ବି ତାଳ ଦେଇ ଆମ ସହ ଭଲ ନାଚ କରିପାରିବ। ରମାକାନ୍ତ କହିଲେ ଯେ ଶ୍ରୀଗୀତଗୋବିନ୍ଦ ବୋଲିଲେ ତ ବାଦ୍ୟଯନ୍ତ୍ରର ଆବଶ୍ୟକତା ଥାଏ। ଏଠାରେ କାହୁଁ ବା ତାହା ମିଳିବ ? ତେଣୁ ବିନା ବାଦ୍ୟ ନାଦରେ କିପରି ଗୀତ ଓ ନାଚ ହୋଇପାରିବ ବୋଲି ପଚାରିବାରୁ ଉତ୍ତର ମିଳିଲା ଯେ ଲଉଡ଼ି ଖେଳର ଦୁଇ କାଠିରେ ବି ବେଶ୍ ଗୀତ ଓ ନାଚର ଆସର ଜମିଉଠିବ। ଆମେ ବି ତୁମ ଗୀତସହ ଠିକ୍ ତାଳ ଦେଇ ନାଚିପାରିବୁ। ଆମମାନଙ୍କ ଭଳି ଶ୍ରୀଗୀତଗୋବିନ୍ଦ ବୋଲିବା ସହ ତାଳରେ କେହି ବି ନାଚି ପାରିବେ ନାହିଁ। କଥାଟା ଦୁହିଁଙ୍କ ମନକୁ ବେଶ୍ ପାଇଗଲା। ପୁଣି ଏତେଗୁଡ଼ିଏ ଅଳ୍ପ ବୟସର ପିଲା ଏକାଠି ହୋଇ ଗାଁ ଆଡ଼କୁ ଯାଉଥିବାରୁ ସେ ଦୁହିଁଙ୍କ ମନରୁ ଭୟ ବି ଚାଲିଗଲା। ସେତେବେଳକୁ ଚାରିଆଡ଼େ ପୂରା ଜହ୍ନର ଆଲୁଅ ବିଛାଡ଼ି ହୋଇ ପଡ଼ି ସାରିଥିଲା। ଶୀତୁଆ ପବନ ସହ ସେମାନଙ୍କର ନାଚ ଓ ଗୀତର ଆସର ଯିବା ରାସ୍ତାରେ ବେଶ୍ ଜମିଉଠିଲା। ବେଳେବେଳେ ସେମାନଙ୍କ ମଧ୍ୟରୁ କେହି ଶିଙ୍ଗା ବଜାଇ ଦେଉଥିଲା। ଶ୍ରୀକୃଷ୍ଣ ବେଶରେ ସଜେଇ ହୋଇଥିବା ପିଲାଟି ତାହାର ଅଣ୍ଟାରେ ବଂଶୀଟାଏ ଖୋସିଥିଲେ ବି ସ୍ୱରଟା କେଉଁଠାରୁ ଭାସି ଆସୁଥିଲା ତାହା ଜାଣି ହେଉନଥିଲା। ପିଲାଦଳଙ୍କ କାଠିରେ କାଠିର ମାଡ଼ ସହ ଅଣ୍ଟାରେ ବନ୍ଧାଥିବା ଘାଗୁଡ଼ିର ଶବ୍ଦ ଓ ନାଚିବାର ପାଦ ଚାଳନା ଥିଲା ବେଶ୍ ମନୋମୁଗ୍ଧକର। ରମାକାନ୍ତ ଓ ରେବତୀଙ୍କ ସଙ୍ଗୀତ ଓ ନୃତ୍ୟ ସାଧନାଠାରୁ ତାହା ଥିଲା ବହୁ ଉଚ୍ଚରେ। ଏପରି ନୃତ୍ୟ କେବେହେଲେ ସେମାନେ ଆଗରୁ ଦେଖି ନଥିଲେ। ଏପରିକି ଶ୍ରୀଗୀତଗୋବିନ୍ଦର ଅପୂର୍ବ ସ୍ୱର ପ୍ରତ୍ୟେକଙ୍କ କଣ୍ଠରୁ ବି ବେଶ୍ ଚମତ୍କାର ସ୍ୱରରେ ବାହାରି ଆସୁଥିଲା। ସେମାନଙ୍କ ଯାଉଥିବା ବାଟରେ କାହୁଁ ଭାସି ଆସୁଥିଲା ମୃଗମଦ କସ୍ତୁରୀର ସୁବାସିତ ଗନ୍ଧ ସହିତ ରାଶି ରାଶି ଫୁଲର ଅପୂର୍ବ ମହକ। ବଣରୁ କୋଇଲିର କୁହୁନାଦ ବି ପରିବେଶକୁ ବେଶ୍ ଗମ୍ଭୀର କରିଦେଉଥିଲା।

ଏପରି ନାଚି ଗାଇ ସେହି ପିଲାଦଳଙ୍କ ସହ ଯୁବ ଦମ୍ପତି ନିଜ ଗ୍ରାମ ଭିତରେ ପହଞ୍ଚିଗଲେ। ଆଉ ସେହି ପିଲାଦଳ ବି

ସେମାନଙ୍କ ଗାଁ ଦାଣ୍ଡରେ ନାଚି ନାଚି ପାଖ ପଡ଼ୋଶୀ ଗୋପାଳ ବସ୍ତିକୁ ଚାଲିଗଲେ। ନାଚ ଗୀତ ଶୁଣି ଗାଁ ଲୋକମାନେ ବି ଘର ଭିତରୁ ପଦାକୁ ଆସି ସେମାନଙ୍କୁ ଦେଖୁଥିଲେ। ପରଦିନ ପାଖ ଗାଁରେ ପହଞ୍ଚି ବୁଝାଗଲା ଯେ ସେପରି କୌଣସି ଗୋପାଳ ପିଲାଙ୍କ ଓଗାଳ ଦଳ ସେଠାକୁ ଯାଇନାହାନ୍ତି। ଅନ୍ୟ ପାଖର ଗାଁମାନଙ୍କରେ ବି ସନ୍ଧାନ ନିଆଗଲା। ମାତ୍ର କୌଣସିଠାରୁ ସେମାନଙ୍କୁ ଦେଖିଥିବାର ଖବର କେହି ଦେଇନଥିଲେ। ହତବାକ୍ ଯୁବଦମ୍ପତିଙ୍କ ସହ ଗ୍ରାମବାସୀମାନେ ଏଥିରେ ସ୍ତମ୍ଭୀଭୂତ ହୋଇପଡ଼ିଲେ। କେବଳ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପାଖରେ ହାତଯୋଡ଼ି ଅଶ୍ରୁ ଗଡ଼ାଇବା ବ୍ୟତୀତ ସେମାନଙ୍କର ଆଉ କିଛି ଉପାୟ ନଥିଲା। ତେଣେ ଗାଁର ତ୍ରିନାଥ ଠାକୁରଙ୍କ ମଣ୍ଡପ ଉପରେ ଆୟୋଜିତ ସନ୍ଧ୍ୟା ମେଳାର ଖଞ୍ଜଣି ତାଳରେ ସମବେତ ସ୍ୱର ଭାସି ଆସୁଥିଲା–

ମନ ପାରାରେ,

କାହାକୁ କେବେ ସେ ଦିଏ କି ଧରା।

(ଗ୍ରାମଟି ଥିଲା ଭୁବନେଶ୍ୱର ସହରର ନିକଟବର୍ତ୍ତୀ। ଦୁଇଜଣ ଗ୍ରାମବାସୀଙ୍କ ସହ ଯୁବ ଦମ୍ପତି ଏହିକଥା ଶୁଣାଇବା ବେଳେ ସେମାନଙ୍କ ଚକ୍ଷୁଦ୍ୱୟରୁ ଧାର ଧାର ଅଶ୍ରୁ ଗଡ଼ିଯାଉଥିଲା। ବାଷ୍ପରୁଦ୍ଧ କଣ୍ଠରେ ସେମାନେ ହାତଯୋଡ଼ି ସେହି ଅଦୃଶ୍ୟ ସ୍ରଷ୍ଟାଙ୍କ ପ୍ରତି କେବଳ ଭକ୍ତି ପ୍ରଣାମ ଜଣାଉଥିଲେ। ଶୁଣୁଥିବା ଲୋକଙ୍କ ଆଖିରେ ବି ଲୁହ ଜକେଇ ଆସୁଥିଲା। ନିଜ ନାମ ସହ ଠିକଣା ପ୍ରକାଶ ନ କରିବାକୁ ସେମାନେ ବାରମ୍ବାର ଅନୁରୋଧ କରିଥିଲେ। ଉପରେ ଦେଇଥିବା ନାମ ଦୁଇଟିକୁ କେବଳ ଛଦ୍ମରେ ସୂଚାଇ ଦିଆଯାଇଛି)

**ଶ୍ରୀଗୀତଗୋବିନ୍ଦ ପ୍ରିୟ ଶ୍ରୀଜଗନ୍ନାଥ**

କାଳିଆରେ ! ପ୍ରତିଦିନର ସନ୍ଧ୍ୟାରେ ତୋତେ ଶ୍ରୀଗୀତଗୋବିନ୍ଦ ବୋଲି କେତେ ଶୁଣାଇଛି। ଲୋକମାନଙ୍କଠାରୁ ଶୁଣେ ଶ୍ରୀଗୀତଗୋବିନ୍ଦ ଶୁଣିବା ପାଇଁ ତୁ କୁଆଡ଼େ ମାଲ୍ୟାଣୀ ବୁଢ଼ୀର ପଛରେ ଗୋଡ଼ାଉଥିଲୁ ? ବଡ଼ଦେଉଳରେ ଶ୍ରୀଗୀତଗୋବିନ୍ଦ ଲେଖାଥିବା ଲୁଗା ଆଉ ଖଣ୍ଡୁଆପାଟ ତୋତେ ସବୁଦିନ ପିନ୍ଧାଇ ଦିଆଯାଏ। ମୁଁ ବି ମୋ ଘରେ ତୋତେ ସବୁଦିନ ସେପରି ବେଶ କରେ। ଖୁସି କରିବା ପାଇଁ ମୁଁ ପ୍ରତିଦିନ ତୋତେ କେତେ ସଜାଏରେ କାଳିଆ। ମୁଁ ଏବେ ଏତେ ଦୁଃଖରେ ପଡ଼ିଛି। ପୁଅ ମୋର ଡାକ୍ତରଖାନାରେ ମରଣ ସହ ଲଢୁଛି। ମୁଣ୍ଡ ଅପରେସନ ପାଇଁ ଟଙ୍କା ଦରକାର। ମୋତେ ଏତେ ଟଙ୍କା ଦେବ କିଏରେ ? ମୋର ଦେବା ଲୋକକୁ ତ ଅକାଳରେ ନେଇଗଲୁ। ତୁ ମୋର ସବୁ ବୋଲି ନିଜକୁ ବି ତୋ ପାଖରେ ସମର୍ପି ଦେଇଥିଲି। ଶେଷରେ ଏପରି କ'ଣ କଲୁ ? ପୁଅଟିକୁ ହରାଇଦେଲେ ମୋର ଆଉ କିଏ ଅଛିରେ କାଳିଆ ? ତୋର କାନ ନାହିଁ। ଗୀତଗୋବିନ୍ଦ ଶୁଣୁଛୁ କେମିତି ? ମାତ୍ର ଡାକିବା ବେଳକୁ ତ ଶୁଣୁନାହୁଁ। ତେବେ ବଡ଼ ବଡ଼ ଚକାଆଖିରେ କ'ଣ ଦେଖୁଛୁରେ କାଳିଆ। ନେ ତୋ ଗୀତଗୋବିନ୍ଦ ବହି। ମୁଁ ଡାକ୍ତରଖାନା ଚାଲିଲି। ପୁଅ ବଞ୍ଚିଲେ ଫେରିବି ନଚେତ୍ ନାହିଁ। ଏପରି କହି ଶ୍ରୀଗୀତଗୋବିନ୍ଦ ବହିକୁ ଠାକୁରଙ୍କ ପାଖରେ ଥୋଇ ଦେଇ ଘର ବନ୍ଦ କରି ବୃଦ୍ଧା ଚାଲି ଆସିଲେ। ଲକ୍ଷ୍ୟ ଥିଲା ଡାକ୍ତରଖାନାରେ କୋମାରେ ରହିଥିବା ନିଜର ଛୋଟ ପୁଅ ପାଖରେ କିପରି ଚଞ୍ଚଳ ପହଞ୍ଚି ଯାଇପାରିବେ।

ଏହାଥିଲା ଭୁବନେଶ୍ୱରର ଜଣେ ବିଧବାଙ୍କର କରୁଣ ବିଳାପ। ସଚିବାଳୟରେ ଚାକିରି କରୁଥିବା ତାଙ୍କ ସ୍ୱାମୀଙ୍କର କ୍ୟାନସର ରୋଗରେ ମୃତ୍ୟୁ ହୋଇଯିବା ପରେ ନିଜର ସ୍ୱଳ୍ପ ଯୋଗ୍ୟତାକୁ ନେଇ ଥଇଥାନରେ ସେ ପାଇଥିଲେ ଏକ ଛୋଟ ଚାକିରି। ପରିବାର କହିଲେ ନିଜର ଏକମାତ୍ର ୧୩ବର୍ଷର ପୁଅ ଦିବ୍ୟଶଙ୍କର। ସେତେବେଳର କ୍ୟାପିଟାଲ ହାଇସ୍କୁଲରେ ସେ ଥିଲା ଅଷ୍ଟମ ଶ୍ରେଣୀର ଛାତ୍ର। ଝିଅଟି ବିବାହ ହେବାପରେ ଇଂଜିନିୟର ସ୍ୱାମୀଙ୍କ ସହ ଖଡ଼ଗପୁରରେ ରହୁଥିଲା। ଭୁବନେଶ୍ୱରରେ ନିଜର ଜମି ବା ଘର ନଥିଲା। କେବଳ ଛୋଟ ସରକାରୀ ଘରଟି ହିଁ ଥିଲା ତାଙ୍କ ଆଶ୍ରୟସ୍ଥଳ। ପୁଅ ଦିବ୍ୟଶଙ୍କର ସାଙ୍ଗସାଥୀମାନଙ୍କ ସହିତ ଖେଳି ବୁଲି ତାହାର ସମୟ କଟାଇ ଦେଉଥିଲେ ବି ପାଠପଢ଼ା ପ୍ରତି ତାହାର ନଜର ଆଦୌ ହଟି ଯାଇ ନଥିଲା। ଘଟଣାଟି ଘଟିଥିଲା ଗ୍ରୀଷ୍ମ କାଳରେ। ପାଚିଲା ଆମ୍ବ ତୋଳିବା ପାଇଁ ପିଲାଟି ନିଜ ସାଙ୍ଗମାନଙ୍କ ଇଙ୍ଗିତରେ ଗଛ ଚଢୁଥିବାବେଳେ ଡାଳ ଭାଙ୍ଗିଯିବାରୁ ତଳେ ଖସିପଡ଼ିଲା। ତଳେ ଥିବା ପଥର ଚଟାଣ ଉପରେ ପଡ଼ିଯିବାରୁ ତାହାର ମୁଣ୍ଡରେ ଆଘାତ ଲାଗିବା ସହ ଗୋଡ଼ଟି ବି ଭାଙ୍ଗି ଯାଇଥିଲା। ପିଲାଟିକୁ ବେହୋସ ଅବସ୍ଥାରେ କ୍ୟାପିଟାଲ ହସ୍ପିଟାଲରେ ଆଣି

ଭର୍ତ୍ତି କରିଦିଆଗଲା । ଅବସ୍ଥାରେ କୌଣସି ଉନ୍ନତି ନ ହେବାରୁ ପିଲାଟିକୁ କଟକ ବଡ଼ ଡାକ୍ତରଖାନା ନେବାକୁ ଡାକ୍ତରମାନେ ପରାମର୍ଶ ଦେଲେ । ଘଟଣାଟି ମୁହୂର୍ତ୍ତକ ମଧ୍ୟରେ ତା'ର ମା'ଙ୍କ ପାଖରେ ପହଞ୍ଚି ଯାଇଥିଲା । ପୁଅର ଏପରି ଅବସ୍ଥା ଦେଖି ବିଚଳିତ ମା' ଠାକୁର ଘରେ ପୂଜୁଥିବା ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଆଗରେ ମୁଣ୍ଡ ବାଡ଼େଇ କାନ୍ଦିବା ସହ ଡାକ୍ତରଖାନାକୁ ତୁରନ୍ତ ବାହାରି ପଡ଼ିଥିଲେ । ନିଜର କୋହ ସମ୍ଭାଳି ନ ପାରି ସେ ଯାହା ପ୍ରଭୁଙ୍କ ଆଗରେ ବିଳାପ କରିଯାଇଥିଲେ ଉପର ଆଲୋଚ୍ୟ କଥା ଥିଲା ତାହାର କିୟଦଂଶ ମାତ୍ର ।

ମା' ରିକ୍ସାରେ ଯାଇ ଡାକ୍ତରଖାନାରେ ପହଞ୍ଚି ସାରିଥିଲେ । ପୁଅ ଦିବ୍ୟଶଙ୍କରର ଏପରି ଅବସ୍ଥା ଦେଖି ସେ ଅତି ବ୍ୟସ୍ତ ହୋଇ କାନ୍ଦି ଉଠିଲେ । ତେବେ କାନ୍ଦିଲେ ତ ରୋଗୀ ଭଲ ହୋଇଯିବ ନାହିଁ ? କଟକ ବଡ଼ ଡାକ୍ତରଖାନାକୁ ନିଜ ଅଫିସର ସହକାରୀ ବନ୍ଧୁ ଓ ପିଲାଟିର ସାଙ୍ଗମାନେ ବାହାରେ ଅପେକ୍ଷା କରିଥିବା ଆମ୍ବୁଲାନ୍ସକୁ ଷ୍ଟ୍ରେଚରରେ ବୋହି ଆଣି ରଖିଦେଲେ । କଟକ ଅଭିମୁଖେ ଗାଡ଼ି ଚଳିବା ବି ଆରମ୍ଭ କରିଥିଲା । ପିଲାଟିର ମା' ଓ କେତେକ ଶୁଭେଚ୍ଛୁ ଆମ୍ବୁଲାନ୍ସ ଭିତରେ ରହିଥିବା ବେଳେ ଅନ୍ୟମାନେ ନିଜ ନିଜ ଯାନରେ କଟକ ଅଭିମୁଖେ ଯିବା ଆରମ୍ଭ କରିଦେଲେ । ଆମ୍ବୁଲାନ୍ସ ଗାଡ଼ି ଫାଟକ ପାରିହେବା ବେଳକୁ ଦେଖାଗଲା ଅନ୍ୟ ଜଣେ ପରିଚିତ ଡାକ୍ତରଙ୍କ ଗାଡ଼ି ମେଡ଼ିକାଲ ଭିତରକୁ ଆସିବାର ଉଦ୍ୟମ କରୁଛି । ଉଭୟ ଗାଡ଼ି ମୁହାଁମୁହିଁ ହୋଇଯିବାରୁ କିଛି ସମୟ ପାଇଁ ଆମ୍ବୁଲାନ୍ସ ଫାଟକ ପାଖରେ ଅଟକିଗଲା । ଭିତରକୁ ଆସୁଥିବା ଗାଡ଼ିରୁ ବାହାରିଥିଲେ ଜଣେ ପରିଚିତ ଡାକ୍ତର । ବେକରେ ତାଙ୍କର ଓହଳି ଥିଲା ଷ୍ଟେଥୋ । କାହିଁକି କଟକ ନେଉଛ ବୋଲି ପଚାରି ସେ ଆମ୍ବୁଲାନ୍ସର ଆଟେଣ୍ଡାଣ୍ଟଙ୍କୁ ତୁରନ୍ତ ଗାଡ଼ିର ପଛପଟ ଖୋଲିବାକୁ ନିର୍ଦ୍ଦେଶ ଦେଇ ଭିତରେ ପଶି ପୀଡ଼ିତାକୁ ଦେଖିଲେ । ପିଲାଟିତ ବେଶ୍ ଭଲ ଅଛି । କାହିଁକି ତାକୁ କଟକ ନେଉଛ ? ସମସ୍ତେ ଦେଖିଲେ ଯେ ଆହତ ପିଲାଟି ଆଖି ଖୋଲି ପିଇବା ପାଇଁ ପାଣି ମାଗୁଛି । ଆଗନ୍ତୁକ ଡାକ୍ତର ତାହାର ଦେହରେ ହାତ ବୁଲାଇବା ସହ ତାକୁ କୋଳକୁ ଉଠାଇ ଆଣିଲେ । ବାହାରକୁ ଆଣି ରାସ୍ତାରେ ଠିଆ କରାଇ ଦେବାସହ ନିଜ ମା' ସହ ଘରକୁ ଚାଲିଯିବା ପାଇଁ ନିର୍ଦ୍ଦେଶ ଦେଲେ । ସମସ୍ତେ ଏପରି କଥା ଦେଖି ଆଚମ୍ବିତ ହୋଇଗଲେ । ପିଲାଟି ଡାକ୍ତରଙ୍କ ପାଦ ଛୁଇଁ ମା'ର କୋଳରେ ଆଉଜି ପଡ଼ିଲା । ଡାକ୍ତରବାବୁ ପିଲାଟିକୁ ପାଖକୁ ଡାକି ତା'ର ମୁଣ୍ଡ ଆଉଁସି ଦେବାସହ କିଛିବାଟ ସାଥୀରେ ଚଲାଇ ନେଇ ତାହାର ହାତରେ ଗୋଟାଏ ମିଠା ପ୍ୟାକେଟ ସହ କାଗଜରେ ପ୍ୟାକିଙ୍ଗ ହୋଇଥିବା ବହି ଖଣ୍ଡିଏ ଦେଇ କହିଲେ ମା'କୁ କହିବୁ ଏହି ବହିଟିକୁ ପ୍ରତିଦିନ ପଢ଼ିବ । ପୁରୁଣା ବହିଟାକୁ ସେ ଫୋପାଡ଼ି ଦେବାରୁ ତାହା ଜଳୁଥିବା ଦୀପର ନିଆଁରେ ପଡ଼ି ଅଧା ଜଳିଯାଇଛି । ଏତିକି କହି ଡାକ୍ତରବାବୁ ଆଉ ଭିତରକୁ ନ ଆସି ତୁରନ୍ତ ସେହି ସ୍ଥାନରୁ ନିଜ ଗାଡ଼ିରେ ଆସିଥିବା ବାଟରେ ଫେରିଗଲେ । ପରେ କାଗଜ ପ୍ୟାକେଟ ଖୋଲି ଦେଖାଗଲା ଯେ ତାହା ଥିଲା ଶ୍ରୀଗୀତଗୋବିନ୍ଦର ନୂଆ ବହି ଖଣ୍ଡିଏ । ଡାକ୍ତରବାବୁଙ୍କ କହିବା ଅନୁସାରେ ଘରେ ପହଞ୍ଚି ଠାକୁର ଘରେ ବହିଟି ନିଆଁ ଲାଗି ଅଧା ଜଳିଯାଇଥିବାର ଦେଖି ହତବାକ୍ ମାତାଙ୍କ ସହିତ ଯାଇଥିବା ସ୍ୱଜନମାନେ ଚକିତ ହୋଇଉଠିଲେ । କେବଳ ପ୍ରଭୁଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆମାରି ଅଶ୍ରୁ ତର୍ପଣ କରିବା ବ୍ୟତୀତ ସେମାନଙ୍କର ଆଉ କିଛି ନଥିଲା । ଜୟ ଜଗନ୍ନାଥ ଧ୍ୱନିରେ କିଛି ମୁହୂର୍ତ୍ତ ପାଇଁ ସ୍ଥାନଟି ମୁଖରିତ ହୋଇଉଠିଲା ।

ସମୟର ସ୍ରୋତ ବହି ଚାଲିଥିଲା । ଦିବ୍ୟଶଙ୍କର ମିଶ୍ର ମେକାନିକାଲ ଇଂଜିନିୟରିଂ ବିଦ୍ୟାରେ କୃତିତ୍ୱର ସହ ପାସ୍ କରି ଟାଟା ଗ୍ରୁପ୍‌ରେ ପ୍ରଥମେ ଚାକିରି କରିବା ପରେ ବହୁ ବିଦେଶୀ କମ୍ପାନୀରେ ଯୋଗଦେଇ ଥିଲେ । ବୟସ ହୋଇଯିବାରୁ ଶେଷରେ ଅବସର ନେଇ ଭୁବନେଶ୍ୱରରେ ଆସି ଘର ତିଆରି କରି ରହିଲେ । ତାଙ୍କର ସ୍ତ୍ରୀ ଆରତୀ ବି ଥିଲେ ଜଣେ ମେକାନିକାଲ୍ ଇଂଜିନିୟରିଂ । ସେ ବି ବିଭିନ୍ନ କମ୍ପାନୀମାନଙ୍କରେ ଚାକିରି ଆରମ୍ଭ କରି ଅବସର ନେବା ପରେ ସ୍ୱାମୀଙ୍କ ସହ ଏକାଠି ରହୁଥିଲେ । ମାତ୍ର କିଛିଦିନ ପରେ ଆରତୀଙ୍କର ଦେହାନ୍ତ ହୋଇଗଲା । ସେମାନଙ୍କର ଥିଲେ ଦୁଇଟି ପୁଅ ଓ ଗୋଟିଏ ଝିଅ । ଆଉ ପ୍ରତ୍ୟେକ ସନ୍ତାନ ଥିଲେ ଉଚ୍ଚଶିକ୍ଷିତ ଓ ଦକ୍ଷ ଇଂଜିନିୟରିଂ । ବିଦେଶରେ ଚାକିରି କରି ଆଉ ଦେଶକୁ ସେମାନେ ଫେରି ଆସି ନଥିଲେ । ଝିଅଟି ବି କାନାଡ଼ାରେ ଜଣେ ବିଦେଶୀକୁ ବିବାହ କରି ସେଠାରେ ହିଁ ରହିଯାଇଥିଲା । ଏବେ କେବଳ ଭୁବନେଶ୍ୱରରେ ଏକାକି ରହିଗଲେ ଦିବ୍ୟଶଙ୍କର । ନିଜ ଚାକିରି ଜୀବନରେ ଯାହା କିଛି ସ୍ଥାବର ଓ ଅସ୍ଥାବର ସମ୍ପତ୍ତି

ଅର୍ଜନ କରି ଯାଇଥିଲେ ସେସବୁକୁ ଦିନେ ବିକିଦେଇ ଶ୍ରୀଜଗନ୍ନାଥଙ୍କ ହୁଣ୍ଡିରେ ପକାଇଦେଲେ। ତାଙ୍କ ସ୍ତ୍ରୀ ମଧ୍ୟ ନିଜ ପାଇଁ କିଛି ନ ରଖି ସମସ୍ତ ସମ୍ପତ୍ତିର ବିକ୍ରିଲବ୍ଧ ଅର୍ଥରୁ କିଛି ବିଦ୍ୟାଳୟ ଓ ଡାକ୍ତରଖାନା ଇତ୍ୟାଦି ସ୍ଥାପନା କରିବାରେ ଖର୍ଚ୍ଚ କରି ଅବଶିଷ୍ଟ ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ଆଗରୁ ସମର୍ପଣ କରି ଯାଇଥିଲେ। ତାହାପରେ ଦିବ୍ୟଶଙ୍କର ଭୁବନେଶ୍ୱର ଛାଡ଼ି କୁଆଡ଼େ ଚାଲିଗଲେ ତାହା କାହାକୁ ଜଣା ନଥିଲା। ନିକଟରେ ଦିନେ ହଠାତ୍ ଭୁବନେଶ୍ୱର ରେଳ ଷ୍ଟେସନର ଭିଡ଼ ଭିତରେ ତାଙ୍କସହ ମୋର ଦେଖା ହୋଇଗଲା। ଚିହ୍ନିଲା ମୁହଁ ଜଣାପଡ଼ି ଯାଉଥିଲେ ବି ମୋତେ ଦେଖି ସେ ଭିଡ଼ ଭିତରେ ଲୁଚି ପଳାଇ ଯାଉଥିଲେ। ଭିଡ଼କୁ ଠେଲି ଦୌଡ଼ିଯାଇ ପଛରୁ ହାତଟାକୁ ଧରି ପକାଇବାରୁ ସେ ଅଟକି ଗଲେ। ଆଉ ମୋତେ ନ ଚିହ୍ନିବାର ଅଭିନୟ ବି ଆରମ୍ଭ କରିଦେଲେ। ମାତ୍ର ତାହାଥିଲା ଅତି ଅଳ୍ପ ସମୟ ପାଇଁ। ପ୍ରଶ୍ନ ପରେ ପ୍ରଶ୍ନ ପଚାରିବାରୁ ସମସ୍ତ ସତକଥା ସେ କହିଦେଇଥିଲେ। ପିଲାମାନେ କିଏ କେଉଁଠି ଅଛନ୍ତି ତାହା ମଧ୍ୟ ତାଙ୍କୁ ଜଣା ନଥିଲା। ତେବେ କେଉଁଠି ରହୁଛ ବୋଲି ପଚାରିବାରୁ ସେ କହିଲେ ଯେ ସେ ଭାରତର ବିଭିନ୍ନ ସ୍ଥାନକୁ ବୁଲି ଯାଉଥିଲେ ବି ପୁରୀରେ ବର୍ଷର ବହୁ ଦିନ କଟାଉଛନ୍ତି। ପୁରୀରେ ରହିବାର ଠିକଣା ପଚାରିଲେ ବି ଆଦୌ ଦେଲେନାହିଁ। ତେବେ ତାଙ୍କ ମା'ଙ୍କର ବୋଲୁଥିବା ଶ୍ରୀଗୀତଗୋବିନ୍ଦ ବହିଟିକୁ ଲାମିନେସନ୍ କରାଇ ସାଇତି ରଖିଥିବାର ମୋତେ ଦେଖାଇଥିଲେ। ବହିଟି ଓଡ଼ିଆରେ ଛପା ହୋଇଥିଲେ ବି ବହୁ ପୁରୁଣା ଓ ଅନୁବାଦକଙ୍କ ନାମ ବି ସେଥିରୁ ଲିଭି ଯାଇଥିଲା। ବହିଟିକୁ ମଥାରେ ଲଗାଇ ସେ କହିଥିଲେ ଏହି ବହି ହିଁ ମୋ ଜୀବନର ଗତି ନିୟନ୍ତ୍ରକ। ବହିଟି ପାଇଁ ମୁଁ ଜୀବନ ପାଇବା ସହ ପ୍ରଭୁଙ୍କର ବି ଦର୍ଶନ ପାଇସାରିଛି। ଆଉ ମା'ଙ୍କ ଭଳି ପ୍ରତ୍ୟେକ ସନ୍ଧ୍ୟାବେଳେ ଠାକୁରଙ୍କ ଆଗରେ ତାହାକୁ ଏବେ ବି ବୋଲୁଛି। ସ୍ୱର ଓ ତାଳରେ ବୋଲି ନ ଜାଣିଲେ ମଧ୍ୟ ପୁସ୍ତକଟି ଏବେ ମୋର ପୂରା ମୁଖସ୍ଥ। ଏପରି ସମ୍ପତ୍ତିଠାରୁ ଆଉ ଅଧିକ କ'ଣ ଅଛି? ଧନରତ୍ନ ଆଉ ସମ୍ପତ୍ତି ଏହା ଆଗରେ କିଛି ନୁହେଁ। ମା'ଙ୍କ ଦେହାନ୍ତବେଳେ ସେ ମୋ ହାତକୁ ପ୍ରଭୁଙ୍କ ପ୍ରଦତ୍ତ ବହିଟିକୁ ଧରାଇଦେଇ କହିଥିଲେ ବାବୁରେ! ପ୍ରଭୁ ଏହାରି ଭିତରେ ଅଛନ୍ତି। ସାଇତି ରଖିଥିବୁ । ଏତିକି କହି ସେ ପିଲାଙ୍କ ଭଳି କାନ୍ଦି ଉଠିଥିଲେ। ଚକ୍ଷୁରୁ ତାଙ୍କର ଧାରଧାର ଲୁହ ବି ବହି ଯାଇଥିଲା। ଦିବ୍ୟଶଙ୍କରଙ୍କର ଏପରି ଦିବ୍ୟଚେତନାର କଥା ଶୁଣି ମୋ ଆଖିରେ ବି ଲୁହ ଜମିଗଲା। ଗାଡ଼ି ଛାଡ଼ିବାର ସଙ୍କେତ ବାଜି ଉଠିଲା। ଦିବ୍ୟଶଙ୍କର ତାଙ୍କ କମ୍ପାର୍ଟମେଣ୍ଟ ଆଡ଼କୁ ଧାଇଁଲେ। କେବଳ ଟ୍ରେନ୍‌ରୁ ମୋତେ ଦୁଇହାତ ଯୋଡ଼ି ନମସ୍କାର ଜଣାଇଥିଲେ। ଏହା ହିଁ ଥିଲା ତାଙ୍କ ସହ ମୋର ଶେଷ ସାକ୍ଷାତ୍। ଏପରି ପବିତ୍ର ଆତ୍ମାକୁ ଆଉ ଦେଖି ହେବ କି ନାହିଁ ତାହା ସେହି ପ୍ରଭୁଙ୍କର ବିଚାର।

**ସହାୟକ ଗ୍ରନ୍ଥ:**


୧) ଅଲୌକିକ ଜୟଦେବ–ଶ୍ରୀ ନୃସିଂହ ପ୍ରସାଦ ମିଶ୍ର ।

୨) ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ– ସ୍ୱର୍ଗତ କେଦାର ନାଥ ମହାପାତ୍ର ।

୩) ଶ୍ରୀଜୟଦେବ କୃତ ଶ୍ରୀଗୀତଗୋବିନ୍ଦ– ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ ।

୪) ଦାର୍ଢ୍ୟତା ଭକ୍ତି ।

୫) ମାଦଳାପାଞ୍ଜି ।


ଭୁବନେଶ୍ୱର



# ଖଣ୍ଡଗିରିର ମାହାତ୍ମ୍ୟ

ପବିତ୍ର ମୋହନ ବାରିକ

କିମ୍ବଦନ୍ତୀ, ଲୋକକଥା, ଜନଶ୍ରୁତି ଓ ଐତିହାସିକ ସତ୍ୟତାକୁ ନେଇ ସୁପ୍ରସିଦ୍ଧ ଖଣ୍ଡଗିରିର କଳେବର ସମୃଦ୍ଧ । ଏହା ସାଧୁ, ସନ୍ନ୍ୟାସୀ, ସିଦ୍ଧ ଓ ଯୋଗଜନ୍ମା ମହାପୁରୁଷମାନଙ୍କର ସାଧନା ଓ ତପସ୍ୟାର ପୀଠ ଥିଲା । ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍, ଗବେଷକ, ପର୍ଯ୍ୟଟକ ଓ ଈଶ୍ୱର ବିଶ୍ୱାସୀମାନଙ୍କ ପାଇଁ ଏହା ଏକ ପୁଣ୍ୟ ତୀର୍ଥକ୍ଷେତ୍ର । ଏହି ପ୍ରାଚୀନ କ୍ଷେତ୍ରର ମହାନତା ଆକର୍ଷିତ କରିଛି ବହୁ ଶ୍ରଦ୍ଧାଳୁ ସାଧକଙ୍କୁ । ରାଜଧାନୀ ଭୁବନେଶ୍ୱର ଉପକଣ୍ଠରେ ଐତିହ୍ୟ ସମ୍ପନ୍ନ ଖଣ୍ଡଗିରି ଅବସ୍ଥିତ । ଏକଦା କୁମାର ପର୍ବତ ରୂପେ ପରିଚିତ ଖଣ୍ଡଗିରି ସ୍ୱଦେହରେ ଅନେକ ସ୍ମୃତିର ସ୍ୱାକ୍ଷର ବହନ କରି ସଦର୍ପରେ ଦଣ୍ଡାୟମାନ । ଜୈନ ଧର୍ମର ଚତୁଃବିଂଶତମ ତୀର୍ଥଙ୍କର ମହାବୀର ଜୀନ ନାମରେ ସୁପରିଚିତ, ଏଠାରେ ଧର୍ମଚକ୍ର ପ୍ରବର୍ତ୍ତନ କରିଥିବା ବିଷୟ ଜୈନ ଧର୍ମଗ୍ରନ୍ଥ 'ଅଙ୍ଗୁତରାନିକାୟ'ରେ ଉଲ୍ଲେଖ ଅଛି । ମହିମା ଧର୍ମର ପ୍ରତିଷ୍ଠାତା ମହିମା ଗୋସାଇଁ ୧୮୩୮ ମସିହାରେ ଖଣ୍ଡଗିରି–ଉଦୟଗିରିଠାରେ ଅବସ୍ଥାନ କରି ନିବିଡ଼ ଆଧ୍ୟାତ୍ମିକ ତତ୍ତ୍ୱର ରହସ୍ୟ ବିମୋଚନ ପାଇଁ ଯୋଗ ସାଧନାରେ ନିମଜ୍ଜିତ ଥିଲେ । ଉଦୟଗିରି ହାତୀ ଗୁମ୍ଫା ଶିଳାଲେଖର ପାଠୋଦ୍ଧାର ପାଇଁ ଇଂରେଜ ଐତିହାସିକ କିଟୋ ସାହେବ ସେଠାରେ ସଦଳବଳେ ଉପସ୍ଥିତ ହେବାରୁ ଏହାର ଶାନ୍ତ ଓ ପବିତ୍ର ବାତାବରଣ ନଷ୍ଟ ହେବା ଆଶଙ୍କା କରି ମହିମା ଗୋସାଇଁ ଢେଙ୍କାନାଳ ନିକଟସ୍ଥ କପିଳାସ ପର୍ବତକୁ ଗମନ କରିଥିଲେ । ବଡ଼ଖେମୁଣ୍ଡି ଗଙ୍ଗ ବଂଶୀୟ ରାଜପରିବାରର ରାଜପୁତ୍ର ବଳଭଦ୍ର ଦେବ ସନ୍ନ୍ୟାସ ଗ୍ରହଣ କରିବା ପରେ ଅରକ୍ଷିତ ଦାସ ନାମରେ ପରିଚିତ ଥିଲେ । ପୁରାଣ ଓ ଇତିହାସ ପ୍ରସିଦ୍ଧ ଖଣ୍ଡଗିରି ଗୁମ୍ଫାରେ ଆଧ୍ୟାତ୍ମିକ ଅଧ୍ୟୟନରେ ସେ ନିମଗ୍ନ ରହି ଭଗବତ ଦର୍ଶନ, ଈଶ୍ୱର ପ୍ରେମ ଓ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ଗୂଢ଼ ରହସ୍ୟ ଉନ୍ମୋଚନ ପାଇଁ କଠୋର ସାଧନାରେ ବ୍ରତୀ ଥିଲେ । ଖଣ୍ଡଗିରିରେ ଅବସ୍ଥାନ ସମୟରେ ଅରକ୍ଷିତ ଦାସ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ ମହିମଣ୍ଡଳ ଗୀତାର ପ୍ରଥମ ୩୫ ଅଧ୍ୟାୟ ପର୍ଯ୍ୟନ୍ତ ରଚନା କରିଥିଲେ । ଅରକ୍ଷିତ ଦାସଙ୍କ ରଚିତ 'ମହାଗୁପ୍ତ ପଦ୍ମକଳ୍ପ' ଗ୍ରନ୍ଥରେ ଖଣ୍ଡଗିରି ସମ୍ପର୍କରେ ମନୋଜ୍ଞ ବର୍ଣ୍ଣନା ରହିଛି । ଏହି ବର୍ଣ୍ଣନା ଅନୁଯାୟୀ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଭଗବାନ ଭକ୍ତମାନଙ୍କୁ ଖଣ୍ଡଗିରି ଗୁମ୍ଫାରେ ନିରାପଦରେ ଆଶ୍ରୟ ଦେବେ ।

ଏହି ଗ୍ରନ୍ଥରେ ଉଲ୍ଲେଖ ଅଛି –

ଏହା ଶୁଣି ଅରକ୍ଷିତ କହନ୍ତି ବୁଝାଇ
ଭକ୍ତମାନଙ୍କୁ ଯେ ନେବି ଖଣ୍ଡଗିରି ଭୂଇଁ
ସେଠାରେ ପତ୍ର ଖୋଇଣ ବଞ୍ଚାଇବି ମୁହିଁ
ଗୁମ୍ଫାର ମଧ୍ୟରେ ରଖାଇବି ନେଇ ।

ଖଣ୍ଡଗିରି ଭବିଷ୍ୟ ଅତି ଚମତ୍କାର ଶୈଳୀରେ ମହାପୁରୁଷମାନେ ବର୍ଣ୍ଣନା କରିଛନ୍ତି । ଅଭିରାମ ପରମହଂସ ଦେବ ତାଙ୍କ ରଚିତ ଅମୃତ ଗୀତା ପୁସ୍ତକରେ ଖଣ୍ଡଗିରିର ଶ୍ରେଷ୍ଠତ୍ୱ ବର୍ଣ୍ଣନା କରିବାକୁ ଯାଇ ଉଲ୍ଲେଖ କରିଛନ୍ତି – ଏଠାରେ ଏକ ମହାନ୍ ଭକ୍ତ ସମ୍ମିଳନୀ ଅନୁଷ୍ଠିତ ହେବ, ଯାହା ସମଗ୍ର ଜନସମାଜକୁ ଅଭୂତପୂର୍ବ ଆଧ୍ୟାତ୍ମିକ ଚେତନାରେ ଉଦ୍‌ଭାସିତ କରିବ ।

ଭକ୍ତ– ଭଗବାନ, ଆତ୍ମା–ପରମାତ୍ମା ଓ ଗୁରୁ–ଶିଷ୍ୟଙ୍କର ମିଳନର ମହାନ୍ ତୀର୍ଥ ଖଣ୍ଡଗିରି । ଯୁଗାନ୍ତକାରୀ ଗୁର୍ଚ୍ଛରୀରସ

ସୂତ୍ରପାତର ସୂଚନା ଦେଇ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ 'ଗୀତି ଗୋଲକ' ପୁସ୍ତକରେ ଉଲ୍ଲେଖ କରିଛନ୍ତି –

ଚାରି ପୁରେ ତହିଁ ଦେଖିବୁ ଖଣ୍ଡଗିରିର ଖେଳ
ତିନିପୁର ଭକ୍ତ ମିଳିଣ ଥିବେ ରାସମଣ୍ଡଳେ ।

ଖଣ୍ଡଗିରି ପ୍ରଭୁଙ୍କର ଲୀଳାକ୍ଷେତ୍ର ରୂପେ ପରିଚିତ । ଏହାର ସତ୍ୟତା ପଞ୍ଚସଖା ଯୁଗର ଶ୍ରେଷ୍ଠ ଭକ୍ତ ଶ୍ରୀ ଅଚ୍ୟୁତାନନ୍ଦ ମହାପୁରୁଷଙ୍କର ଆଗତ ଭବିଷ୍ୟତ ମାଳିକା ପୁସ୍ତକରେ ପ୍ରମାଣିତ ।

ଖଣ୍ଡଗିରି ସିଦ୍ଧ ସ୍ଥାନରେ ଯେତେ ଅଛନ୍ତି ଋଷି
ସକଳ ବାହାର ହୋଇବେ ପ୍ରଭୁ ନାମକୁ ଘୋଷି ।

କଳିଯୁଗରେ ସ୍ୱୟଂ ନାରାୟଣ କଲ୍‌କୀ ଅବତାରରେ ଖଣ୍ଡଗିରିରେ ଆବିର୍ଭାବ ହୋଇ ପାପ, ତାପ, ଦୁଃଖ ଦୂର କରି ସତ୍ୟ ଓ ଧର୍ମ ପ୍ରତିଷ୍ଠା କରିବେ ବୋଲି ଶ୍ରୀ ଅଚ୍ୟୁତାନନ୍ଦ ତାଙ୍କ ରଚିତ ଅନ୍ୟ ଏକ ଗ୍ରନ୍ଥ 'ପଦ୍ମ କଳ୍ପଟୀକା'ରେ ବର୍ଣ୍ଣନା କରିଛନ୍ତି–

ଏହି କଳିଯୁଗେ କଲ୍‌କୀ ଅବତାରରେ ହରି
ଶ୍ରୀ ଖଣ୍ଡଗିରିରେ ଥିବେ ସ୍ୱୟଂ ବିଜେ କରି ।
ପ୍ରଭୁ ଅବତାରେ ନର ଦେହ ଧରି
ଗୁପତେ ରହିବେ ଆସି ଏହି ଖଣ୍ଡଗିରି ।

ଅଚ୍ୟୁତାନନ୍ଦ ଏହି ପ୍ରସିଦ୍ଧ କ୍ଷେତ୍ରର ମହିମା ତାଙ୍କ ରଚିତ ଜାଇଫୁଲ ଗ୍ରନ୍ଥରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ଖଣ୍ଡଗିରି ଏକ ମିଳନର କ୍ଷେତ୍ର । ସତ୍ୟ, ଅହିଂସା ମନ୍ତ୍ରରେ ଅଭିମନ୍ତ୍ରିତ ପୁଣ୍ୟପୀଠ ଖଣ୍ଡଗିରି ଭବିଷ୍ୟତରେ ଶାନ୍ତି ଓ ସଂହତିର ବାର୍ତ୍ତା ପ୍ରଚାର କରିବାରେ ସମର୍ଥ । ଏକ ଅପୂର୍ବ, ଅପ୍ରକଟ ଲୀଳା ଏହି କ୍ଷେତ୍ରରେ ଅନୁଷ୍ଠିତ ହେବ, ଯାହା ମାନବ ଜାତିକୁ ସଦ୍‌ଭାବନାରେ ଉଦ୍‌ବେଳିତ କରିବ ବୋଲି ବହୁ ଲୋକଙ୍କର ବିଶ୍ୱାସ ରହିଛି ।

ଅଗଣିତ ସାଧୁ, ସନ୍ଥ ସମଗ୍ର ଖଣ୍ଡଗିରିରେ ଏକ ଆଧ୍ୟାତ୍ମିକ ଓ ଐଶ୍ୱରୀୟ ଜାଗରଣ ସୃଷ୍ଟି କରିବା ସହିତ ଭକ୍ତିଭାବର ଧାରା ପ୍ରବାହିତ କରିବେ । ଖଣ୍ଡଗିରି ସାଧୁ ଓ ସିଦ୍ଧ ପୁରୁଷମାନଙ୍କର ଏକ ଲୀଳାକ୍ଷେତ୍ର । ଏହାର ପ୍ରମାଣ ପଞ୍ଚସଖା ଯୁଗର ଅନ୍ୟତମ ସାଧକ ବଳରାମ ଦାସ ତାଙ୍କ ରଚିତ ପୁସ୍ତକ ଗୁପ୍ତ ଗୀତାରେ ପ୍ରଦାନ କରିଛନ୍ତି ।

ଯେ ବିନ୍ଦୁ ସାଗର ବୋଲାଇ
ଗୋପ୍ୟେ ପାତାଳ ଗଙ୍ଗା ସେହି
ସାଧୁମାନଙ୍କ ସ୍ଥଳ ସେହୁ
ସେଠାରେ ଖଣ୍ଡଗିରି ଯେହୁ ।

ପୁଣ୍ୟସ୍ଥଳ ଖଣ୍ଡଗିରି । ଏଠାରେ ବିଶ୍ୱନିୟନ୍ତା, ବିଶ୍ୱ ଚିନ୍ତାମଣି ପରମେଶ୍ୱରଙ୍କ ଅପ୍ରକଟ ଲୀଳା ପ୍ରକାଶିତ ହେବା ସହିତ ମାନବ ଧର୍ମର ବିଜୟ ବାର୍ତ୍ତା ପ୍ରଚାରିତ ହେବ । ଭଗବତ ଲୀଳାର ପରିପ୍ରକାଶ ଅନେକ ସତ୍ୟଦ୍ରଷ୍ଟା ସାଧୁ ଭବିଷ୍ୟବାଣୀରେ ପ୍ରଚାର କରି ଯାଇଛନ୍ତି । ଖଣ୍ଡଗିରି କ୍ଷେତ୍ର ମଧ୍ୟରେ ଭକ୍ତ, ଈଶ୍ୱର ପ୍ରେମୀ, ଭଗବତ ଦର୍ଶକମାନେ ଏକତ୍ରିତ ହେବା ସହିତ ଅନାଦି ପୁରୁଷ ଭଗବାନଙ୍କର ନାମକୁ ପ୍ରଚାର କରିବେ । ଭଗବାନ ଏଇ ଖଣ୍ଡଗିରିରେ ଗୁପ୍ତଲୀଳା ପ୍ରକଟିତ କରିବା ସହିତ ସତ୍ୟ, ଧର୍ମ, ଆର୍ଦଶ ଓ ମାନବବାଦର ମହାମନ୍ତ୍ର ପ୍ରଚାର କରିବେ ବୋଲି ସିଦ୍ଧ ପୁରୁଷ ହାଡ଼ି ଦାସ ମଧ୍ୟ କହି ଯାଇଛନ୍ତି । ଛତିଆବଟର ଯୋଗଜନ୍ମା ମହାପୁରଷ ହାଡି ଦାସ ତାଙ୍କ ରଚିତ କଳି ଚଉତିଶା ପୁସ୍ତକରେ ଖଣ୍ଡଗିରି ମୁକ୍ତି କ୍ଷେତ୍ରର ମହାନତା ଓ ଶ୍ରେଷ୍ଠତାକୁ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ।

ପୁନର୍ବାର ମାଳିକାରେ ହାଡି ଦାସ ମଧ୍ୟ ବର୍ଣ୍ଣନା କରିଛନ୍ତି, ଲୀଳାମୟ ପୁରୁଷ ଖଣ୍ଡଗିରି ଗୁମ୍ଫାରେ ଆବିର୍ଭାବ ହୋଇ ଅଦୃଶ୍ୟ ଲୀଳା ରଚନା କରିବେ । ଖଣ୍ଡଗିରି ଏକ ଦେବ ଭୂମି । ସାଧୁ ଓ ସନ୍ନ୍ୟାସୀମାନଙ୍କ ରଚନାବଳୀରେ ଏହାର ମାହାତ୍ମ୍ୟ ହୃଦୟସ୍ପର୍ଶୀ । ସମଗ୍ର ବିଶ୍ୱକୁ ଏହି ସ୍ଥାନରୁ ଶାନ୍ତି, ମୈତ୍ରୀ ଓ ପ୍ରୀତିର ବାର୍ତ୍ତା ପ୍ରଚାରିତ ହେବ । ମାନବ ଜାତିକୁ ଦିଗ୍‌ଦର୍ଶନ ଓ ପଥ ପ୍ରଦର୍ଶନ ପାଇଁ ଏହି କ୍ଷେତ୍ରର ଆଧ୍ୟାତ୍ମିକ ଅନୁଭୂତି ସାହାଯ୍ୟ କରିବ । ଧର୍ମର ବିଜୟ ବାର୍ତ୍ତା ଖଣ୍ଡଗିରିରୁ ଆରମ୍ଭ ହେବ । ହାଡି ଦାସଙ୍କ ଭାଷାରେ –

ଏହି ଖଣ୍ଡଗିରି ମଧ୍ୟରେ ସର୍ବେ ମିଳିତ ହେବ
ଲିଙ୍ଗରାଜ କ୍ଷେତ୍ର ମଧ୍ୟରେ ନାମ ପ୍ରଚାର ହେବ ।
ଝାଡ଼ ଖଣ୍ଡଗିରି ଗୁମ୍ଫାରେ ପ୍ରଭୁଙ୍କର ସେ ଠାବ
ଝଲମଲ ଜ୍ୟୋତି ଆକାଶେ ଲୀଳା ଉଦୟ ହେବ ।

ପ୍ରଭୁ ମହିମାରେ ଏ ସ୍ଥାନର ତାତ୍ପର୍ଯ୍ୟ ଅତି ମହନୀୟ । ଓଡ଼ିଶାର ସମସ୍ତ ପୁଣ୍ୟ ପାହାଡ଼, ପର୍ବତମାନଙ୍କ ମଧ୍ୟରେ

ଖଣ୍ଡଗିରି ଏକ ଉଲ୍ଲେଖନୀୟ ସ୍ଥାନର ଅଧିକାରୀ । ଶିଶୁ ଅନନ୍ତ ଦାସ ମଧ୍ୟ ଏ କ୍ଷେତ୍ରର ମହତ୍ତ୍ୱ ତାଙ୍କ ରଚିତ ଭବିଷ୍ୟତ ମାଳିକାରେ ବର୍ଣ୍ଣନା କରିଛନ୍ତି –

ଭୁବନେଶ୍ୱରର ଖଣ୍ଡଗିରିରେ ପଞ୍ଚବିଂଶ<br>
ଭକ୍ତ ଥିବେ ତଟରେ ଦୁଇ ବେଳେ ଯାଇ<br>
ତିନି ବେଳରେ ପ୍ରଭୁଙ୍କୁ ଭେଟିବ ଖଣ୍ଡଗିରିରେ ।

ଖଣ୍ଡଗିରିର ମନୋହର ପ୍ରାକୃତିକ ସୌନ୍ଦର୍ଯ୍ୟ ଦିନେ ବିମୋହିତ କରିଥିଲା କବିବର ରାଧାନାଥ ରାୟଙ୍କୁ । 'ଉଷା' କାବ୍ୟରେ କବି ଖଣ୍ଡଗିରିର ସନ୍ଧ୍ୟାକାଳୀନ ଦୃଶ୍ୟକୁ ଅତି ଚମତ୍କାର ତଥା ଜୀବନ୍ତ ରୂପରେ ବର୍ଣ୍ଣନା କରିଥିଲେ –

ଅସ୍ତଗାମୀ ରବି ବିଭା ଝଟକିଲା<br>
ବଡ଼ ଦେଉଳ ତ୍ରିଶୂଳେ<br>
ଭାର୍ଗବୀ କୂଳିନ ହଂସରାଜି ଉଡ଼ି<br>
ଗଲେ ଖଣ୍ଡଗିରି ଚୂଳେ ।

ଖଣ୍ଡଗିରି ପ୍ରସ୍ତର ଗାତ୍ରରେ ଓଡ଼ିଆ ଜାତିର ସାଂସ୍କୃତିକ, ସାମାଜିକ, ରାଜନୈତିକ ଓ ଧାର୍ମିକ ଇତିହାସ ଲିପିବଦ୍ଧ । ପ୍ରାଚୀନ ଉତ୍କଳର ଏକ ପ୍ରମୁଖ ଜୈନଧର୍ମର କେନ୍ଦ୍ରସ୍ଥଳ ରୂପେ ଖଣ୍ଡଗିରି ବିବେଚିତ । ଖଣ୍ଡଗିରି–ଉଦୟଗିରିରେ ଜୈନ ସମ୍ରାଟ ଖାରବେଳ ଅନେକ ଗୁମ୍ଫା ଖନନ କରି ଏହାକୁ ଜୈନ ସନ୍ନ୍ୟାସୀ ସିଦ୍ଧ ଓ ଶ୍ରମଣମାନଙ୍କ ଆବସିକ ସ୍ଥଳୀରୂପେ ଗଢ଼ି ତୋଳିଥିଲେ ।

ରଣପୁର ପ୍ରଜା ଆନ୍ଦୋଳନର ପ୍ରଖ୍ୟାତ ବିପ୍ଳବୀ ଦିବାକର ପରିଡ଼ା ଖଣ୍ଡଗିରିକୁ ଓଡ଼ିଆ ସ୍ୱାଭିମାନ ଓ ଜାତୀୟତାର ପ୍ରତୀକ ରୂପେ ନିଜ କବିତାରେ ଗ୍ରହଣ କରିଥିଲେ । ଖଣ୍ଡଗିରି ଥିଲା ଅନେକ ଦେଶଭକ୍ତ ଓ ଜାତୀୟବାଦୀଙ୍କ ପାଇଁ ପ୍ରେରଣା ଓ ଉତ୍ସାହର ଉତ୍ସ । ତେଣୁ ସେ ବର୍ଣ୍ଣନା କରିଥିଲେ–

ଯା'ର ଇତିହାସ କହେ ଖଣ୍ଡଗିରି<br>
ବାରବାଟୀ ଦୁର୍ଗେ ପରାସ୍ତ ବଇରି ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଖଣ୍ଡଗିରିକୁ ଓଡ଼ିଆ ଜାତିର ଗୌରବ ଓ ପରିଚୟର ପ୍ରତୀକ ରୂପେ ଗ୍ରହଣ କରିଛନ୍ତି । ତାଙ୍କ ଭାଷାରେ –

ଦେଖି ନାହିଁ କେତେ ଦିନୁଁ ଖଣ୍ଡଗିରି<br>
ଇତିହାସ ଯା'ର ଅଙ୍କେ ଅଙ୍କିତ<br>
ଅମର ଅକ୍ଷରେ ନିରବ ଗମ୍ଭୀରେ<br>
ଗାଏ ଯେ ଉତ୍କଳ ଗୌରବ ଗୀତ ।

ଖଣ୍ଡଗିରି ପାଦଦେଶରେ ଅନେକ ମଠ, ମନ୍ଦିର, ଆଶ୍ରମ, ସାଧନା ପୀଠ ଓ ଅନୁଷ୍ଠାନମାନ ପ୍ରତିଷ୍ଠିତ ହୋଇ ସନାତନ ହିନ୍ଦୁ ଧର୍ମର ଆଦର୍ଶ, ଦାର୍ଶନିକ ଚିନ୍ତାଧାରା, ବିଶ୍ୱଭ୍ରାତୃତ୍ୱ ଓ ମାନବ ପ୍ରେମର ମହତ୍ତ୍ୱକୁ ଉଦ୍‌ଘୋଷିତ କରୁଛି । ଏଠାରେ ବିଶ୍ୱର କଲ୍ୟାଣ ଓ ବିଶ୍ୱଶାନ୍ତି ପାଇଁ ପ୍ରତି ବର୍ଷ ମାଘ ସପ୍ତମୀଠାରୁ ସାତ ଦିନ ପର୍ଯ୍ୟନ୍ତ ମାଘ ମେଳା ଅନୁଷ୍ଠିତ ହୋଇ ଆସୁଅଛି । ଖଣ୍ଡଗିରି ପୃଷ୍ଠ ଦେଶରେ ଏକ ମନୋରମ ସୁଦୃଶ୍ୟ ଜୈନ ମନ୍ଦିର ଅବସ୍ଥିତ । ଖଣ୍ଡଗିରି ପାହାଡ଼ ମଧ୍ୟରେ ମା' ବାରଭୁଜା ଦୁର୍ଗା ପୂଜା ପାଉଛନ୍ତି । ଏଠାରେ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବଙ୍କ ଶାନ୍ତି ଆନନ୍ଦାଶ୍ରମ, ସତ୍ୟ ମହିମା ଧର୍ମର ଆଶ୍ରମ, ଅଚ୍ୟୁତାନନ୍ଦଙ୍କ ଆଶ୍ରମ, ଶିଶୁ ଅନନ୍ତ ଦାସଙ୍କ ଆଶ୍ରମ ଓ ଦିବ୍ୟଜୀବନ ସଂଘ, ସତ୍ୟସାଇ ସେବା ସଂସ୍ଥା, ଶ୍ରୀ ଅରବିନ୍ଦଙ୍କର ଆଶ୍ରମ ଓ ବିଦ୍ୟାଳୟ ଅବସ୍ଥିତ । ଖଣ୍ଡଗିରିର ମହିମା ଅନନ୍ୟ ତଥା ଅସାଧାରଣ ।

ଇତିହାସ ବିଭାଗ<br>
ସନାତନ ହରିଚନ୍ଦନ ମହାବିଦ୍ୟାଳୟ<br>
ମଦନପୁର, ଖୋର୍ଦ୍ଧା–୭୫୨୦୫୪



# ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ନରର ଶକ୍ତି ନାରୀ, ନାରୀ ଦ୍ୱାରା ହିଁ ନର ଶକ୍ତିମାନ ହୋଇଥାନ୍ତି । ସେଥିପାଇଁ ଶାସ୍ତ୍ର କୁହେ, ନାରୀ ହେଉଛି ଅକ୍ଷୟ ଶକ୍ତିର ସ୍ରୋତ । ଶକ୍ତି ବିନା ଶକ୍ତିବାନ୍ ନାହିଁ, ନାରୀ ବିନା ନରର ଅସ୍ତିତ୍ୱ ନାହିଁ । ନାରୀ ଜୀବନର ବିକାଶ ଉପରେ ନର ଜୀବନର ଉତ୍କର୍ଷତା ନିର୍ଭର କରେ । ତଥାପି ନାରୀ ପୁରୁଷର ସମୁଚ୍ଚିତ ଓ ସନ୍ତୁଳିତ ବିକାଶ ଉପରେ ସମାଜର ସୁସ୍ଥତା ନିର୍ଭର କରେ ।

ଯେପରି ମହାମାୟା ନିଜର ଚିଦ୍‌ବିଲାସ ଦ୍ୱାରା ବିଶ୍ୱ ବ୍ରହ୍ମାଣ୍ଡକୁ ବ୍ୟକ୍ତ କରନ୍ତି, ସେହିଭଳି ନାରୀ ନିଜ ଶିଶୁ ଚିତ୍ତରେ ବ୍ୟକ୍ତ ଜଗତର ଛାୟା ପକାଇଥାନ୍ତି । ଜୀବନର ଅରୁଣୋଦୟରେ ନାରୀ ହିଁ ଜନନୀ ରୂପରେ ସାତ୍ତ୍ୱିକ, ରାଜସିକ ଓ ତାମସିକ ସଂସ୍କାରର ଯେଉଁ ବୀଜ, ବାଳକ ବାଳିକା ଜୀବନ କ୍ଷେତ୍ରରେ ବପନ କରନ୍ତି, ବଡ ହେବାପରେ ସେହି ବୀଜ ପୁଷ୍ପିତ ଓ ପଲ୍ଲବିତ ହୋଇ ସମଗ୍ର ଜଗତ ଜୀବନର କାରଣ ହୋଇଥାଏ । ନାରୀ ସୃଷ୍ଟି କରେ ତାହାକୁ । ପାଳନ କରେ ଆଉ ମଧ୍ୟ ।

ସେଥିପାଇଁ କୁହାଯାଇଛି– ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମଂତେ ତତ୍ର ଦେବତା । ଅର୍ଥାତ୍ ଯେଉଁଠାରେ ନାରୀ ପୂଜା ପାଆନ୍ତି ସେଠାରେ ଦେବତାମାନେ ଖୁସିରେ ଉପସ୍ଥିତ ହୁଅନ୍ତି ।

ମାତ୍ର ନାରୀ ସର୍ବଦା ଆଦର୍ଶ ନାରୀ ହେବା ଆବଶ୍ୟକ । ଉପଯୁକ୍ତ ଶିକ୍ଷା ନାରୀ ପାଇଁ ପ୍ରଥମ ପାହାଚ ହୋଇଥାଏ । ଆଧୁନିକତା ନାମରେ ସେ ପାଶ୍ଚାତ୍ୟ ସଭ୍ୟତାକୁ ଅନୁକରଣ କରି ଉଗ୍ର ଆଧୁନିକା ହେବା ଆଦୌ ଉଚିତ ନୁହେଁ । ଏବେ ଆମେ ଜେଜେମା ସହିତ ନାତୁଣୀର ତୁଳନା କରିବା, ଦିନ ଥିଲା ଜେଜେମାମାନେ ଗାଁରେ କିମ୍ବା ସହରରେ ରହି ଆଦର୍ଶ ଶିକ୍ଷା ଲାଭ କରି ସୁଗୃହିଣୀ ହେଉଥିଲେ । ଯେଉଁମାନେ କର୍ମ କ୍ଷେତ୍ରରେ ଥିଲେ ସେମାନେ ମଧ୍ୟ ସଂଯତ ଜୀବନଯାପନ କରୁଥିଲେ । ଆଜିର ଝିଅ ଜେଜେମା ଭଳି ଉନ୍ନତ ହୃଦୟା ବିଚାରଶୀଳା କିମ୍ବା ତ୍ୟାଗ ବଳରେ ପବିତ୍ର ଚରିତ୍ରର ଅଧିକାରିଣୀ ହେବା ଉଚିତ୍ । ସେମାନଙ୍କର ଅସଲ ଶିକ୍ଷା ହେଉଛି ଗୃହଶିକ୍ଷା । ସେ ଦିନେ ଗୃହର ପ୍ରଧାନ ଶିକ୍ଷୟିତ୍ରୀ ହେବା ଦ୍ୱାରା ଗୃହ ତା’ରି ସୁପରିଚାଳନାରେ ହିଁ ପରିଚାଳିତ ହେବ । କାରଣ ମା’ ପ୍ରଥମେ ଶିକ୍ଷାଲାଭ କରି ସେହି ଲବ୍ଧ ଶିକ୍ଷାରୁ ହିଁ ପିଲାମାନଙ୍କୁ ଶିକ୍ଷା ଦେଇଥାଏ । ଯେଉଁ ଶିକ୍ଷା ପିଲାମାନଙ୍କୁ ପ୍ରକୃତ ମଣିଷ କରିଥାଏ ।

ମା’ ଶିଖାଇଥାଏ ସ୍ୱଦେଶ ପ୍ରେମ, ସ୍ୱଧର୍ମକୁ ଭଲ ପାଇବା, ସ୍ୱଜାତିକୁ ସମ୍ମାନ ଦେବା ଆଉ ମଧ୍ୟ ମା’ ନିଜ ଆଚରଣରେ ଶିଖାଇଥାଏ ତ୍ୟାଗ ଧର୍ମ । ସଂଯମ ଧର୍ମ ହିଁ ବୀରଧର୍ମ, ମହାନ୍ ପୁରୁଷର ଧର୍ମ ।

ଅସଂଯମ, ଉଚ୍ଛୃଙ୍ଖଳତା ଅଥବା ଭୋଗେଚ୍ଛା ସଂସାରରେ ବାଞ୍ଛନୀୟ ନୁହେଁ ବରଂ ଏସବୁ ତ୍ୟାଜ୍ୟବସ୍ତୁ ଅଟେ । ସଦାଚାର ପାଳନ, ସ୍ୱଧର୍ମ ସେବା ତଥା ଶାସ୍ତ୍ରଜ୍ଞାନ ପ୍ରାପ୍ତ ଇଚ୍ଛା ଓ ଚେଷ୍ଟା ଇତ୍ୟାଦି ପ୍ରତି ଶିଶୁ ମନରେ ପ୍ରବୃତ୍ତି ସୃଷ୍ଟି କରିବା ହେଉଛି ମା’ର କର୍ତ୍ତବ୍ୟ ।

ଭାରତୀୟ ମା’ ମାନଙ୍କୁ ଏଭଳି କାମ କରିବାକୁ ପଡିବ ଯେପରି ନିଜ ସନ୍ତାନର ସମସ୍ତ ପ୍ରକାର ମଙ୍ଗଳ ହେବ । ସେ ଇହଲୋକ ଓ ପରଲୋକରେ ଶାନ୍ତି ପାଇବ । ସନ୍ତାନମାନେ କେବଳ ସଂସାର ପ୍ରତି ଆକୃଷ୍ଟ ହୋଇ ସୀମିତ ପରିବେଶରେ ରୁହନ୍ତୁ, ଏପରି ଭାବିବା ମା’ ପକ୍ଷେ ଉଚିତ ନୁହେଁ ।

ଝିଅ ଦିନେ ବୋହୂ ହୁଏ । ବୋହୂ ପୁଣି କିଛି ବର୍ଷ ପରେ ଶାଶୂ ହୁଏ । ଯେତେବେଳେ ନାରୀ ଶାଶୂର ଭୂମିକାରେ ଥାଏ, ସେତେବେଳେ ସେ ବୋହୂକୁ ନିଜର କନ୍ୟା ଭଳି ବ୍ୟବହାର କରିବା ଉଚିତ । ତାକୁ ଯଥାସାଧ୍ୟ ସତ୍ ଶିକ୍ଷା ପ୍ରଦାନ ଓ ନୈତିକ ଶିକ୍ଷା ଉପରେ ପୂର୍ଣ୍ଣ ଦୃଷ୍ଟି ଦେବା ଉଚିତ୍ । ସ୍ନେହ ଓ ଯତ୍ନର ସହିତ ଯଦି ସେ ବୋହୂକୁ ପାଳେ ତେବେ ଅତି ସହଜରେ ବୋହୂ ପାଖରେ ଥିବା କୁସ୍ୱଭାବ ଓ କୁଶିକ୍ଷାରୁ ସୁଧାର ଆସି ପାରିବ । ଶାଶୂ ବୋହୂକୁ କୌଣସି ଏକ ପୃଥକ ପ୍ରାଣୀ ବୋଲି ଭାବିବା ଉଚିତ୍ ନୁହେଁ, ବରଂ ଏହାକୁ ଜଣେ ଆଗାମୀ ସୁସନ୍ତାନର ଜନନୀ ବୋଲି ଭାବିବା ଉଚିତ । ସେହି ଗୃହଲକ୍ଷ୍ମୀ କଲ୍ୟାଣୀ ଦ୍ୱାରା ଏକ ନବୀନ ଜଗତ ସୃଷ୍ଟି ହେବ । ଏହି ମହତ୍ତ୍ୱପୂର୍ଣ୍ଣ କଥାକୁ କ୍ଷଣକ ପାଇଁ ଭୁଲିଯିବା ଉଚିତ ନୁହେଁ । ସେ ବଂଶର ଉତ୍ତମ ଉତ୍ତର ଦାୟାଦକୁ ସୃଷ୍ଟି କରି ବଂଶର ମର୍ଯ୍ୟାଦାକୁ ରକ୍ଷା କରିଥାଏ । ପିତୃପୁରୁଷ ସ୍ୱର୍ଗ କି ନରକ ଭୋଗ କରିବେ ଏହା ନାରୀର ସୁ କିମ୍ବା କୁ ପ୍ରକୃତିର ସନ୍ତାନ ଉତ୍ପତ୍ତି ଉପରେ ନିର୍ଭର କରେ । ମାତ୍ର ନବବଧୂ ଶିକ୍ଷା ଓ ଦୀକ୍ଷାରେ ଉଚିତ୍ ଦିଶା ପାଇଥିଲେ ସବୁ ଠିକ୍ ହେବ ।

ମୁଖ୍ୟତଃ ସନ୍ତାନ ଦ୍ୱାରା ହିଁ ମାତାପିତାଙ୍କ ପରିଚୟ ବ୍ୟାପ୍ତ ହୋଇଥାଏ, ଏହା ସ୍ୱାଭାବିକ ମଧ୍ୟ । ଆମ ପାଇଁ ଆମର ଭାବି ସନ୍ତାନ ହିଁ ସ୍ୱର୍ଗ ଏବଂ ନର୍କ । ଯିଏ ଯେଉଁଭଳି ସନ୍ତାନ ଉତ୍ପନ୍ନ କରନ୍ତି ସଂସାରରେ ତାଙ୍କର ଯଶ ଓ ଅପଯଶ ସେହି ଅନୁସାରେ ହୋଇଥାଏ । ଆଜିକାଲିର ନାରୀ ଧାର୍ମିକା, ନୀତିଜ୍ଞାନ ଯୁକ୍ତା, ବିଦ୍ୟାବତୀ ଗୃହକର୍ମ ଆଦିରେ ସୁଦକ୍ଷା ତଥା ଶରୀର ଓ ସ୍ୱାସ୍ଥ୍ୟ ସମ୍ବନ୍ଧରେ ଅଭିଜ୍ଞତାପ୍ରାପ୍ତ ହୋଇ ନିଜକୁ ରକ୍ଷା କରିବା ନିମନ୍ତେ ସମର୍ଥା ହେବା ଉଚିତ୍ ।

ତା' ସହିତ ଅନ୍ୟ ଘର ନିମନ୍ତେ ଏପରି ଭାବରେ ନିଜ ଘରର କନ୍ୟାମାନଙ୍କୁ ପ୍ରସ୍ତୁତ କରିବ, ସେ ଆଦର୍ଶ ଜନନୀ ଓ ବଧୂ ହୋଇ ପାରିବ । ଭାରତୀୟ ନାରୀମାନଙ୍କ ନିମନ୍ତେ ଏହାଠାରୁ ବଳି ଆଉ କୌଣସି କର୍ତ୍ତବ୍ୟ ନାହିଁ । ଆଉ ଗୋଟିଏ କଥା ମନେ ରଖିବାକୁ ହେବ, ନାରୀ ନିଜର ସତୀତ୍ୱ ପ୍ରତି ନିଷ୍ଠା ରଖିବା, ଏହା ଭାରତୀୟ ନାରୀ ପ୍ରତି ମହାନ୍ ଆଦର୍ଶ କଥା । ଏହି କଥାଠାରୁ ବଳି ଆଉ କଲ୍ୟାଣପ୍ରଦ ଏହି ସଂସାରରେ କିଛି ନାହିଁ । ଭାବିବାକୁ ହେବ ଯେ ବିବାହର ଉଦ୍ଦେଶ୍ୟ କେବଳ ଦେହସୁଖ ନୁହେଁ ।

ଯଦି ଏହା ହୋଇଥାନ୍ତା ତେବେ ଏହି ସଂସାରରୁ ବିବାହ ସଂସ୍କାର ଉଠିଯାଇଥାନ୍ତା, ବିବାହର ଯେଉଁ ମହାନ୍ ପରମ୍ପରା ଆଡମ୍ବର ଏସବୁ ନଥାନ୍ତା । ବିବାହରେ ପତିପତ୍ନୀଙ୍କର ଯେଉଁ ଏକାତ୍ମତା ସ୍ୱୀକାର କରାଯାଏ, ତାହା ପବିତ୍ର ଏବଂ ଚିରସ୍ଥାୟୀ । ଭାରତବର୍ଷ ସତୀ ସୀତା, ସାବିତ୍ରୀ, ଦ୍ରୌପଦୀ ଓ ଦମୟନ୍ତୀଙ୍କର ରାଷ୍ଟ୍ର । ଏଠାରେ ଦିନେ ରାଣୀ ଲକ୍ଷ୍ମୀବାଈ, ଅହଲ୍ୟାବାଈ, ରାଣୀ ଶୁକଦେଈ, ସଂଯୁକ୍ତା ଓ ପଦ୍ମିନୀ ଭଳି ଓଜସ୍ୱିନୀ ନାରୀ ଜନ୍ମ ନେଇଥିଲେ । ଏବେ ମଧ୍ୟ ସେହିଭଳି ବହୁ ମହିୟସୀ ମହିଳା ଏହି ଭାରତବର୍ଷରେ ଅଛନ୍ତି । ସମସ୍ତଙ୍କ ନାମ ନେବା ଏହି କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବ ନୁହେଁ ।

ଆଲୋକ ନଗର, ନିଆଳୀ, କଟକ



# ପୁରାଣ ଶାସ୍ତ୍ରରେ ଅର୍ଦ୍ଧନାରୀଶ୍ୱର ତତ୍ତ୍ୱ

ସୁଚିତ୍ରା ବେହେରା

ଭାରତୀୟ ସଂସ୍କୃତି ଆତ୍ମାକୁ ଏକ ବ୍ୟାପକ ଅର୍ଥରେ ଗ୍ରହଣ କରେ। ଆତ୍ମାରେ ସ୍ତ୍ରୀ ଓ ପୁରୁଷର ପ୍ରଭେଦ ନାହିଁ। ବେଦରେ ଅପାଳା, ଘୋଷା ଗୋଧା ଇତ୍ୟାଦି ବୃହଦାରଣ୍ୟକୋପନିଷଦରେ ଗାର୍ଗୀ, ମୈତ୍ରେୟୀ, ମହାଭାରତରେ ଚାରିବେଦର ପାରଙ୍ଗତା ଶିବା, ବ୍ରାହ୍ମଣୀ, ଜନକଙ୍କ ସହ ଶାସ୍ତ୍ରାର୍ଥ କରିଥିବା ବ୍ରହ୍ମବାଦିନୀ ସୁଲଭା ଇତ୍ୟାଦିରୁ ସ୍ପଷ୍ଟ ହୁଏ ଯେ ନାରୀ ଓ ନର ଉଭୟଙ୍କ ଜୀବନର ସମସ୍ତ କର୍ମ ଓ ବୈଭବରେ ସମ ଅଧିକାର କରିଥିଲା। ଭାରତୀୟ ସଂସ୍କୃତି ଅନୁଯାୟୀ କେବଳ ନର ନାରୀ ନୁହେଁ, ପଶୁପକ୍ଷୀ, ବୃକ୍ଷଲତା, ପୁରୁଷ, ସ୍ତ୍ରୀ ନିର୍ବିଶେଷରେ ସମସ୍ତଙ୍କଠାରେ ଆତ୍ମା ବିଦ୍ୟମାନ। ଶ୍ରୀମଦ୍ ଭାଗବତ ଗୀତାରେ କୁହାଯାଇଛି ଯେ, ଯେଉଁ ବ୍ୟକ୍ତି ଏହି ସମତାର ତତ୍ତ୍ୱ ଜ୍ଞାନ ଅନୁଭବ କରେ ସେ ହିଁ ପଣ୍ଡିତ। ଏହି ତତ୍ତ୍ୱର ମର୍ମ ଉପଲବ୍ଧି କରି ଆର୍ଯ୍ୟ ଶାସ୍ତ୍ରଜ୍ଞମାନେ ଭଗବାନଙ୍କୁ ମାତା ଓ ପିତା ରୂପେ ଗ୍ରହଣ କରିନେଇଥିଲେ। ଆଚାର୍ଯ୍ୟ ଶଙ୍କରଙ୍କ ଭାଷାରେ ଅର୍ଦ୍ଧାଂଶ ଶିବ ଓ ଅର୍ଦ୍ଧାଂଶ ପାର୍ବତୀ । ଶିବ ଓ ଶକ୍ତିଙ୍କର ଏହି ସମ୍ମିଳିତ ରୂପକୁ ପୃଥିବୀର ସୁନ୍ଦରତମ ରୂପର ସଂଜ୍ଞା ଦିଆଯାଇଥାଏ।

ଅର୍ଦ୍ଧନାରୀଶ୍ୱର ତତ୍ତ୍ୱ ସମ୍ବନ୍ଧରେ ପୁରାଣ ଶାସ୍ତ୍ରରେ ବହୁ ମତ ଉଲ୍ଲେଖ ହୋଇଛି । ଶିବ ପୁରାଣ ଅନୁଯାୟୀ ବ୍ରହ୍ମା ନିଜ ସୃଷ୍ଟିରେ ପ୍ରଜା ବୃଦ୍ଧି ହେବା ଦେଖି ଅତ୍ୟନ୍ତ ଦୁଃଖିତ ଓ ଚିନ୍ତିତ ହେଲେ । ଶିବ ଓ ଶକ୍ତିଙ୍କ ପ୍ରସନ୍ନତା ବିନା ଏହି ସୃଷ୍ଟି ସମ୍ଭବ ନୁହେଁ ଜାଣି ବ୍ରହ୍ମା ପାର୍ବତୀ ସ୍ୱରୂପିଣୀ ପରମାଶକ୍ତି ସମନ୍ୱିତ ଶିବଙ୍କ ତପସ୍ୟାରେ ମଗ୍ନ ହେଲେ। ତପସ୍ୟା ବଳରେ ବ୍ରହ୍ମାଙ୍କୁ ଅର୍ଦ୍ଧଭାଗ ଶିବ ଓ ଅର୍ଦ୍ଧଭାଗ ଶିବା ଅର୍ଥାତ୍ ଶକ୍ତିଯୁକ୍ତ ରୂପ ଦେଖାଗଲା । ଏହା ଦେଖି ବ୍ରହ୍ମା ସନ୍ତୁଷ୍ଟ ହେଲେ।

'ଅର୍ଦ୍ଧନାରୀ ନରବପୁଃ ପ୍ରଚଣ୍ଡୋତି ଶରୀରବାନ'

ପୁରୁଷ ଓ ପ୍ରକୃତି ପରସ୍ପରର ପରିପୂରକ। ଶାସ୍ତ୍ର ସେତେବେଳେ ପୁରୁଷକୁ ପୂର୍ଣ୍ଣ ମନେ କରେ ଯେତେବେଳେ ତା' ସହ ନାରୀ ସଂଯୁକ୍ତ ହୁଏ। ଶିବ ଓ ଶକ୍ତିଙ୍କ ସମନ୍ୱୟ ରୂପରେ ଆବିର୍ଭାବ ସମ୍ବନ୍ଧରେ ଏକ ମହତ୍ତ୍ୱପୂର୍ଣ୍ଣ କାହାଣୀଟିଏ ଅଛି। ଥରେ ଦେବତା ଋଷି ଶିବଙ୍କୁ ସ୍ତୁତି କରିବା ପାଇଁ କୈଳାସ ଗଲେ । ସେମାନେ ଶିବ ପାର୍ବତୀଙ୍କ ସ୍ତୁତି, ଦର୍ଶନ ସାରି ଉଭୟଙ୍କୁ ଶ୍ରଦ୍ଧାପୂର୍ବକ ପ୍ରଦକ୍ଷିଣ କଲେ । କିନ୍ତୁ ଋଷିଙ୍କ ମନରେ କେବଳ ଶିବଙ୍କ ପାଇଁ ଶ୍ରଦ୍ଧା ଓ ଭକ୍ତି ଥିଲା । ଏଣୁ ସେ କେବଳ ଶିବଙ୍କୁ ହିଁ ପ୍ରଦକ୍ଷିଣ କଲେ । ହେଲେ ପାର୍ବତୀ ଏହି ଉପେକ୍ଷା ସହି ନପାରି ଭୃଙ୍ଗୀ ଋଷିଙ୍କୁ କଙ୍କାଳ ହୋଇଯିବା ପାଇଁ ଶାପ ଦେଲେ । ଶାପ ତତ୍‌କ୍ଷଣାତ୍ ଫଳିଲା । ଶିବ ସଙ୍କଟରେ ପଡିଲେ। ଗୋଟାଏ ଦିଗରେ ଭକ୍ତ ଓ ଅନ୍ୟ ଦିଗରେ ପାର୍ବତୀ ରହିଲେ। ଶିବ ତୃତୀୟ ଚରଣ ଦ୍ୱାରା ଭୃଙ୍ଗୀଙ୍କୁ ପୂର୍ବ ପରି କରିଦେଲେ। ପାର୍ବତୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ବର ପ୍ରଦାନ କରି କହିଲେ–'ତୁମେ ଏଣିକି ମୋର ଅଧାଅଂଶ ହୋଇ ରହିବ। ଭକ୍ତମାନେ ଏକତ୍ର ପୂଜା କରିବେ' । ଏହା ଫଳରେ ଶିବ ଅର୍ଦ୍ଧନାରୀଶ୍ୱର ହୋଇଗଲେ ।

କବି କାଳିଦାସ ତାଙ୍କ 'ରଘୁବଂଶ' ପୁସ୍ତକରେ ଅର୍ଦ୍ଧନାରୀଶ୍ୱର ସ୍ତୁତିରୁ ଆରମ୍ଭ କରି କହିଛନ୍ତି–

ବାଗାର୍ଥାତିବ ସଂପୃକ୍ତୋଃ ବାଗାର୍ଥ ପ୍ରତିପକ୍ଷୟୋ
ଜଗତଃ ପିତରୋଃ ବନ୍ଦେ ପାର୍ବତୀ ପରମେଶ୍ୱରୀ ॥

ବ୍ରହ୍ମ ବୈବର୍ତ୍ତ ପୁରାଣ ଅନୁଯାୟୀ ପୁରୁଷ ହେଉଛନ୍ତି କୃଷ୍ଣ ଓ ନାରୀ ହେଉଛନ୍ତି ରାଧା । ସୃଷ୍ଟି ରଚନା ପ୍ରକ୍ରିୟାରେ ପୁରୁଷ ପ୍ରଥମେ ଏକା ହିଁ ଥିଲେ। ଅନେକ ହେବା ପାଇଁ ସଂକଳ୍ପ କରି ପୁରୁଷ ଓ ପ୍ରକୃତି ଦୁଇ ଭାଗରେ ବିଭକ୍ତ ହେଲେ। ବାମ ଭାଗ ନାରୀ ହେଲା। ବୈଷ୍ଣବ ଶାସ୍ତ୍ର ମତରେ, ସୃଷ୍ଟି ପୂର୍ବରୁ ରାସମଣ୍ଡଳସ୍ଥ ପରମାତ୍ମା ସ୍ୱରୂପ ଭଗବାନ ଶ୍ରୀକୃଷ୍ଣଙ୍କ ଶରୀରର ବାମ ଭାଗରୁ ଅପରୂପା ଶୋଭା ସମ୍ପନ୍ନା ଦେବୀ ମହାଲକ୍ଷ୍ମୀ ଓ ଦକ୍ଷିଣାଂଶରୁ ପ୍ରେମମୟୀ ଶ୍ରୀରାଧାଙ୍କ ଉତ୍ପତ୍ତି ହୋଇଥିଲା । ଚତୁଃଭୁଜ ନାରାୟଣ ଲକ୍ଷ୍ମୀଙ୍କୁ ଗ୍ରହଣ କରି ଲକ୍ଷ୍ମୀକାନ୍ତ ନାମ ଧାରଣ କଲେ । ଦ୍ୱିଭୁଜ ଶ୍ରୀକୃଷ୍ଣ ପ୍ରେମମୟୀ ରାଧିକାଙ୍କୁ ଗ୍ରହଣ କରି ରାଧାକାନ୍ତ ରୂପେ ପ୍ରସିଦ୍ଧ ହେଲେ । ବୈଷ୍ଣବମାନଙ୍କ ମତରେ ଶ୍ରୀକୃଷ୍ଣଙ୍କ ଆରାଧନାର ପ୍ରକୃଷ୍ଟ ସାଧନ ହୋଇଛି ରାଧା ଭାବ।

**ଆରାଧୟତି ଇତି ରାଧା**

ଶାସ୍ତ୍ର ମତରେ 'ରା'ର ଅର୍ଥ ହେଉଛି ଅଗ୍ନିବୀଜ । 'ଧା' ଅର୍ଥ ଭଗବାନଙ୍କ ଆଡ଼କୁ ଧାବମାନ ହେବାକୁ ସଂକେତ ଦିଏ । ରାଧା ନାମ ଉଚ୍ଚାରଣରେ ସମସ୍ତ ପାପ କ୍ଷୟ ହୁଏ । ମୋକ୍ଷ ପ୍ରାପ୍ତି ହୁଏ। ତେଣୁ ବୈଷ୍ଣବମାନେ କୃଷ୍ଣ ଉପାସନାରେ ଶ୍ରୀରାଧାଙ୍କ ଆରାଧନାକୁ ଗୁରୁତ୍ୱପୂର୍ଣ୍ଣ ମନେ କରନ୍ତି । ଶ୍ରୀରାଧାଙ୍କର କୃପା କଟାକ୍ଷରେ ହିଁ ମନରେ କୃଷ୍ଣ ଭକ୍ତି ବଳବତ୍ତର ହୋଇଥାଏ। ରାଧା ଭାବ ହେଉଛି ଆତ୍ମାର ନାରୀ ଭାବରେ ଏକ ପ୍ରେମ ବିଳାସ।

ପୃଥିବୀର ଅଣୁଠାରୁ ବ୍ରହ୍ମପାଏଁ ସବୁ ଏହି ତତ୍ତ୍ୱରେ ହିଁ ରଚିତ । ବିଶ୍ୱ ସଂସ୍କୃତିରେ ଏହାଠାରୁ ସୁନ୍ଦରତର କଳା କଳ୍ପନା ତଥା ଅଣୁଠାରୁ ବ୍ରହ୍ମ ବିଦ୍ୟମାନ ଏକ ସୁନ୍ଦରତତ୍ତ୍ୱ ଆଉ କିଛି ନଥାଇପାରେ। ତତ୍ତ୍ୱ ଦୃଷ୍ଟିରୁ ରାମଚରିତ ମାନସରେ ଗୋସ୍ୱାମୀ ତୁଳସୀ ଦାସ ପାର୍ବତୀଙ୍କୁ ଶ୍ରଦ୍ଧା ଓ ଶିବଙ୍କୁ ବିଶ୍ୱାସର ପ୍ରତୀକ ରୂପେ ମାନିଛନ୍ତି । ସଂସାରର ସବୁ ପ୍ରଗତିର ମୂଳ ହେଉଛି ଏହି ଦୁଇ ଆଧାତ୍ମ ଅସ୍ତ୍ର । ତେଣୁ ଶିବ ଓ ଶକ୍ତି, ପୁରୁଷ ଓ ପ୍ରକୃତି ପରସ୍ପରଠାରୁ ଅଲଗା ହୋଇଗଲେ ବିଶ୍ୱର ଶକ୍ତି ସମନ୍ୱୟରେ ଅସନ୍ତୁଳନ ଭାବ ଜାତ ହୁଏ, ଯାହା କେବଳ ବିପର୍ଯ୍ୟୟର ହିଁ କାରଣ ହୁଏ । ଏହି ବିପର୍ଯ୍ୟୟ ପୌରାଣିକ ଦକ୍ଷ ଯଜ୍ଞ ଘଟଣାରୁ ହିଁ ଅନୁମେୟ। ଏକଦା ପତିଙ୍କ ଅପମାନ ସହି ନପାରି ସତୀ ଯଜ୍ଞରେ ଜଳି ଭସ୍ମ ହୋଇଗଲେ । ଏହା ଶୁଣି ଶିବ ଉନ୍ମତ୍ତପ୍ରାୟ ହେଲେ। ତା'ପରେ ସତୀ ହିମାଳୟଠାରେ ପାର୍ବତୀ ରୂପରେ ଜନ୍ମ ହେଲେ ଏବଂ ଶିବଙ୍କୁ ପାଇବା ପାଇଁ କଠୋର ତପସ୍ୟା କଲେ। ତାରକାସୁରକୁ ବଧ କରିବା ପାଇଁ ଦେବତାମାନଙ୍କ ଚେଷ୍ଟାରେ କାମଦେବ ଶିବଙ୍କ ତପସ୍ୟା ଭଙ୍ଗ କଲେ। ତାଙ୍କ ମନରେ କାମ ବାସନା ଜାତ କରାଇ ନିଜେ ଭସ୍ମ ହେଲେ। ପାର୍ବତୀଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଶିବ ପାର୍ବତୀଙ୍କୁ ବିବାହ କଲେ। ଶିବ ଓ ଶକ୍ତିଙ୍କର ପୁନର୍ମିଳନରେ ବିଶ୍ୱର ଅସନ୍ତୁଳିତ ଭାବ ସନ୍ତୁଳିତ ହେଲା ।

ଅର୍ଦ୍ଧନାରୀଶ୍ୱର ତତ୍ତ୍ୱ ସମ୍ବନ୍ଧରେ ପୁରାଣ ଶାସ୍ତ୍ରରେ ଯେଉଁ ମତବାଦଗୁଡ଼ିକ ଉଲ୍ଲେଖ ହୋଇଛି, ତାହା ସମାନତା ସୃଷ୍ଟି ଉପରେ ହିଁ ଗୁରୁତ୍ୱାରୋପ କରେ। ନାରୀ ଓ ପୁରୁଷର ଅର୍ଦ୍ଧସଂଯୁକ୍ତ ରୂପକୁ ଉପଯୁକ୍ତ ସମ୍ମାନ ଦେବା ପାଇଁ ପ୍ରତୀତ କରେ ଅର୍ଦ୍ଧନାରୀଶ୍ୱର ତତ୍ତ୍ୱ । କାରଣ ପୁରୁଷ ବିନା ନାରୀ ଏବଂ ନାରୀ ବିନା ପୁରୁଷର ଜୀବନ ପ୍ରକ୍ରିୟାରେ ସୃଷ୍ଟି ଅସମ୍ଭବ।

ପ୍ଲଟ ନଂ–୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର–୧୮



# ଦେଶପ୍ରେମୀ ଯୋଗୀ ଶ୍ରୀ ଅରବିନ୍ଦ

**ନିର୍ମଳା କୁମାରୀ ମହାପାତ୍ର**

'ଆମର ଜନ୍ମଭୂମି କ'ଣ ? ଏହା ଭୂମି ଖଣ୍ଡଟିଏ ନୁହେଁ, ଏହା ଏକ ବାଚିକ ଅଳଙ୍କାର ନୁହେଁ ଏବଂ ଏହା ମନର ଏକ କଳ୍ପନା ନୁହେଁ। ଏହା ଏକ ମହାନ୍ ଶକ୍ତି। ଏକ ଦେବୀ। କୋଟି କୋଟି ଦେବତାଙ୍କ ଶକ୍ତି ମଧ୍ୟରୁ ହିଁ ଭବାନୀ ମହିଷାମର୍ଦ୍ଦିନୀ ଉଦ୍‌ଥିତ ହୋଇଥିଲେ ସେହି ଶକ୍ତି ଯାହାକୁ ଆମେ ଭାରତ ବୋଲି କହୁ। 'ଭବାନୀ ଭାରତୀ' ହେଉଛନ୍ତି କୋଟି କୋଟି ମନୁଷ୍ୟଙ୍କର ଜୀବନ୍ତ ଏକତ୍ୱ। ଯେତେବେଳେ ଅନ୍ୟମାନେ ନିଜର ଦେଶକୁ ଏକ ଜଡ଼ ପଦାର୍ଥ, କେତେକ ପ୍ରାନ୍ତର–କ୍ଷେତ, ବଣ, ପାହାଡ଼ ଓ ନଦୀ ବୋଲି ମନେ କରନ୍ତି, ମୁଁ ମୋ ଦେଶକୁ ମା' ବୋଲି ମନେକରେ। ମୁଁ ତାଙ୍କୁ ଭକ୍ତି କରେ, ମୁଁ ତାକୁ ପୂଜା କରେ।'



– ଶ୍ରୀ ଅରବିନ୍ଦ ।

('ଶ୍ରୀ ଅରବିନ୍ଦ ଓ ନୂତନ ପୃଥିବୀ' – ପୃ.୧୩୦)

ଯୋଗୀ ଶ୍ରୀ ଅରବିନ୍ଦ ଯିଏ ଶ୍ରୀ ଅରବିନ୍ଦ ଘୋଷ ସେହି ବ୍ୟକ୍ତିତ୍ୱ । ସେ ୧୮୭୨, ଅଗଷ୍ଟ ୧୫ ତାରିଖରେ କଲିକତାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ମାତା ସ୍ୱର୍ଣ୍ଣଲତା ଦେବୀ ଓ ପିତା ଡାକ୍ତର କୃଷ୍ଣଧନ ଘୋଷଙ୍କର ସେ ଥିଲେ ତୃତୀୟ ସନ୍ତାନ । ତାଙ୍କର ପିତାମହ (ଅଜା) ରାଜ–ନାରାୟଣ ବୋଷ ଥିଲେ ଋଷିପ୍ରତିମ ମଣିଷ। 'ବ୍ରାହ୍ମସମାଜ'ର ଜଣେ ତୁଙ୍ଗ ବ୍ୟକ୍ତିତ୍ୱ। ଅରବିନ୍ଦଙ୍କ ପିତା ଡାକ୍ତର କୃଷ୍ଣଧନ ଥିଲେ ପାଶ୍ଚାତ୍ୟ ଶିକ୍ଷାର ପ୍ରଶଂସକ। ଏଣୁ ସେ ଅରବିନ୍ଦଙ୍କୁ ପିଲାଦିନରୁ ଇଉରୋପୀୟ ଢାଞ୍ଚାରେ ଦାର୍ଜିଲିଂର ଲରେଟୋ କନ୍‌ଭେଣ୍ଟ ସ୍କୁଲରେ ପଢ଼ାଉ ଥିଲେ। ୧୮୭୯ ବେଳକୁ ବାପାଙ୍କ ସାଥୀରେ ଅରବିନ୍ଦ ତାଙ୍କର ଉପର ଦୁଇଭାଇଙ୍କ ସହ ଲଣ୍ଡନ ଯାଇ ପଢ଼ିଲେ। ଉଇଲିୟମ୍ ଡ୍ରୟେଟ୍ ନାମକ ଜଣେ ଧର୍ମଯାଜକଙ୍କ ପରିବାରରେ ସଯତ୍ନରେ ରହି ସେ ଅଧ୍ୟୟନ କଲେ। ତା'ପରେ ଲଣ୍ଡନର ସେଣ୍ଟ୍ ପଲ୍‌ସ ସ୍କୁଲରେ ତାଙ୍କର ନାମ ଲେଖାଗଲା। ସେଠାରେ ଅଧ୍ୟୟନ କାଳରେ କ୍ରମେ ସେ ମେଧାବୀ ଛାତ୍ରଭାବେ ବିବେଚିତ ହୋଇ ବର୍ଷକୁ ଅଶୀ ପାଉଣ୍ଡ ହାରରେ ଏକ ସିନିୟର କ୍ଲାସିକାଲ ବୃତ୍ତି ଲାଭ କରି ୧୮୯୧ ମସିହାରେ ସେ କେମ୍ବ୍ରିଜ୍‌ର କିଙ୍ଗସ୍ କଲେଜରେ ଅଧ୍ୟୟନ କଲେ। ଇଣ୍ଡିଆନ୍ ସିଭିଲ ସର୍ଭିସ୍ ପରୀକ୍ଷା ପାଇଁ ନାମ ପଞ୍ଜିକୃତ କଲେ। ସିନିୟର କ୍ଲାସିକାଲ ବୃତ୍ତି ସହ ପରୀକ୍ଷାର ଶିକ୍ଷାନବୀଶ ବୃତ୍ତି ମଧ୍ୟ ଲାଭ କରିଥିଲେ। ସେସମୟରେ ବିଶେଷ କରି କିଙ୍ଗ୍‌ସ କଲେଜରେ ପଢୁଥିବା ବେଳେ ଇଂରାଜୀ ଭାଷାରେ ରଚନା କରିଥିବା କବିତାଗୁଡ଼ିକୁ ନେଇ ୧୮୯୫ ମସିହାରେ ଏକ ସଂକଳନ କରାଗଲା, ଯାହାର ନାମ ହେଲା "Songs to Myrtilla"।

କେମ୍ବ୍ରିଜରେ ପଢୁଥିବା ବେଳେ ଭାରତୀୟ ଛାତ୍ରମାନଙ୍କୁ ନେଇ ଅରବିନ୍ଦ ଏକ କ୍ଲବ୍ ଗଢ଼ିଲେ, ଯାହାର ନାମ ଥିଲା 'ଇଣ୍ଡିଆନ୍ ମଜଲିସ୍'। ସେଠାକାର ଆଲୋଚନା ସଭାରେ ସେ ତତ୍‌କାଳୀନ ଭାରତର ସ୍ଥିତି ନେଇ ଭାଷଣ ଦେଉଥିଲେ। ସେ କାଳରେ ସ୍ୱାଧୀନତାପ୍ରାପ୍ତି ପାଇଁ ଭାରତରେ ତୀବ୍ରତର ଆନ୍ଦୋଳନ। ତା'ର ପ୍ରଭାବ ଇଂଲଣ୍ଡରେ ପଡୁଥିଲା। ଅତଏବ କେମ୍ବ୍ରିଜ୍‌ରେ ଭାରତୀୟ ଛାତ୍ରମାନଙ୍କର ଏକ ବିପ୍ଳବୀ ଦଳ ଗଢ଼ି ଉଠିଲା। ତାହାର ନାମ ଥିଲା ଲୋଟସ ଆଣ୍ଡ ଡାଗର। ଦଳର ପ୍ରତୀକ ଥିଲା – ପଦ୍ମଫୁଲ ଓ ତରବାରୀ। ଏଇ ସମିତିର ପ୍ରତ୍ୟେକ ସଭ୍ୟ ସ୍ୱାଧୀନତା ସଂଗ୍ରାମ ପାଇଁ କିଛି କାମ କରିବାର ସଂକଳ୍ପ ନେଇଥିଲେ।

ଦେଶପ୍ରେମର ପ୍ରଜ୍ୱଳନ ଯୋଗୁଁ ଅରବିନ୍ଦ ପରୀକ୍ଷାର ଲିଖିତାଂଶରେ ସଫଳ ହେଲେ ମଧ୍ୟ ଜାଣିଶୁଣି ଘୋଡ଼ାଚଢ଼ା ପରୀକ୍ଷାରେ ଯୋଗ ଦେଲେ ନାହିଁ। ପ୍ରାଶାସନିକ ଦିଗ ପ୍ରତି ନିଜର ଅଭିରୁଚି ନଥିବା କଥା ଦର୍ଶାଇଲେ। ବରଂ ଭାଷା–ସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ପରିଦୃଷ୍ଟ ହେଲା।

ଅରବିନ୍ଦ ଘୋଷ ୧୮୯୩ ରେ ଭାରତବର୍ଷକୁ ଫେରି ବରୋଦା ମହାରାଜାଙ୍କ କଲେଜରେ ଇଂରାଜୀ ଭାଷା–ସାହିତ୍ୟ ଅଧ୍ୟାପନା ଦାୟିତ୍ୱରେ ରହିଲେ। ଏଇ କାର୍ଯ୍ୟରେ ବସ୍ତୁତଃ ସେ ୧୯୦୭ ମସିହା ଯାଏଁ କାମ କଲେ। ଗଭୀର ପଠନ–ପାଠନ କ୍ରମେ ସେ ଅନେକ ଭାଷାରେ ଜ୍ଞାନ ଆୟତ୍ତ କଲେ। ଲଣ୍ଡନରେ ରହଣି ଯୋଗୁଁ ସେ ଇଂରାଜୀ, ଲାଟିନ୍, ଗ୍ରୀକ୍, ଫରାସୀ ଭାଷା ସହ ଅତି ପରିଚିତ ଥିଲେ। ବରୋଦାର ଅନୁକୂଳ ବାତାବରଣରେ ସେ ବଙ୍ଗଳା, ହିନ୍ଦୀ, ସଂସ୍କୃତ, ମରାଠୀ ପ୍ରଭୃତି ଭାଷା ଶିଖିଲେ। ପୁରାଣ, ଇତିହାସ, ଦର୍ଶନ ଶାସ୍ତ୍ରରେ ସେ ପାରଦର୍ଶୀ ହେଲେ। 'ଇନ୍ଦୁପ୍ରକାଶ' ନାମକ ପତ୍ରିକାରେ ସେ ନିୟମିତ ଜାତୀୟ–ସ୍ୱାଭିମାନ–ଜାଗରଣ ଉଦ୍ଦେଶ୍ୟରେ ପ୍ରବନ୍ଧମାନ ଲେଖି ଚାଲିଲେ। ପରବର୍ତ୍ତୀ କାଳରେ ସେ ନିଜେ ଦୁଇଟି ପତ୍ରିକା ସଂପାଦନ କଲେ। ଯଥା– 'ବନ୍ଦେ ମାତରମ୍' ଓ 'କର୍ମଯୋଗିନ୍'।

ଲେଖାର ଶୈଳୀ, ଭାଷା ସଂପନ୍ନତା ଦୃଷ୍ଟିରୁ 'ବନ୍ଦେ ମାତରମ୍' ପତ୍ରିକାର ସଂପାଦକ ଶ୍ରୀ ଅରବିନ୍ଦ ଘୋଷଙ୍କୁ ଇଂରେଜମାନେ ମଧ୍ୟ ପ୍ରଶଂସା କରୁଥିଲେ। ସେ ଭାରତରେ ପ୍ରଚଳିତ ତତ୍‌କାଳୀନ ଶିକ୍ଷା ବ୍ୟବସ୍ଥାକୁ ସମାଲୋଚନା କରି 'କର୍ମଯୋଗିନ୍' ପତ୍ରିକାରେ ଯେଉଁ ସଂପାଦକୀୟ ଲେଖୁଥିଲେ ତାହା ଇଂରେଜ ସରକାରଙ୍କର ମଥାବଥାର କାରଣ ହେଲା। ସେ ନିୟମିତ ଜନସଚେତନତାର ବାର୍ତ୍ତା 'ବନ୍ଦେ ମାତରମ୍' ପତ୍ରିକାରେ ଦେଉଥିଲେ। ତାହା ମଧ୍ୟ ସରକାରଙ୍କୁ ଆଦୌ ସୁହାଇଲା ନାହିଁ। ଅତଏବ 'ବନ୍ଦେ ମାତରମ୍' ପତ୍ରିକାକୁ ବାଜ୍ୟାପ୍ତ କରାଗଲା ଓ ରାଜଦ୍ରୋହ ଅପରାଧରେ ସଂପାଦକ ଅରବିନ୍ଦ ଘୋଷଙ୍କୁ ଗିରଫ କରାଗଲା। ସୁଫଳ ମିଳିଲା ଏହିକି ସାରା ଦେଶରେ ଅରବିନ୍ଦ ଘୋଷ ଜନୈକ ବିଶିଷ୍ଟ ପତ୍ରକାର ଓ ନେତା ବୋଲି ପରିଚିତ ହେଲେ।

ବଙ୍ଗଭଙ୍ଗ କାରଣରୁ ସାରା ଦେଶରେ ବିପ୍ଳବ ଲାଗି ରହିଥିଲା । ଆଲିପୁର ବୋମା ବିସ୍ଫୋରଣରେ ଦୁଇଜଣ ଇଂରେଜ ମହିଳାଙ୍କର ମୃତ୍ୟୁ ଘଟିଥିଲା। ସଂପୃକ୍ତ ବିପ୍ଳବୀ ଦୁଇଜଣ ଧରା ପଡ଼ିଥିଲେ। ଶ୍ରୀ ଅରବିନ୍ଦଙ୍କର ବୋମା ବିସ୍ଫୋରଣ ସହ କିଛି ସଂପର୍କ ନଥିଲା। ଆଗରୁ କୁହାଯାଇଛି ଯେ ତାଙ୍କ ସଂପାଦିତ ପତ୍ରିକା 'ବନ୍ଦେ ମାତରମ୍'କୁ ସରକାର ବାଜ୍ୟାପ୍ତ କରିଥିଲେ। ବଙ୍ଗଳା ଭାଷାରେ ତାଙ୍କ ସଂପାଦିତ ଆଉ ଏକ ପତ୍ରିକାର ନାମ ଥିଲା 'ଧର୍ମ'। 'କର୍ମଯୋଗିନ୍'ରେ ସେ ଯାହା ଲେଖୁଥିଲେ ତାହାର ମୂଳ ଉଦ୍ଦେଶ୍ୟ ଥିଲା ଯୋଗଃ କର୍ମସୁ କୌଶଳମ୍– ଏଇ ନୀତିର ପ୍ରଚାର କରିବା । ଏକ ନୂତନ ଜାତୀୟ ଶିକ୍ଷା ପଦ୍ଧତି ସଂପର୍କିତ ପ୍ରବନ୍ଧ ନିୟମିତ ଲେଖି ସେ ଜନସଚେତନତା ଜାଗ୍ରତ କରାଉଥିଲେ। କିନ୍ତୁ ଆଲିପୁର ବୋମା ବିସ୍ଫୋରଣକୁ ଆଳ କରି ଅରବିନ୍ଦଙ୍କୁ ତାଙ୍କ ବାସଭବନରୁ ଗିରଫ କରାଗଲା ଓ ଆଲିପୁର ଜେଲ୍‌ଖାନାରେ ସାଧାରଣ କଏଦୀଭାବେ ରଖାଗଲା। ମୂଳକଥା ଥିଲା ଭିନ୍ନ । ଈର୍ଷା ଆଉ ଈର୍ଷା। ସାଧାରଣ ଜନଜୀବନରେ ଅରବିନ୍ଦ ଘୋଷଙ୍କର ଚୁମ୍ବକୀୟ ବ୍ୟକ୍ତିତ୍ୱକୁ, ସଭାସମିତିରେ ତାଙ୍କର ଉପସ୍ଥିତିକୁ ଗୋରା ସାହେବମାନେ ସହ୍ୟକରି ପାରୁନଥିଲେ। ବଙ୍ଗଳାର ପ୍ରଧାନ ସଚିବ ମିଷ୍ଟର ଇ. ଏ. ଗେଟ୍ ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗର ସଚିବଙ୍କୁ ପ୍ରୋକ୍ତ ଅରବିନ୍ଦ ଘୋଷଙ୍କ ସଂପର୍କରେ ଗୁପ୍ତ ରିପୋର୍ଟ ଦେଇଥିଲେ, ଯାହାର ମର୍ମାର୍ଥ ହେଲା– ଶାନ୍ତି ପ୍ରତିଷ୍ଠା ଓ ସୁଶାସନ ଦୃଷ୍ଟିରୁ

ଶ୍ରୀ ଅରବିନ୍ଦ ଘୋଷଙ୍କୁ ରାଜନୀତିକ ପଟ୍ଟଭୂମିରୁ ଦୂରେଇ ରଖିବା ଆବଶ୍ୟକ।

ପରବର୍ତ୍ତୀ କାଳରେ ତତ୍‌କାଳୀନ ବଡ଼ଲାଟ୍ ଲର୍ଡ଼ ମିଣ୍ଟୋ ଶ୍ରୀ ଅରବିନ୍ଦଙ୍କୁ ସବୁଠାରୁ ବିପଜ୍ଜନକ ବ୍ୟକ୍ତି ଭାବି ତାଙ୍କୁ ଦେଶରୁ ନିର୍ବାସିତ କରିବା ପାଇଁ ବିଲାତରେ ଅବସ୍ଥାପିତ ଭାରତର ସେକ୍ରେଟାରୀ ଲର୍ଡ଼ ମୋରଲେଙ୍କ ନିକଟରୁ ଅନୁମତି ଚାହିଁଥିଲେ। ଲର୍ଡ଼ ମିଣ୍ଟୋଙ୍କ ପ୍ରସ୍ତାବକୁ ଲର୍ଡ଼ ମୋରଲେ ଅନୁମୋଦନ କରିନଥିଲେ। ଏଥିରୁ ଶ୍ରୀ ଅରବିନ୍ଦଙ୍କ ଉଚ୍ଚ ବ୍ୟକ୍ତିତ୍ୱ ପ୍ରତି ସଂଭ୍ରମଭାବ ଥିବା ପ୍ରମାଣିତ ହୁଏ । ଶ୍ରୀ ଅରବିନ୍ଦ ଆଲିପୁର ଜେଲ୍‌ରେ ଥିବା ବେଳର ଅନୁଭୂତି–ଅଭିଜ୍ଞତାକୁ ଲିପିବଦ୍ଧ କରିଛନ୍ତି ବଙ୍ଗଳା ଭାଷାରେ। ସେ ପୁସ୍ତକର ନାମ ହେଲା – ‘କାରା କାହାଣୀ’। ‘କାରା’ ବୋଲି ଯେଉଁ ‘କୋଠରୀ’ ମିଳିଥିଲା, ତା’ର ଦୈର୍ଘ୍ୟ ଥିଲା ୦୯ଫୁଟ୍ ଓ ପ୍ରସ୍ଥ ଥିଲା ୦୫ଫୁଟ। ଝରକା ନ ଥିଲା। ତା’ରି ଭିତରେ ତାଙ୍କୁ ନିତ୍ୟକର୍ମ ସହ ଭୋଜନ–ଶୟନାଦି କାର୍ଯ୍ୟ କରିବାକୁ ପଡ଼ୁଥିଲା। ତାଙ୍କ ମନେହେଲା ଯୋଗୀ ହେବା ପାଇଁ । ଏହି କାରାବାସ ଜୀବନ ଥିଲା ଯେପରି ଏକ ପ୍ରସ୍ତୁତିପର୍ବ। କ୍ରମେ ସେ ବୈଦାନ୍ତିକ ଆତ୍ମଚିନ୍ତନରେ ମଗ୍ନ ରହିଲେ। କ୍ରମେ କାରାବାସ ତାଙ୍କୁ ଯୋଗ ସାଧନର ନିୟୋଜନ ପରି ବୋଧ ହେଲା। ଅନ୍ୟ ପକ୍ଷରେ ମାମଲାରେ ଅରବିନ୍ଦଙ୍କୁ ଦୋଷୀ ସାବ୍ୟସ୍ତ କରି କଠୋରତର ଦଣ୍ଡବିଧାନ ପାଇଁ ଲାଗିଗଲେ ତତ୍‌କାଳୀନ ଅତି ଚତୁର ସରକାରୀ ଓକିଲ ଏର୍ଡ଼ଲି ନୋର୍ଟନ୍। ସେପରି ଓକିଲଙ୍କ ସମ୍ମୁଖୀନ ହେବା ପାଇଁ ସାଧାରଣ ଅଧିବକ୍ତା ରାଜି ନଥିଲେ। ଏପରି ଏକ ଘଡ଼ିସନ୍ଧିରେ ଦେଶବନ୍ଧୁ ଚିତ୍ତରଂଜନ ଦାସ ଓକିଲାତି କଲେ ଅରବିନ୍ଦଙ୍କ ସପକ୍ଷରେ । ତାଙ୍କୁ ଜଣେ ବୈଦାନ୍ତିକ ଜାତୀୟତାବାଦୀ ବ୍ୟକ୍ତିତ୍ୱ ରୂପେ ପ୍ରମାଣ ଦର୍ଶାଇଲେ। ଅରବିନ୍ଦ ତାଙ୍କ ରଚନାରେ ଦେଶବାସୀଙ୍କୁ ଆତ୍ମଜାଗରଣର ବାର୍ତ୍ତା ଦେଇଛନ୍ତି। ତାକୁ ବିଦେଶୀ ସରକାରଙ୍କ ବିରୋଧରେ ଉତ୍ତେଜନାମୂଳକ ଉଦ୍‌ବୋଧନ କୁହାଯାଇ ନପାରେ। ଆଇନ ବିଶେଷଜ୍ଞ ତଥା ଅଧିବକ୍ତା ଚିତ୍ତରଂଜନଙ୍କ ଯୁକ୍ତି ପାଖରେ ସରକାରୀ ଓକିଲ ନୋର୍ଟନଙ୍କର ଚାତୁରୀ ମଳିନ ପଡ଼ିଯାଇଥିଲା। ଶ୍ରୀ ଅରବିନ୍ଦ ଘୋଷ ନିର୍ଦ୍ଦୋଷରେ ଖଲାସ ହୋଇ ପୂର୍ବପରି ଇଂରାଜୀରେ ‘କର୍ମଯୋଗିନ୍’ ଓ ବଙ୍ଗଳାରେ ‘ଧର୍ମ’ ପତ୍ରିକା ସଂପାଦନ କଲେ। ଇଂରେଜ ସରକାରଙ୍କର ଅରବିନ୍ଦଙ୍କ ବିରୋଧରେ କିନ୍ତୁ ଷଡ଼ଯନ୍ତ୍ର ଜାରି ରହିଥିଲା।

ଶ୍ରୀ ଅରବିନ୍ଦ ଚନ୍ଦନ ନଗରରୁ ବାହାରି ସମୁଦ୍ର ପଥରେ ଯାଇ ପଣ୍ଡିଚେରୀରେ ପହଂଚି ସେଠାରେ ବିଦ୍ୟାଳୟ ଚଳାଇଲେ । ସେତେବେଳେ ପଣ୍ଡିଚେରୀ ଥିଲା ଫରାସୀ ଶାସିତ। ସେ କାଳରେ ତାଙ୍କ ସହିତ ପଣ୍ଡିଚେରୀରେ ସାକ୍ଷାତ କରିଥିବା ବିଶେଷ ବ୍ୟକ୍ତିଗଣଙ୍କ ମଧ୍ୟରେ ଥିଲେ କବି ରବୀନ୍ଦ୍ରନାଥ ଠାକୁର ଓ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ। ଶ୍ରୀ ଅରବିନ୍ଦଙ୍କ ସଂପାଦନାରେ ପଣ୍ଡିଚେରୀରୁ ପ୍ରକାଶିତ ହେଲା ପତ୍ରିକା ‘ଆର୍ଯ୍ୟ’। ତାଙ୍କର ଶିକ୍ଷା–ପ୍ରଶିକ୍ଷଣାଦି କାର୍ଯ୍ୟ ଜାରି ରହିଲା। ତାଙ୍କୁ ସାହାଯ୍ୟ କଲେ ମୀରା ଆଲଫାସେ ନାମକ ଜନୈକ ଫରାସୀ ମହିଳା। ପରବର୍ତ୍ତୀ କାଳରେ ସେ ଶ୍ରୀମା ନାମରେ ପରିଚିତ ହେଲେ। ଉଭୟଙ୍କ ସହଯୋଗରେ ପଣ୍ଡିଚେରୀର ଶିକ୍ଷା ବ୍ୟବସ୍ଥା ସମୟର ଊର୍ଦ୍ଧ୍ୱରେ ଏକ ଆଦର୍ଶ ସ୍ଥାନୀୟ ଅନୁକରଣୀୟ ପନ୍ଥା। ପଣ୍ଡିଚେରୀର ଶିକ୍ଷାନୀତିକୁ ପୂର୍ଣ୍ଣାଙ୍ଗ ଶିକ୍ଷା କୁହାଯାଏ। ପଣ୍ଡିଚେରୀର ନୂଆ ନାମ ହେଲା ପୁଡ଼ୁଚେରି।

ଶ୍ରୀ ଅରବିନ୍ଦଙ୍କ ସମୟର ପଣ୍ଡିଚେରୀ ଆଶ୍ରମ ଏବେ ବିଶ୍ୱର ଅନ୍ୟତମ ଜଣାଶୁଣା ଶୈକ୍ଷିକ ମୂଳକ, ଯେଉଁଠି ଜ୍ଞାନ–କର୍ମ–ସଂଯମ–ସୌନ୍ଦର୍ଯ୍ୟ ସର୍ବୋପରି ଯୋଗର ଶୃଙ୍ଖଳିତ ପରିଚାଳନା ଉପଲବ୍ଧ ହୁଏ। ‘ଅରୋଭିଲ’ ମାନବଜାତି ପାଇଁ ଏକ ଆଦର୍ଶ ପ୍ରତୀକ।

ଯୋଗୀ ଶ୍ରୀ ଅରବିନ୍ଦଙ୍କର ପ୍ରମୁଖ ଗ୍ରନ୍ଥଗୁଡ଼ିକ ହେଲା ‘Life Divine’, ‘The Secret of Vedas’, ‘The Essay on Gita’, ‘The Synthesis of Yoga’, ‘The Future Poetry’, ଓ ‘Savitri- a Legend and Symbol’ ଶେଷୋକ୍ତଟି ହେଲା ଏକ ମହାକାବ୍ୟ। ଏହା ତିନିଖଣ୍ଡ, ବାରଗୋଟି ପର୍ବ ଓ ଅଣଚାଶ ଗୋଟି ସର୍ଗକୁ ନେଇ ପ୍ରଲମ୍ବିତ। ଏହାର ଧାଡ଼ି ସଂଖ୍ୟା ହେଲା ୨୩୮୩୭ । ଏଇ ମହାକାବ୍ୟରେ ନାରୀ ଚରିତ୍ରକୁ ପ୍ରମୁଖ ଭୂମିକା ଭାବରେ ବର୍ଣ୍ଣନା କରାଯାଇଛି। ଯୋଗ ସାଧନ ମାଧ୍ୟମରେ ଜରା–ବ୍ୟାଧି–ଦୁଃଖ–ଯନ୍ତ୍ରଣାରୁ ମୁକ୍ତି ସମ୍ଭବ – ଏଥିରେ ରହିଛି ମହାଶିକ୍ଷା। ଏହା ଶ୍ରୀ ଅରବିନ୍ଦଙ୍କର ଆଧ୍ୟାତ୍ମିକ ଅନୁଭୂତିର ଏକ କାବ୍ୟିକ ପରିପ୍ରକାଶ।

ଡିସେମ୍ବର ୦୫, ୧୯୫୦ ତାରିଖରେ ଶ୍ରୀଅରବିନ୍ଦଙ୍କର ମହାପ୍ରୟାଣ ଘଟିଲା । ପୁଡୁଚେରୀ ଆଶ୍ରମରେ ଏକ ଗଛତଳେ ତାଙ୍କୁ ସମାଧିସ୍ଥ କରାଗଲା । ଅରୋଭିଲର ଅର୍ଥ ହେଲା ଉଷାନଗରୀ । ପୁଡୁଚେର ଉତ୍ତର–ପୂର୍ବ ସୀମାରେ ୧୯୬୮, ଫେବ୍ରୁଆରୀ ୨୮ ତାରିଖରେ ଏହାର ଭିତ୍ତି ସ୍ଥାପିତ ହୋଇଥିଲା । ପୃଥିବୀର ୧୨୬ ଟି ଦେଶରୁ ମାଟି ଅଣାଯାଇ ନଗରୀର ଭିତ୍ତି ସ୍ଥାପନ କରାଗଲା । ପ୍ରତ୍ୟେକ ଦେଶରୁ ତରୁଣ–ତରୁଣୀମାନେ ମାଟି ଆଣି ମର୍ମର ପଥରରେ ତିଆରି ଏକ ପଦ୍ମକୋରକର ଗର୍ଭରେ ପକାଇଲେ । ସେ କୋରକର ମୁଖକୁ ବନ୍ଦ କରାଯାଇଛି । ଏହା ହେଉଛି ଅରୋଭିଲର ଆଦି ଭିତ୍ତିସ୍ଥାପନ । ଏପରି କରିବାର ଉଦ୍ଦେଶ୍ୟ ହେଲା, 'ଅରୋଭିଲ' ଉପରେ କାହାର ବ୍ୟକ୍ତିଗତ ଅଧିକାର ରହିବ ନାହିଁ । ଏହା ସମଗ୍ର ମାନବ ସମାଜର । ଏଠାରେ ରହୁଥିବା ଲୋକକୁ ଭଗବତ୍ ଚେତନାରେ ଉଦ୍‌ବୁଦ୍ଧ ହେବାକୁ ହେବ ।

ଶ୍ରୀ ଅରବିନ୍ଦଙ୍କ ଯୋଗ ସଂପର୍କରେ ଡକ୍ଟର ମାୟାଧର ମାନସିଂହ କହିଛନ୍ତି– ଶ୍ରୀ ଅରବିନ୍ଦ ହିଁ ଅତ୍ୟନ୍ତ ଦକ୍ଷତାର ସହିତ ଭାରତର ରହସ୍ୟସନ୍ଧାନୀ ପ୍ରାଚୀନ ଯୋଗ–ବିଦ୍ୟାକୁ ବୈଜ୍ଞାନିକ ବିବର୍ତ୍ତନବାଦ ଦେଇ ଏ ଯୁଗର ମଣିଷର ଆବଶ୍ୟକତାନୁଯାୟୀ ନୂତନ କରି ଠିଆ କରାଇଛନ୍ତି ଏବଂ ତାକୁ ଏକାଧାରରେ ସଂପୃକ୍ତ କରିଯାଇଛନ୍ତି ବିଂଶ ଶତାବ୍ଦୀର ବିଜ୍ଞାନ ଓ ଆମର ସୁପ୍ରାଚୀନ ଐତିହ୍ୟ ଓ ପ୍ରଜ୍ଞାମାନଙ୍କ ସହିତ । (ପୃ–୪୫୧) ଶ୍ରୀ ଅରବିନ୍ଦଙ୍କ ତ୍ୟାଗ ଓ ବିଶ୍ୱକୁ ଦାନ ସଂପର୍କରେ ଡକ୍ଟର ମାନସିଂହ କହନ୍ତି – ଯେତେବେଳେ ଶ୍ରୀ ଅରବିନ୍ଦ ଭାରତୀୟ ରାଜନୀତିର ନବୋଦିତ ସୂର୍ଯ୍ୟ ପରି ଉଠି ଆସୁଥିଲେ ଏବଂ ପୃଥିବୀର ବୃହତ୍ତମ ସାମ୍ରାଜ୍ୟର ମୂଳୋତ୍ପାଟନ ପାଇଁ ଦେଶବାସୀଙ୍କୁ ମୌଳିକ ଉପାୟ ସବୁ ବତାଇ ଚାଲିଥିଲେ ଯେତେବେଳେ ତାଙ୍କ ପାଇଁ ଭାରତୀୟ ରାଜନୀତିର ସକଳ ଗୌରବର ଦ୍ୱାର ଆପେ ଆପେ ଖୋଲିଆସୁଥିଲା, ଠିକ୍ ସେତିକିବେଳେ ସେ ସମସ୍ତ କ୍ରିୟା ଓ ପ୍ରଲୋଭନକୁ ପଛକୁ ପକାଇଦେଇ ଏକ ନିଃସଙ୍ଗ ଏକାକୀ ଯୋଗୀର ଜୀବନକୁ ବରିନେଲେ । ଏହା ତାଙ୍କ ପକ୍ଷରେ ଓ ପରବର୍ତ୍ତୀ ଲକ୍ଷ ଲକ୍ଷ ଧର୍ମସାଧକମାନଙ୍କ ପକ୍ଷରେ ଏକ ପରମ ଭାଗ୍ୟର ବିଷୟ । ସେ ଖୋଜିଲେ ଆଧୁନିକ ଯୁଗୋପଯୋଗୀ ଏକ ବିଜ୍ଞାନାନୁମୋଦିତ ଆଧ୍ୟାତ୍ମିକ ଜୀବନ–ଦର୍ଶନ ସର୍ବ ମାନବ ପାଇଁ ଏବଂ ତାହାହିଁ ସେ ଦେଇ ଯାଇଛନ୍ତି ବିଶ୍ୱକୁ ।

(ପୃ–୪୫୫)

**ସହାୟକ ପୁସ୍ତକ :**


୧. ନାୟକ, ଅର୍ଚ୍ଚନା : ଶ୍ରୀ ଅରବିନ୍ଦ ଓ ନୂତନ ପୃଥିବୀ

୨. ମାନସିଂହ, ମାୟାଧର: ମାନସିଂହ ଗ୍ରନ୍ଥାବଳୀ, ଅଷ୍ଟମ ଖଣ୍ଡ ।



ସେକ୍ଟର – ୨/୪୨୬

ନୀଳାଦ୍ରି ବିହାର, ଭୁବନେଶ୍ୱର–୨୧




# ମଧୁର ହ୍ରଦ ଅଂଶୁପା

ଚନ୍ଦ୍ରମଣି ସେଠୀ

ସୌନ୍ଦର୍ଯ୍ୟମୟୀ ପ୍ରକୃତିର ଅବର୍ଣ୍ଣନୀୟ ଲୀଳାସମ୍ଭାର ସୃଷ୍ଟି ପ୍ରାରମ୍ଭରୁ ପ୍ରସାରିତ । କେଉଁଠି କଣ୍ଟକମୟ ଅରଣ୍ୟ ତ, କେଉଁଠି ଶ୍ୟାମମୟ ତରୁ ତୃଣରେ ଆଚ୍ଛାଦିତ, କେଉଁଠି ବିସ୍ତୀର୍ଣ୍ଣମୟ ସମତଳ ଭୂମି ତ, କେଉଁଠି ଉଚ୍ଚନୀଚ ପ୍ରସ୍ତରମୟ କଙ୍କରିତ ଶୁଷ୍କ ଭୂମି । ପୁଣି କେଉଁଠି ଅତ୍ୟୁଚ୍ଚ ପର୍ବତମାଳାମାନଙ୍କର ମିଳନସ୍ଥଳୀରେ ତ୍ରିଭୁଜ କୋଣାକୃତି ବିପଦସଙ୍କୁଳ କଣ୍ଟକମୟ ସ୍ଥାନ ତ, କେଉଁଠି ଅତ୍ୟୁଚ୍ଚ ପର୍ବତମାଳାର ଶୀର୍ଷ ଦେଶରୁ କୁଳୁ କୁଳୁ ନାଦର ସର୍ପିଳ ଗତି ଝରଣାର ସ୍ରୋତ । ବାସ୍ତବ କ୍ଷେତ୍ରରେ ଦେଖିଲେ ପ୍ରକୃତି ଚିର ସୌନ୍ଦର୍ଯ୍ୟମୟୀ । ଏହି ପ୍ରକୃତିର ସୌନ୍ଦର୍ଯ୍ୟ ପରମ ପୁରୁଷଙ୍କର ସ୍ୱରୂପ । ଭାଗବତରେ ଭଗବାନ କହୁଛନ୍ତି –

ପ୍ରକୃତି ଭିନ୍ନ ରୂପ ହୋଇ, ମୋର ଶରୀରୁ ପ୍ରକାଶଇ ।

ଜୀବନ ଚକ୍ରକୁ ପରିକ୍ରମା କରି ପ୍ରତ୍ୟେକ ନଦୀ ସୀମାହୀନ ସମୁଦ୍ର ଅଭିମୁଖେ ପ୍ରବାହିତ । ପ୍ରକୃତିର ଏସବୁ ସ୍ୱୟଂ ସୌନ୍ଦର୍ଯ୍ୟ ଆପେ ଆପେ ପ୍ରକଟିତ ହୋଇ ଅପସରି ଯାଏ ଓ ପୁନଃ ନୂତନ ରୂପ ଧାରଣ କରିଥାଏ, ଯାହାକୁ କୁହାଯାଏ ପରମ ପୁରୁଷଙ୍କର ସ୍ୱୟଂ ଆବିର୍ଭାବ । ଋତୁଚକ୍ରର ଅନୁସରଣରେ ପ୍ରକୃତି ଭିନ୍ନ ଭିନ୍ନ ରୂପ ଧରିଥାଏ । ଋତୁ ଉପଯୋଗୀ ଶସ୍ୟକ୍ଷେତ୍ର ସାଙ୍ଗକୁ ଋତୁ ଉପଯୋଗୀ ପୁଷ୍ପ ଫଳ ପ୍ରକୃତି ବୁକୁରେ ଶୋଭା ପାଉଥାଏ । ତେଣୁ କୁହାଯାଏ –

ତରୁ–ତୃଣ ପୁଷ୍ପ ଗୁଚ୍ଛେ ପ୍ରକୃତି ମଣ୍ଡିତ<br>
ପରମ ପୁରୁଷଙ୍କର ଏ ସୃଷ୍ଟି ବିଚିତ୍ର<br>
ଜୀବ ଜଗତ ରକ୍ଷାର୍ଥେ ଅମୃତ ଭଣ୍ଡାର<br>
ସ୍ରଷ୍ଟାଙ୍କ ବିଚିତ୍ର ସୃଷ୍ଟି ଦିବ୍ୟ ଉପହାର ।

କବିବର ରାଧାନାଥଙ୍କୁ ଚିଲିକାର ସୌନ୍ଦର୍ଯ୍ୟ ଭାବନା ରାଜ୍ୟକୁ ବିହ୍ୱଳିତ କରିଥିଲା ତାଙ୍କର 'ଚିଲିକା' କାବ୍ୟରେ । ଯେପରି ଅସୀମ ଜଳରାଶିଯୁକ୍ତ ଚିଲିକାର ପ୍ରାକୃତିକ ରୂପ ତାଙ୍କୁ ବିହ୍ୱଳିତ କରିଥିଲା, ସେହିପରି ସୁବର୍ଣ୍ଣପୁର ଗ୍ରାମର ସ୍ୱର୍ଗତଃ ନିତ୍ୟାନନ୍ଦ ତ୍ରିପାଠୀଙ୍କୁ ଅଂଶୁପାର ଶୋଭା ବିହ୍ୱଳିତ କରିଥିଲା ତାଙ୍କ ରଚିତ 'ଅଂଶୁପା' କାବ୍ୟରେ ।

ଓଡ଼ିଶାର ମଧୁର ହ୍ରଦ କହିଲେ ଅଂଶୁପାକୁ ବୁଝାଏ । ଏହି ହ୍ରଦର ଜନ୍ମ ଚିରସ୍ରୋତା ମହାନଦୀରୁ । ଏହି ମଧୁର ହ୍ରଦ 'ଅଂଶୁପା' ଇତିହାସ ପୃଷ୍ଠାରେ ମଣ୍ଡିତ ହୋଇ ନଥିଲେ ହେଁ, ଏହାର ଐତିହାସିକ କିମ୍ବଦନ୍ତୀ ଜୀବନ୍ତ ଅବସ୍ଥାରେ ଉଜ୍ଜୀବିତ । ଏହି ହ୍ରଦର ଜୀବନୀ ଉଦ୍ଧାର କରାଗଲେ ବହୁ ଐତିହାସିକ ତଥ୍ୟ ଲୋକଲୋଚନକୁ ଆସିପାରିବ ।

ଓଡ଼ିଶାର କଟକ ଜିଲ୍ଲା ବାଙ୍କୀ ସବ୍ ଡିଭିଜନର ଉତ୍ତର ପାର୍ଶ୍ୱରେ ସରଣ୍ଡାଗଡ଼ ଅବସ୍ଥିତ । ପୂର୍ବେ ଏହି ସରଣ୍ଡା ଗଡ଼ଜାତ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏହି ସରଣ୍ଡାଗଡ଼ କେତେଗୁଡ଼ିଏ ଗ୍ରାମକୁ ନେଇ ଗଠିତ । ସେହି ଗ୍ରାମଗୁଡ଼ିକ ହେଲା – ବନ୍ଧାଳ, ଗୋପାଳପୁର, ଲୋଚନପୁର, ରତାଗଡ଼, ଗୋବିନ୍ଦପୁର, ନୂଆଗାଁ, ଘୋଡ଼ାବର, ସୁବର୍ଣ୍ଣପୁର, ନୂଆପାଟଣା, ଓସ୍ତିଆ, ବିଷ୍ଣୁପୁର, କଦଳୀବାଡ଼ି, ମାଳବିହାରପୁର, କନ୍ତପହଁରା, ଘୋଳପୁର ଓ ଜାଗିଆପଡ଼ା । ସରଣ୍ଡାଗଡ଼ରେ ଓଡ଼ିଶାର ମଧୁର ହ୍ରଦ ଅଂଶୁପା ଅବସ୍ଥିତ । ଏହି ହ୍ରଦର ଆୟତନ ୭୮୦ ଏକର । ଏହାର ପଶ୍ଚିମ ପାର୍ଶ୍ୱ ଏକ ପାହାଡ଼ ସହିତ ସଂଯୁକ୍ତ । ଏହି ପାହାଡ଼ଟିର ନାମ ସରଣ୍ଡା ପାହାଡ଼ । ଏହାର ଉଚ୍ଚତା ୩୫୦ ଫୁଟ୍ । ପାହାଡ଼ଟିକୁ ଅନୁଧ୍ୟାନ କଲେ ଏହା ଉତ୍ତର ପାର୍ଶ୍ୱର ମାଳବିହାର

ପୁରରୁ ଘୋଡ଼ାବର ଗ୍ରାମର ଉପର ସାହି ଭାଗବତ ମୁଣ୍ଡିଆ ପର୍ଯ୍ୟନ୍ତ ବ୍ୟାପ୍ତ । ଏହି ସରଣ୍ଡା ପାହାଡ଼ ଉପରେ ଏକ ଛୋଟ ରାଜବାଟୀ (ବାରୁଦ ଘର) ରହିଅଛି । କିମ୍ବଦନ୍ତୀ କହେ, ଏଇଠି ସାମୟିକ ଭାବେ ସୁବର୍ଣ୍ଣକେଶରୀ ରାଜା ରହୁଥିଲେ । ସେହି ରାଜବାଟୀ ନିକଟରେ ଭାଇବୋହୂ ଓ ଦେଢ଼ଶୁର କୂଅ ରହିଅଛି । ବର୍ଷସାରା ସେହି ପାହାଡ଼ ଉପର କୂଅରେ ଜଳ ରହିଥାଏ । ରାଜବାଟୀର ସାମ୍ନାରେ ରହିଛି 'କଉଡ଼ି ଘର' ଏବଂ ଏହାର ମୁଖଶାଳା ଭଗ୍ନ ଅବସ୍ଥାରେ ରହିଅଛି ।

ସମୟ ଥିଲା, ଏହି ଅଂଶୁପା ହ୍ରଦ ଚତୁଃପାର୍ଶ୍ୱରେ ଘଞ୍ଚ କଣ୍ଟକିତ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଏହା ଥିଲା ବନ୍ୟ ହିଂସ୍ର ଜନ୍ତୁ ଯଥା – ବ୍ୟାଘ୍ର, ସିଂହ, ଭାଲୁ, ହସ୍ତୀ ଓ ବିଭିନ୍ନ ପ୍ରଜାତିର ସର୍ପମାନଙ୍କର ଆଶ୍ରୟସ୍ଥଳ । ଏକ ଗ୍ରାମରୁ ଅନ୍ୟ ଏକ ଗ୍ରାମକୁ ଯାତାୟାତ କରିବା ଅତି ଦୁଃସହ ବ୍ୟାପାର ଥିଲା । ଅଂଶୁପା ହେଉଛି ସେହି ସରଣ୍ଡାଗଡ଼ର ଦର୍ପଣ । ଏହାର ଜଳରାଶିରେ କାଳକ୍ରମେ କେତେ ରୂପ ଉଙ୍କି ମାରିଛି, ସେ ଇତିହାସ କେବଳ ସେହି ଅଂଶୁପା ଜାଣେ ।

କେତେ ରୂପ ଆସେ ଅରୂପରେ ମିଶେ ସଂସାର ରହିଛି ସ୍ଥିର
ଅରୂପରୁ ପୁଣି ରୂପ ପ୍ରକାଶଇ ବିଚିତ୍ର ସୃଷ୍ଟି ବିଚାର ।
ଦର୍ପଣ ଦେଖିଛି ଶତଶତ ରୂପ ବର୍ଣ୍ଣନେ ପୂର୍ଣ୍ଣ ଅକ୍ଷମ
ପରମ ପୁରୁଷ ଦିବ୍ୟ ଲୀଳା ବ୍ୟାପ୍ତ ଭାବୁକକୁ କରେ ଭ୍ରମ ।
ସରଣ୍ଡା ମୁକୁର ଗଳେ ଗଳା ହାର ଅଂଶୁପା ଜଳେ ଶୋଭିତ
ବିଭୁ କୃପା ଭାର ଅସୀମ ଭଣ୍ଡାର ସଦାକାଳକୁ ଚକିତ ।

ଏହି ଅଂଶୁପା ଦେଖିଛି ସରଣ୍ଡା ଅଞ୍ଚଳର ଦୁଃଖ ଓ ସୁଖ । ରାଜାରାଜୁଡ଼ା ଶାସନ ଓ ବ୍ରିଟିଶ୍ ଶାସନ କବଳିତ ଇତିହାସର ମୂକସାକ୍ଷୀ ଏହି ଅଂଶୁପା । ସରଣ୍ଡା ଅଞ୍ଚଳ ଥିଲା ସ୍ୱାଧୀନତା ସଂଗ୍ରାମର ଏକ ବୀରଭୂମି । କେତେକ ସ୍ୱାଧୀନତା ସଂଗ୍ରାମୀ ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ଲଢ଼େଇ କରି କାରାବରଣ କରିଥିଲେ । ଘୋଳପୁର ଗ୍ରାମର ସ୍ୱର୍ଗତଃ ନାରାୟଣ ଚନ୍ଦ୍ର ସାହୁ ସ୍ୱାଧୀନତା ସଂଗ୍ରାମୀ ହିସାବରେ ଏହି ଅଞ୍ଚଳରେ ବିଶିଷ୍ଟ ଭୂମିକା ଗ୍ରହଣ କରି କାରାବରଣ କରିଥିଲେ । ଜଣେ ବିଶିଷ୍ଟ ବୈଦ୍ୟ ହିସାବରେ ସେ କାରାଗାର ମଧ୍ୟରେ ଆହତ ସଂଗ୍ରାମୀମାନଙ୍କର ଚିକିତ୍ସା କରୁଥିଲେ । ସୁବର୍ଣ୍ଣପୁର ଗ୍ରାମର ସ୍ୱର୍ଗତଃ ମଧୁସୂଦନ ପଟ୍ଟନାୟକ ସ୍ୱାଧୀନତା ସଂଗ୍ରାମୀ ହିସାବରେ ବ୍ରିଟିଶ୍ ଶାସକଙ୍କଠାରୁ ଲାଠିମାଡ଼ ଖାଇ ତାଙ୍କର ଦାନ୍ତ ଭାଙ୍ଗି ଯାଇଥିଲା ଏବଂ ସେ ଦେଶ ମାତୃକାର ସମ୍ମାନାର୍ଥେ କାରାବରଣ କରିଥିଲେ ।

ଅଂଶୁପା ହ୍ରଦ ହେଉଛି ଐଶ୍ୱରୀକ ଶକ୍ତି ବ୍ୟାପ୍ତ ଏକ ଜଳଭଣ୍ଡାର । ଓଡ଼ିଶାର ଏହା ହେଉଛି ବୃହତ୍ ମଧୁର ହ୍ରଦ । ଏହାର ଜଳ ମଧୁର, ଅମୃତ ତୁଲ୍ୟ । ପ୍ରଭାତ ରବିର ରକ୍ତିମ ଝଲକ ସ୍ପର୍ଶ କରି କମଳ ରକ୍ତିମ ଶୋଭା ବର୍ଦ୍ଧନ କରି ହ୍ରଦର ଜଳରାଶି ଉପରେ କୋମଳ ଶୀତଳ ବତାସରେ ଢ଼ଳଢ଼ଳ ହୋଇ କାମାସକ୍ତ ଭ୍ରମରକୁ ଆକର୍ଷଣ କରୁଥାଏ ।

ପୁନଶ୍ଚ ପଦ୍ମ ପତ୍ର ଉପରେ ଜଳବିନ୍ଦୁ ଢଳଢଳ ହୋଇ ରବିର ରକ୍ତିମ ଆଭା ଲାଭ କରି ଅପୂର୍ବ ଲୋହିତ ଅଳଙ୍କାର ଭୂଷିତ ସ୍ୱରୂପ ହ୍ରଦର ଶୋଭା ବର୍ଦ୍ଧନ କରିଥାଏ । କାମାସକ୍ତ ଭ୍ରମର ଗୁଣୁଗୁଣୁ ଶବ୍ଦ କରି ପଦ୍ମ ଫୁଲର ପାଖୁଡ଼ାକୁ ବଙ୍କିମ ଅଙ୍ଗରେ ଦୋଳାଇ ମଧୁ ସଂଗ୍ରହ କରୁଥାଏ । ଏହା ହେଉଛି ପ୍ରେମିକା ସହିତ ପ୍ରେମିକର ଅପୂର୍ବ ମିଳନ । ପ୍ରଭାତ ସମୟରେ ବିବିଧ ପ୍ରଜାତିର ବିହଙ୍ଗମାନଙ୍କର କଳରବ ଅଂଶୁପା ଜଳରାଶିର ଶୋଭା ବର୍ଦ୍ଧନ କରି ଏକ ପ୍ରାକୃତିକ କୋଳାହଳ ସୃଷ୍ଟି କରିଥାଏ । ଏହା ସେହି ପରମେଶ୍ୱରଙ୍କର ଓଁକାର ବେଦ ଝଙ୍କାର, ଯାହାକି ଏ ଅଞ୍ଚଳବାସୀଙ୍କ ପାଇଁ ଏକ ହୃଦୟସ୍ପର୍ଶୀ ନୈବେଦ୍ୟ । ପକ୍ଷୀମାନେ ଜଳରାଶି ଉପରେ ଆନନ୍ଦରେ କୋଳାହଳ କରି ଉଡ଼ି ଜଳ ଉପରେ ନିଜ ଶରୀରକୁ ସ୍ପର୍ଶ କରାଇ ଘୂରି ବୁଲନ୍ତି । ସେମାନଙ୍କର ରୂପ ଅଂଶୁପା ଜଳରାଶି ଉପରେ ଐଶ୍ୱରୀକ ଶକ୍ତି ଭରି ଏକ ଅପ୍ରାକୃତ ପ୍ରେମର ବାତାବରଣ ସୃଷ୍ଟି କରେ । ଅଂଶୁପାର ମଧୁର ଜଳରେ ମଧୁର ମତ୍ସ୍ୟମାନଙ୍କର ଲୀଳା ଅତୀବ ଆକର୍ଷଣୀୟ । ମତ୍ସ୍ୟମାନେ ଜଳ ଉପରକୁ ଲମ୍ଫ ପ୍ରଦାନ କରି ପୁନର୍ବାର ଜଳ ମଧ୍ୟରେ ଘୂରି ବୁଲନ୍ତି । ସେମାନଙ୍କର ଆନନ୍ଦ ହିଁ ପରମେଶ୍ୱରଙ୍କ ଖେଳ ।

ତଦ୍ ସଦୃଶ ରାତ୍ରରେ ଚନ୍ଦ୍ର ଉଦୟର ଝଲକ ସ୍ପର୍ଶ କରି କୁମୁଦିନୀ ଅଂଶୁପା ଜଳରାଶି ଉପରେ ହସି ବସେ । ରବି ସହିତ କମଳର ସମ୍ପର୍କ ଓ ଚନ୍ଦ୍ର ସହିତ କୁମୁଦିନୀର ସମ୍ପର୍କ, ପ୍ରେମିକ ଓ ପ୍ରେମିକାଙ୍କ ସମ୍ପର୍କ ସଦୃଶ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ ପ୍ରେମ ସୁଧାନିଧିରେ ଦର୍ଶାଇଛନ୍ତି –

ଦୂରେ ଥିଲେ ପାଶେ ଥିଲା ପରି ଥିବୁ ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ

ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ସେ' ଯେ ଅଟଇ ତାହାର ।

ଅଂଶୁପା ଶିକ୍ଷା ଦିଏ ଭକ୍ତ ହିଁ ଭଗବାନଙ୍କ ସହିତ ମିଳନ ଏବଂ ପ୍ରେମିକ ହିଁ ପ୍ରେମିକା ସହିତ ମିଳନ । ଐଶ୍ୱରୀକ ମିଳନ ବା ମନର ମିଳନ ହିଁ ବାସ୍ତବ ପ୍ରେମ ।

ଗ୍ରୀଷ୍ମ ଋତୁରେ ପ୍ରଚଣ୍ଡ ରୌଦ୍ରତାପ ଦ୍ୱାରା ଅଂଶୁପାର ଚତୁଃପାର୍ଶ୍ୱ ରୁକ୍ଷ ରୂପ ଧାରଣ କରିଥାଏ । ବର୍ଷାଋତୁରେ ଏହାର ଚତୁଃପାର୍ଶ୍ୱ ଶ୍ୟାମ ତରୁ ତୃଣରେ ଚହଟି ଉଠେ । ମହାନଦୀରେ ବନ୍ୟା ଆସିଲେ ଅଂଶୁପା ହୋଇଥାଏ ପୂର୍ଣ୍ଣଗର୍ଭା । ପଦ୍ମ ଓ କୁମୁଦିନୀମାନେ ତାଙ୍କର ସୌନ୍ଦର୍ଯ୍ୟରୁ ବିରତି ନେଇଥା'ନ୍ତି ।

ପୁନଶ୍ଚ ଶୀତଋତୁ ଉପନୀତ ହେଲେ ଅଂଶୁପାର ଅପରୂପ ଶୋଭା ଅତୀବ ଅବର୍ଣ୍ଣନୀୟ । ସୁଶୀତଳ ସ୍ୱଚ୍ଛ ଜଳରାଶି, କମଳ ଓ କୁମୁଦିନୀଙ୍କର ପ୍ରସ୍ଫୁଟିତ ଶୋଭାରାଶି, ବିବିଧ ପ୍ରଜାତିର ବିହଙ୍ଗମାନଙ୍କର କୋଳାହଳ, ସ୍ୱଚ୍ଛ ଓ ଶୁଷ୍କ ପ୍ରକୃତିର ସ୍ୱାସ୍ଥ୍ୟକର ପରିବେଶ ପର୍ଯ୍ୟଟକମାନଙ୍କ ପାଇଁ ଏକ ଉପହାର । ବିଶେଷତଃ ବିହଙ୍ଗମାନଙ୍କର ସମାଗମ ଓ କାକଳି ଅଂଶୁପାକୁ ବିଭୁକୃପାରେ ମୁଖରିତ କରିଥାଏ । ତେଣୁ କୁହାଯାଏ –

ବିହଙ୍ଗ କୂଜନ ସମୀର ମନ୍ଥନ କୋଳାହଳ ଶବ୍ଦ ଛୁଟେ
ପରମ ପୁରୁଷ ଲୀଳା ବିସ୍ତାରିଣ ପୁଲ୍ଲକିତ ଘଟେଘଟେ ।

ଅଂଶୁପାର ଚତୁଃପାର୍ଶ୍ୱ ଗ୍ରାମଗୁଡ଼ିକର ଅଧିବାସୀମାନେ କୃଷିଜୀବୀ । ବର୍ଷସାରା ଏହାର ଚତୁଃପାର୍ଶ୍ୱର କ୍ଷେତ ଭୂମିଗୁଡ଼ିକ ଶସ୍ୟଶ୍ୟାମଳା । କୃଷିଜୀବୀମାନେ ଅକ୍ଳାନ୍ତ ପରିଶ୍ରମ କରି ଜୀବିକା ନିର୍ବାହ କରନ୍ତି । ଅଂଶୁପା ହ୍ରଦର ଜଳ ହିଁ ଚାଷ ପାଇଁ ଯଥେଷ୍ଟ ସହାୟକ ହୋଇଥାଏ । ପୁନଶ୍ଚ ମଧୁର ମତ୍ସ୍ୟ ଚାଷ ପାଇଁ ଏହା ଉତ୍କୃଷ୍ଟ ସ୍ଥାନ । ଅଂଶୁପା ହ୍ରଦର କୂଳରେ ସରଣ୍ଡା ବିଦ୍ୟାପୀଠ ନାମକ ଏକ ହାଇସ୍କୁଲ ୧୯୫୯ ମସିହାରୁ ଗଢ଼ି ଉଠିଛି । ଏହାର ତଟଦେଶରେ ଅଂଶୁପା ଶିକ୍ଷା ଏବଂ ବୈଷୟିକ ମହାବିଦ୍ୟାଳୟ ଏ ଅଞ୍ଚଳର ଅଧିବାସୀଙ୍କ ପାଇଁ ଏକ ବଳିଷ୍ଠ ଅବଦାନ । ଏହି ଅଞ୍ଚଳର ଅଧିବାସୀଙ୍କ ସ୍ୱାସ୍ଥ୍ୟ ସେବା ନିମିତ୍ତ ଏକ ସ୍ୱାସ୍ଥ୍ୟସେବା କେନ୍ଦ୍ର ଏହି ଅଂଶୁପା କୂଳରେ ଅବସ୍ଥିତ । ଜନସାଧାରଣଙ୍କ ନିରାପତ୍ତା ଓ ଶାନ୍ତି ଶୃଙ୍ଖଳା ନିମିତ୍ତ ଏଠାରେ ଏକ ପୋଲିସ୍ ବିଟ୍ ଘର ସ୍ଥାପନ କରାଯାଇଛି । ଏହାର କୂଳରେ ଡାକବଙ୍ଗଳା ସ୍ଥାପନ ସହିତ ଛୋଟ ଛୋଟ ଦୋକାନ ଗଢ଼ି ଉଠିଛି ।

ଓଡ଼ିଶା ସରକାର ଏହି ମଧୁର ହ୍ରଦ ଅଂଶୁପାକୁ ଏକ ପର୍ଯ୍ୟଟନ ସ୍ଥଳୀ ରୂପେ ବିକାଶ କରିବାକୁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଶ୍ରୀଯୁକ୍ତ ଅଜିତ୍ କୁମାର ତ୍ରିପାଠୀ ଯେତେବେଳେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଥିଲେ ତାଙ୍କର ଆପ୍ରାଣ ଉଦ୍ୟମ ହିଁ ବର୍ତ୍ତମାନ ବିକାଶମୁଖୀ ହେବାକୁ ଯାଉଛି । ଅଂଶୁପା ହ୍ରଦର ଚତୁଃପାର୍ଶ୍ୱ ପୁଷ୍ପଗୁଚ୍ଛ ଉଦ୍ୟାନରେ ଶୋଭିତ । ଏହାର ପୁନଃରୁଦ୍ଧାର ପାଇଁ ସରକାରଙ୍କ ଉଦ୍ୟମ ଅବ୍ୟାହତ ରହିଛି । ପର୍ଯ୍ୟଟକମାନଙ୍କ ପାଇଁ ଅଂଶୁପା ବର୍ତ୍ତମାନ ହୋଇଛି ଏକ ଆକର୍ଷଣର କେନ୍ଦ୍ର । ଅଂଶୁପା କୂଳରେ ବାଲୁକେଶ୍ୱର ମନ୍ଦିର ଓ ମା' ଅନ୍ଧାର ଘର ବାଉତୀ ମନ୍ଦିର ସମସ୍ତଙ୍କ ପାଇଁ ଏକ ଆକର୍ଷଣୀୟ ଶକ୍ତିପୀଠ । ପର୍ଯ୍ୟଟକମାନଙ୍କ ମନୋରଞ୍ଜନ ପାଇଁ ଭୋଜିଭାତର ଆୟୋଜନ ସ୍ଥଳ (ପିକ୍‌ନିକ୍ ସ୍ପଟ୍) ପ୍ରସ୍ତୁତ କରାଯାଇଛି । ବହୁ ସଂଖ୍ୟକ ପର୍ଯ୍ୟଟକ ଯାନବାହନ ଧରି ଏହାର ତଟଦେଶରେ ରୁଣ୍ଡ ହୋଇ ଅଂଶୁପାର ଶୋଭାରାଶି ଉପଭୋଗ କରନ୍ତି । ମୁଖ୍ୟତଃ ଛୁଟିଦିନ ମାନଙ୍କରେ ବିପୁଳ ସଂଖ୍ୟକ ପର୍ଯ୍ୟଟକ ରୁଣ୍ଡ ହୋଇଥା'ନ୍ତି । ଶହଶହ ଯାନବାହନ ଏହି ଦିନଗୁଡ଼ିକରେ ଦେଖିବାକୁ ମିଳେ । ଅଂଶୁପାରେ ନୌକା ବିହାର ପାଇଁ ବୋଟ୍‌ର ବ୍ୟବସ୍ଥା କରାଯାଇଛି । ଏହା ପର୍ଯ୍ୟଟକମାନଙ୍କ ପାଇଁ ଏକ ଆକର୍ଷଣର ପ୍ରତୀକ । ବର୍ତ୍ତମାନ ବାଙ୍କୀ ଗଡ଼ର ଜାତ ମୁଣ୍ଡିଆଠାରୁ ସୁବର୍ଣ୍ଣପୁର ପର୍ଯ୍ୟନ୍ତ ମହାନଦୀରେ ଏକ ପୋଲ ନିର୍ମାଣ ଉକ୍ତ ଅଞ୍ଚଳବାସୀଙ୍କ ପାଇଁ ଏକ ସମୃଦ୍ଧ ଉପହାର । ଏହାଦ୍ୱାରା ଅଂଶୁପା ତଟଦେଶରେ ଦୈନିକ ଶହଶହ ଯାନବାହନ ଗମନାଗମନ ଦ୍ୱାରା ଅଂଶୁପା ହ୍ରଦର ଐତିହ୍ୟ ଓ ଗୌରବ ବୃଦ୍ଧି ପାଇବ । ଅଂଶୁପା ହେବ ଏକ ଜାତୀୟ ପର୍ଯ୍ୟଟନ ସ୍ଥଳୀ ଏବଂ ଆମ ରାଜ୍ୟର ବିଭବ ।

ମଧୁର ହ୍ରଦ ଅଂଶୁପାର ପଶ୍ଚିମ ପାର୍ଶ୍ୱରେ ସରଣ୍ଡା ପାହାଡ଼ ଦଣ୍ଡାୟମାନ । ଏହି ପାହାଡ଼ର ଉଚ୍ଚତା ୩୫୦ ଫୁଟ୍ । ଏହାର ପାଦ ଦେଶରେ ଗାଈଆଳ ହାତରେ ପାଞ୍ଚଣ ଧରି ଗାଈ ଗୋଠ ପଛରେ ଅତି ଆନନ୍ଦରେ ଗୀତଗାଇ ଘୂରି ବୁଲେ ।

ସବୁଜ ଶ୍ୟାମ ପାହାଡ଼ ଉପରକୁ ଏକ ପ୍ରଶସ୍ତ ବଙ୍କିମ ରାସ୍ତା ବାରୁଦ ଘର ପର୍ଯ୍ୟନ୍ତ ନିର୍ମାଣ କରାଯାଇଛି । ସେହି ବାରୁଦ ଘର (ରାଜବାଟୀ) ନିକଟରେ ଥିବା ଭାଇବୋହୂ ଓ ଦେଢ଼ଶୂର କୂଅ ଏବଂ କଉଡ଼ି ଘରର ରକ୍ଷଣାବେକ୍ଷଣ କରାଯାଇଛି । ସେହି ପାହାଡ଼ ଉପରେ ଏକ ମିନାର

ପର୍ଯ୍ୟଟକମାନଙ୍କ ଆକର୍ଷଣ ପାଇଁ ନିର୍ମାଣ କରାଯାଇଛି । ସେଠାରେ ବିଦେଶୀ ପର୍ଯ୍ୟଟକମାନଙ୍କ ଆଶ୍ରୟ ପାଇଁ ବାଉଁଶ ଘରର ନିର୍ମାଣ ଅତି ଆକର୍ଷକ ଓ ଉପଭୋଗ୍ୟ । ପାହାଡ଼ ଉପରକୁ ବିଦ୍ୟୁତ୍ ସଂଯୁକ୍ତ ସହିତ ଜଳଯୋଗାଣ ବ୍ୟବସ୍ଥା ମଧ୍ୟ କରାଯାଇଛି । ସେହି ବାରୁଦ ଘର ପାର୍ଶ୍ୱସ୍ଥ କଙ୍କରିତ ପ୍ରସ୍ତର ଭୂମିକୁ ସମତଳ କରାଯାଇ ଘାସର ଶ୍ୟାମ ଗାଲିଚା ବିଛାଇ ଦିଆଯାଇଛି ଏବଂ ଜଳ ସିଞ୍ଚନ ପ୍ରକ୍ରିୟା ଦ୍ୱାରା ତାହାକୁ ଚିର ସବୁଜ ଓ ପ୍ରସ୍ଫୁଟିତ ପୁଷ୍ପ ଭରା ଉଦ୍ୟାନରେ ପରିଣତ କରାଯାଇଛି । ଏହାର ତତ୍ତ୍ୱାବଧାନ ଆଠଗଡ଼ ବନ୍ୟ ଉପଖଣ୍ଡ ଦ୍ୱାରା ପରିଚାଳିତ । ସେ ସ୍ଥାନର ନିରାପତ୍ତା ପାଇଁ ବନ୍ୟ ରକ୍ଷକ ନିଯୁକ୍ତ ହୋଇଛନ୍ତି । କିଛି ମହିଳା ଉକ୍ତ ସ୍ଥାନର ରକ୍ଷଣାବେକ୍ଷଣ ପାଇଁ ନିଯୁକ୍ତ ହୋଇଛନ୍ତି । ସେହି ପାହାଡ଼ ଉପରେ ବସି ଚତୁଃପାର୍ଶ୍ୱକୁ ଦୃଷ୍ଟି ନିକ୍ଷେପ କଲେ ଅଂଶୁପା ସମେତ ସମସ୍ତ ଅଞ୍ଚଳର ଶୋଭା ଭାବୁକକୁ ଆକର୍ଷଣ କରିଥାଏ ।

ଏହି ପାହାଡ଼ର ତଳ ଏବଂ ଉପର ଘଞ୍ଚ କଣ୍ଟକମୟ ଅଞ୍ଚଳରେ ଅଜଗର ସର୍ପ, ହେଟା ବାଘ, ଶୃଗାଳ ଓ ମୟୂରମାନେ ଦେଖିବାକୁ ମିଳନ୍ତି ।

ଆଜି ମଧୁର ଅଂଶୁପା ହ୍ରଦ ଆନନ୍ଦ ମୁଖର ଏବଂ ଶହଶହ ପର୍ଯ୍ୟଟକମାନଙ୍କର ଆକର୍ଷଣର କେନ୍ଦ୍ର । ଓଡ଼ିଶା ସରକାରଙ୍କର ଏହା ଏକ ପର୍ଯ୍ୟଟନ ସ୍ଥଳୀ । ସରଣ୍ଡାବାସୀଙ୍କ ପାଇଁ ଏହା ଏକ ଉପହାର । ବାସ୍ତବିକ୍ ଆଜି ମଧୁର ହ୍ରଦ 'ଅଂଶୁପା' ସାଜିଛି ନବବଧୂ ବେଶ ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ
ମଧୁପାଟଣା, କଟକ-୧୦

## ପି.ପି.ପି. ପଦ୍ଧତିରେ କାର୍ଯ୍ୟାନ୍ୱୟନ ପାଇଁ ୫ଟି ପ୍ରକଳ୍ପ ଅନୁମୋଦିତ

ସରକାରୀ – ବେସରକାରୀ ସହଭାଗିତା (ପି.ପି.ପି.) ପଦ୍ଧତିରେ ୫ଟି ନୂତନ ପ୍ରକଳ୍ପ କାର୍ଯ୍ୟାନ୍ୱୟନ ପାଇଁ ଅନୁମୋଦିତ ହୋଇଛି । ସଚିବାଳୟଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ଆଦିତ୍ୟ ପ୍ରସାଦ ପାଢ଼ୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ କ୍ଷମତା ସଂପନ୍ନ ବୈଠକ ଏହି ଅନୁମୋଦନ ଦେଇଛନ୍ତି । ସରକାରୀ- ଘରୋଇ ସହଭାଗିତା ଭିତ୍ତିରେ କରାଯାଉଥିବା ଭିତ୍ତିଭୂମି ବିକାଶ ପ୍ରକଳ୍ପଗୁଡ଼ିକର କାର୍ଯ୍ୟାନ୍ୱୟନରେ ଗୁଣାତ୍ମକ ମାନର ଉପଯୁକ୍ତ ତଦାରଖ ନିମନ୍ତେ ମୁଖ୍ୟ ଶାସନ ସଚିବ ସଂପୃକ୍ତ ବିଭାଗମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ପି.ପି.ପି. ପ୍ରକଳ୍ପ ଦାୟିତ୍ୱରେ ଥିବା ପ୍ରମୁଖ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ଜେନା ବିଭିନ୍ନ ପ୍ରକଳ୍ପର ସ୍ଥିତି ତତ୍ ସମ୍ବନ୍ଧିତ ବିଷୟବସ୍ତୁ ଆଲୋଚନା ନିମନ୍ତେ ଉପସ୍ଥାପନ କରିଥିଲେ । ପ୍ରକଳ୍ପଗୁଡ଼ିକର ପ୍ରଗତି ବିଷୟରେ ସମୀକ୍ଷା କରି ସମୟସାରଣୀ ଅନୁସାରେ ନିର୍ଦ୍ଧାରିତ କାର୍ଯ୍ୟ ପୂର୍ଣ୍ଣାଙ୍ଗ କରିବା ନିମନ୍ତେ ମୁଖ୍ୟ ଶାସନ ସଚିବ ନିର୍ଦ୍ଦେଶ ଦେଇଥିଲେ । ବୈଠକରେ ମୁଖ୍ୟତଃ ଭୁବନେଶ୍ୱର ମହାନଗର ନିଗମ ଅଞ୍ଚଳରେ ଗ୍ରିନ୍ ଫିଲ୍ଡ୍ ହସ୍ପିଟାଲ ଏବଂ ହେଲ୍‌ଥ କେୟାର ନେଟ୍‌ୱାର୍କ ପ୍ରକଳ୍ପ, ଝାରସୁଗୁଡାଠାରେ ସୁପର ସ୍ପେସାଲିଟି ହୃଦରୋଗ ଚିକିତ୍ସା କେନ୍ଦ୍ର ଏବଂ ୫ଟି ସଡ଼କ ଓ ଫ୍ଲାଏ ଓଭର ନିର୍ମାଣ ଉପରେ ଆଲୋଚନା ହୋଇଥିଲା । ପ୍ରାପ୍ତ ସୂଚନାରୁ ଜଣାପଡ଼ିଛି, ଗ୍ରିନ୍ ଫିଲ୍ଡ ହେଲଥ୍ ନେଟ୍‌ୱାର୍କରେ ମହାନଗରସ୍ଥିତ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକର ବିକାଶ କରାଯିବା ସହ ଅଧିକ ୪୯୬ ବେଡ୍ ପ୍ରତିଷ୍ଠା କରାଯିବ । ଏଥିପାଇଁ ୨୫୫ କୋଟି ଟଙ୍କାର ପ୍ରାଥମିକ ଆକଳନ କରାଯାଇଛି । ଝାରସୁଗୁଡାଠାରେ ପ୍ରତିଷ୍ଠା ହେବାକୁ ଥିବା ହୃଦ୍‌ରୋଗ ହସ୍ପିଟାଲରେ ବେଡ୍ ସଂଖ୍ୟା ୫୦ ରୁ ୧୦୦କୁ ବୃଦ୍ଧି କରିବା ପାଇଁ ବୈଠକରେ ନିଷ୍ପତ୍ତି ହୋଇଥିଲା । ଏଥି ସହିତ ଏହି ହସ୍ପିଟାଲରେ ଆନୁଷଙ୍ଗିକ କ୍ଲିନିକାଲ୍ ସ୍ପେସିଆଲାଇଜେସନ୍ ୟୁନିଟ୍ ପ୍ରତିଷ୍ଠା ପାଇଁ ମଧ୍ୟ ନିଷ୍ପତ୍ତି ହୋଇଥିଲା । କେନ୍ଦୁଝର ପି.ଡ଼ବ୍ଲ୍ୟୁ.ଡ଼ି ସର୍କଲର ଯୋଡାଠାରେ ଫ୍ଲାଏ ଓଭର, କଟକ ସର୍କଲର କନ୍ଦରପୁରରୁ ପାରାଦ୍ୱୀପ ରାସ୍ତା, କେନ୍ଦୁଝର ସର୍କଲର ନରଣପୁର – ପଣ୍ଡାପଡା- ବାହାଣୀପାଳ- ଦେବୁରି ରାସ୍ତା, ବାଲେଶ୍ୱର ସର୍କଲ ଅନ୍ତର୍ଗତ ଭଦ୍ରକ – କୋଠାର- ଆରଡ଼ୀ ରାସ୍ତା ଏବଂ ବାଲେଶ୍ୱର ସର୍କଲର ବିଶୋଇ – ରାଇରଙ୍ଗପୁର ରାସ୍ତା ଆଦିକୁ ପି.ପି.ପି. ପଦ୍ଧତିରେ ନିର୍ମାଣ କରିବାକୁ ବୈଠକରେ ନିଷ୍ପତ୍ତି ହୋଇଥିଲା ।

# ବିଦ୍ୟୁତ୍ ଶକ୍ତି ସଂରକ୍ଷଣର ସରଳ ଉପାୟ

ଗୋଲକ ବିହାରୀ ସାହୁ

ସମସ୍ତେ ଚାହାନ୍ତି ସୁଖ ଓ ଶାନ୍ତିର ସହିତ ଜୀବନଯାପନ କରିବା ପାଇଁ। ସୁଖ ଓ ଶାନ୍ତି ପାଇଁ ଏକ ସଭ୍ୟ ସମାଜ ଏବଂ ଉନ୍ନତ ଚିନ୍ତାଧାରା ଆବଶ୍ୟକ। ସଭ୍ୟତାର କ୍ରମବିକାଶ ସହିତ ସଭ୍ୟ ସମାଜର ପ୍ରଗତି ପାଇଁ ଜନସାଧାରଣଙ୍କ ସହଯୋଗ ନିତାନ୍ତ ଜରୁରୀ। ଏହି ସହଯୋଗକୁ ପାଥେୟ କରି ଆମେ ଭବିଷ୍ୟତ ପାଇଁ ଶକ୍ତି ସଞ୍ଚୟ କରି ରଖିପାରିବା ଏବଂ ସମ୍ଭାବ୍ୟ ବିଦ୍ୟୁତ୍ ସଂକଟକୁ ଏଡାଇ ଦେଇ ପାରିବା। ଆମ ଜାଣତରେ ହେଉ ବା ଅଜାଣତରେ ହେଉ ପ୍ରତିଦିନ ଆମେ ସମସ୍ତେ କିଛି ନା କିଛି ବିଦ୍ୟୁତ୍ ଶକ୍ତି ନଷ୍ଟ କରି ଚାଲିଛୁ। ଘରେ ପିଲାମାନେ ପାଠ ପଢୁଥିବା ସମୟରେ ପଙ୍ଖା ଓ ଲାଇଟ୍‌ମାନଙ୍କର ସୁଇଚ୍ ସବୁ ଅନ୍ କରିଥାନ୍ତି। ବେଳେବେଳେ ସେହି ପଢିବା କୋଠରି ଛାଡି ଅନ୍ୟ ଆଡେ ଚାଲି ଗଲେ ମଧ୍ୟ ପଙ୍ଖା ଓ ଲାଇଟ୍‌ର ସୁଇଚ ବନ୍ଦ କରିବା କଥା ଭୁଲିଯାଇଥାନ୍ତି। ଏଣୁ ଏହି ଅବସ୍ଥାକୁ ଚିନ୍ତା କଲେ ଯଦି ସେହି ଘରେ ପ୍ରତିଦିନ ଏହିପରି ମାତ୍ର ୩୦ ମିନିଟ୍ ସୁଇଚ ବନ୍ଦ ନ ହୁଏ, ତେବେ ମାସକୁ ପାଖାପାଖି ୧୦ରୁ ୧୫ ୟୁନିଟ୍ ବିଦ୍ୟୁତ୍ ଶକ୍ତି ଅପଚୟ ହୋଇଥାଏ। ସାରା ରାଜ୍ୟ କଥା ଚିନ୍ତା କଲେ ମାସକୁ ସାଢେ ସାତ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ନଷ୍ଟ ହେଉଛି ।

ବିଦ୍ୟୁତ୍ ବିନା ଏବେ ଜୀବନ ଦୁର୍ବିସହ ହୋଇ ପଡିବ। ଆମେ ମନଇଚ୍ଛା ବିଦ୍ୟୁତ୍ ବ୍ୟବହାର କରିବା ପୂର୍ବରୁ ଟିକେ ଆମ ପରିବେଶ କଥା ମଧ୍ୟ ଚିନ୍ତା କରିବା। ଗୋଟିଏ ୟୁନିଟ୍ ବିଦ୍ୟୁତ୍ ଶକ୍ତି ତିଆରି ହେବା ପାଇଁ ପ୍ରାୟ ୦.୭୬ କିଲୋଗ୍ରାମ କୋଇଲା ପୋଡାଯାଇଥାଏ, ଯହିଁରୁ ସେହି ପରିମାଣର ଅଙ୍ଗାରକାମ୍ଳ ଗ୍ୟାସ ନିର୍ଗତ ହୋଇ ଆମ ପରିବେଶକୁ ଦୂଷିତ କରିଥାଏ। ଆଜି ଆମେ ସମସ୍ତେ ସଭ୍ୟ ଓ ଶିକ୍ଷିତ। ଆମେ କଅଣ ଚାହିଁବା ନାହିଁ ବିଦ୍ୟୁତ୍ ଶକ୍ତି ପରି ଅମୂଲ୍ୟ ସମ୍ପଦର ଅଯଥା ଅପଚୟକୁ ରୋକିବା ପାଇଁ।

ଆଜି ସାରା ଦେଶରେ 'ଶକ୍ତି ସଂରକ୍ଷଣ' ଉପରେ ସମସ୍ତଙ୍କର ଧ୍ୟାନ। ଆସନ୍ତୁ ବିଦ୍ୟୁତ୍ ଶକ୍ତିକୁ ଟିକେ ଜଗିରଖି, ହିସାବ କରି ଓ ସତର୍କତାର ସହ ବ୍ୟବହାର କଲେ ଆମେ ନିଶ୍ଚିତ ଭାବରେ ୨୦ ରୁ ୨୫ ପ୍ରତିଶତ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବା। ଏଥିପାଇଁ ଏକ ଜନ ଜାଗରଣ ଦରକାର। ସମସ୍ତ ବିଦ୍ୟୁତ୍ ଗ୍ରାହକ ଏହି ଜନ ଜାଗରଣରେ ସାମିଲ ହୋଇଗଲେ ବିଦ୍ୟୁତ୍ ଗ୍ରାହକମାନଙ୍କ ମାସିକ ବିଦ୍ୟୁତ୍ ବିଲ୍ ଦେୟ ନିଶ୍ଚିତ କମିବ ଏବଂ ଏଥି ସହିତ ପରିବେଶ ମଧ୍ୟ ଦୂଷିତ ହେବନାହିଁ। ତେବେ ଆଉ ଡେରି କାହିଁକି, ଆସନ୍ତୁ, ବିଭିନ୍ନ କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ କରିବା ପାଇଁ କେତେକ ସତର୍କତା ବିଷୟରେ ଜାଣିବା।

### ୧. କୃଷି କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ

- କୃଷକ ଭାଇମାନେ ବ୍ୟବହାର କରୁଥିବା କୃଷି ଯନ୍ତ୍ରପାତି ବିଷୟରେ ସାମାନ୍ୟ ଧ୍ୟାନ ଦେଲେ ସେମାନେ ୨୫ ରୁ ୩୦ ପ୍ରତିଶତ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବେ।
- ବ୍ୟବହୃତ ପାଣି ପମ୍ପର ଫୁଟ୍‌ଓ୍ୱେଲ ଭଲ୍‌ଭକୁ ବଦଳାଇ ଉନ୍ନତମାନର କମ୍ ଘର୍ଷଣ କରୁଥିବା ଫୁଟଓ୍ୱେଲ ବ୍ୟବହାର କରିପାରିଲେ ୧୦% ରୁ ୧୫% ବିଦ୍ୟୁତ୍ ଶକ୍ତି ସଞ୍ଚୟ ହେବ।

- ଜି.ଆଇ ପାଇପ୍ ବଦଳରେ ପି.ଭି.ସି. ପାଇପ୍ ଓ କମ୍ ବଙ୍କା ପାଇପ ବ୍ୟବହାର କରି ୨୦% ରୁ ୨୨% ବିଦ୍ୟୁତ୍ ଶକ୍ତି ସଞ୍ଚୟ କରାଯାଇ ପାରିବ।
- ପମ୍ପରେ ଅନାବଶ୍ୟକ କିମ୍ବା ଅଧିକ ସକ୍ସନ ହେଡ୍ ନ ରଖିବା ଓ ଆଇ.ଏସ୍.ଆଇ. ମାର୍କା ପମ୍ପ ବ୍ୟବହାର କରିବା ଉଚିତ।
- ଜଳ ଉତ୍ସର ପ୍ରକାର ଭେଦ ଓ ଆବଶ୍ୟକତାକୁ ଚାହିଁ ଦରକାର ମୁତାବକ କ୍ଷମତା ବିଶିଷ୍ଟ ପାଣି ପମ୍ପ ବସାଇବା ଆବଶ୍ୟକ।

### ୨. ବୈଦ୍ୟୁତିକ ମୋଟର ବ୍ୟବହାର କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ

- ଉତ୍ପାଦିତ ବିଦ୍ୟୁତ୍ ଶକ୍ତିର ପ୍ରାୟ ୪୫ ରୁ ୫୦ ପ୍ରତିଶତ ବିଦ୍ୟୁତ୍ ଶିଳ୍ପ କ୍ଷେତ୍ରରେ ବ୍ୟବହାର ହୋଇଥାଏ, ତହିଁରୁ ୭୦% ବିଦ୍ୟୁତ୍ ଶକ୍ତି ମୋଟର ଚାଳନା ପାଇଁ ବ୍ୟବହାର ହୋଇଥାଏ। ଏହି ମୋଟର ବ୍ୟବହାର ସମୟରେ କେତେକ ସତର୍କତା ଅବଲମ୍ବନ କଲେ ଆମେ ପ୍ରାୟ ୧୦ ରୁ ୧୨ ପ୍ରତିଶତ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବା।
- ଆଇ.ଏସ୍.ଆଇ ମାର୍କା ଓ ତାରକା ଚିହ୍ନିତ ମୋଟର ଓ ଅନ୍ୟାନ୍ୟ ବିଦ୍ୟୁତ୍ ଉପକରଣ ମାନର ବ୍ୟବହାର।
- ପୋଡି ଯାଇଥିବା ମୋଟରକୁ ଠିକ୍ ସମୟରେ ଉପଯୁକ୍ତ ରି–ୱାଇଣ୍ଡିଂ କରିବା।
- ସମକ୍ଷମତା ବିଶିଷ୍ଟ ମୋଟରର ବ୍ୟବହାର।
- ମୋଟର ଚାଳନା ରାତ୍ରି ସମୟରେ କଲେ, ଠିକ୍ ଭୋଲ୍ଟେଜ୍ ମିଳିଥାଏ, ଏହାଦ୍ୱାରା ମୋଟର ଉପରେ କୌଣସି ଚାପ ପଡିନଥାଏ।
- ମୋଟରର ବିଅରିଂରେ ଠିକ୍ ସମୟରେ ଲୁବ୍ରିକାଣ୍ଟ ଦେବା ଦ୍ୱାରା ଏହାର ଘର୍ଷଣ ହାର କମିଯାଇଥାଏ।

### ୩. ଆଲୋକ ବ୍ୟବହାର କ୍ଷେତ୍ରରେ ବିଦ୍ୟୁତ୍ ଶକ୍ତି ସଞ୍ଚୟ

- ଆମ ଦେଶର ଉତ୍ପାଦିତ ବିଦ୍ୟୁତ୍ ଶକ୍ତି ମଧ୍ୟରୁ ୨୦% ବିଦ୍ୟୁତ୍ ଆଲୋକ ବ୍ୟବହାରରେ ଲାଗିଥାଏ। ଏଥିରୁ ପ୍ରାୟ ୨୦% ରାସ୍ତା ଓ ୮% ରୁ ୧୦% ଘର ଆଲୋକିତ ପାଇଁ ବ୍ୟବହାର କରାଯାଏ। ସାରା ଦେଶରେ ପ୍ରାୟ ୧୨୦ କୋଟି ଲୋକ ପାଇଁ ୨୪ କୋଟି ବାସଗୃହ ଅଛି। ଏଥିପାଇଁ ୩୫,୦୦୦ ମେଗାୱାଟ ବିଦ୍ୟୁତ୍ ଶକ୍ତି ଉପଯୋଗ ହୋଇଥାଏ। ମାତ୍ର କେତେକ ସତର୍କତାମୂଳକ ପନ୍ଥା ଆପଣାଇ ନେଲେ ଆମେ ପ୍ରାୟ ୩୦% ରୁ ୪୦% ବିଦ୍ୟୁତ୍ ସଞ୍ଚୟ କରି ପାରିବା।
- ବାସଗୃହ ଏପରି ଭାବରେ ତିଆରି କରିବା ଯେପରିକି ଦିନରେ ବେଶି ସମୟ ସୂର୍ଯ୍ୟାଲୋକଦ୍ୱାରା ଗୃହ ଆଲୋକିତ ରହିବ। ଏନର୍ଜି କନଜରଭେସନ ବିଲ୍ଡିଂ କୋଡର ନିୟମ ମାନି ଘର ତିଆରି କଲେ ବହୁ ପରିମାଣରେ ବିଦ୍ୟୁତ୍ ଶକ୍ତି ସଞ୍ଚୟ ହୋଇ ପାରିବ।
- ଗୃହର ଛାତ କାନ୍ଥରେ ହାଲ୍କା ରଙ୍ଗ ଦେବା ଓ ସମୟର ବ୍ୟବଧାନରେ କାନ୍ଥ, ଛାତ, ଦୁଆର ଓ ଝରକାକୁ ସଠିକ୍ ରଙ୍ଗଦେବା ଉଚିତ୍। ଗୃହରେ ଲଗାଯାଇଥିବା ବିଦ୍ୟୁତ୍ ବଲ୍ବ ଓ ପଙ୍ଖା ଇତ୍ୟାଦିକୁ ମଝିରେ ମଝିରେ ସଫା କରିବା ଉଚିତ୍ ଓ ସାଧାରଣ ବିଦ୍ୟୁତ୍ ବଲ୍ବ ପରିବର୍ତ୍ତେ ଏଲ୍.ଇ.ଡ଼ି ବଲ୍ବ ବ୍ୟବହାର କଲେ କମ୍ ବିଦ୍ୟୁତ୍ ଖର୍ଚ୍ଚରେ ବେଶି ଆଲୋକ ମିଳି ପାରିବ। ଏହାଦ୍ୱାରା ପ୍ରାୟ ୭୦% ବିଦ୍ୟୁତ୍ ଶକ୍ତି ସଞ୍ଚୟ ହୋଇ ପାରିବ।
- ଆଲୋକମାଳା ଏପରି ଭାବରେ ଲଗାହେବା ଉଚିତ, ଯେପରି ସମସ୍ତ ଆଲୋକ ବ୍ୟବହାର ଉପଯୋଗୀ ହେବ।
- ସାଧାରଣ ଚୋକ୍ ଏବଂ ରେଗୁଲେଟର ବଦଳରେ ଇଲେକ୍ଟ୍ରୋନିକସ୍ ଚୋକ୍ ଓ ରେଗୁଲେଟର ଲଗାଇବା ଉଚିତ୍।

### ୪. ଘରେ ବିଦ୍ୟୁତ୍ ଶକ୍ତି ବ୍ୟବହାରରେ ମିତବ୍ୟୟିତା ଓ ସଞ୍ଚୟ

- ଘରର ପଙ୍ଖା, ରେଫ୍ରିଜେରେଟର, କୁଲର ଓ ଏୟାର କଣ୍ଡିସନ ଯନ୍ତ୍ରକୁ ଦରକାର ସମୟରେ ବ୍ୟବହାର କରିବା ଉଚିତ୍।
- ରେଫ୍ରିଜେରେଟର ଦ୍ୱାରକୁ ବାରମ୍ବାର ନ ଖୋଲି, ଠିକ୍ ସମୟରେ ଖୋଲିବା ଓ ଠିକ୍ ଜାଗାରେ ରଖିଲେ ବିଦ୍ୟୁତ୍ ଶକ୍ତି ସଞ୍ଚୟ ହୋଇପାରିବ।

- ବିଦ୍ୟୁତ୍ ଇସ୍ତ୍ରୀ, ୱାଟର ହିଟର, ଟୋଷ୍ଟର, ୱାସିଙ୍ଗ ମେସିନ୍, ଓଭେନ୍ ଇତ୍ୟାଦିକୁ ଠିକ୍ ରୂପେ ଆବଶ୍ୟକତା ଅନୁସାରେ ବ୍ୟବହାର କଲେ  ଶକ୍ତି ସଞ୍ଚୟ ହୋଇଥାଏ । ଏଥପାଇଁ ସେଥିରେ ଲେଖାଥିବା ନିର୍ଦ୍ଦେଶନାମା ମାନିବା ଉଚିତ୍ ।
- ମୋବାଇଲ୍ ଫୋନ ଚାର୍ଜ କଲା ସମୟରେ ଅନ୍ୟମନସ୍କ ନ ହୋଇ ସୁଇଚ ବନ୍ଦ କରିବା ଦରକାର ।
- ବର୍ତ୍ତମାନ ବଜାରରେ ମିଳୁଥିବା ତାରକା ଚିହ୍ନିତ ବିଦ୍ୟୁତ୍ ଉପକରଣ ମାନର ପ୍ରଚୁର ବ୍ୟବହାର ଦରକାର ।

**୫. ଶିଳ୍ପ କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ**

- ବିଦ୍ୟୁତ୍ ଉତ୍ପାଦନର ପ୍ରାୟ ୫୦% ବିଦ୍ୟୁତ୍ ଶକ୍ତି ଶିଳ୍ପ ପାଇଁ ବ୍ୟବହାର କରାଯାଏ । ସତର୍କତାମୂଳକ ପନ୍ଥା ଅବଲମ୍ବନ କରି ଆମେ ୨୦% ରୁ ୨୫% ବିଦ୍ୟୁତ୍ ସଞ୍ଚୟ କରିପାରିବା ।
- ପିକ୍ ଲୋଡ ସମୟରେ ଅନାବଶ୍ୟକ ଯନ୍ତ୍ରର ଚାଳନା ବନ୍ଦ କରିବା, କାର୍ଯ୍ୟକୁ ଚାହିଁ ସମକ୍ଷମତା ବିଶିଷ୍ଟ ମୋଟର ସ୍ଥାପନ କରିବା, ବେଲ୍ଟ ଓ ଗିଅର ସଠିକ୍ ମାପର ଲଗାଇବା ଦ୍ୱାରା ବିଦ୍ୟୁତ୍ ଶକ୍ତି ସଞ୍ଚୟ ହୋଇଥାଏ ।
- ବିଭିନ୍ନ କାପାସିଟର ମାନର ବ୍ୟବହାର ଦ୍ୱାରା ବିଦ୍ୟୁତ୍ କାର୍ଯ୍ୟଦକ୍ଷତାକୁ ବଢାଯାଏ, ଭାଙ୍ଗିଯାଇଥିବା ବିଅରିଂକୁ ବଦଳାଇ ଓ ଠିକ୍ ଲୁବ୍ରିକାଣ୍ଟ ବ୍ୟବହାର କରି ଘର୍ଷଣ କମାଯାଇଥାଏ, ଫଳରେ ବିଦ୍ୟୁତ୍ ବ୍ୟବହାର କମିଯାଇଥାଏ ।
- ଠିକ୍ ସ୍ଥାନରେ ଆଲୋକମାଳା ଲଗାଇବା ଓ ଆଲୋକ ପ୍ରଦାୟୀ ସମୀକ୍ଷା  କରିବା, କାର୍ଯ୍ୟରତ କର୍ମଚାରୀମାନଙ୍କ ପାଇଁ ଉପଦେଶମାନ କାନ୍ଥରେ ଲେଖାହେବା ଓ ତାହାକୁ ସର୍ବଦା ପାଳନ କରିବା ଦ୍ୱାରା ବିଦ୍ୟୁତ୍ ବ୍ୟବହାର କମିଯାଇଥାଏ ।
- ଘରର ୱାରିଂ ସଠିକ୍ ହେବା ସହ ଠିକ୍ ଆର୍ଥିଂ ଏବଂ ଆଇ.ଏସ୍.ଆଇ. ମାର୍କା ବିଦ୍ୟୁତ୍ ଉପକରଣ ବ୍ୟବହାର କରିବା ଉଚିତ୍ ।

**୬. ବିଦ୍ୟୁତ୍ କର୍ମଚାରୀମାନଙ୍କ ସହଯୋଗରେ ବିଦ୍ୟୁତ୍ ସଞ୍ଚୟ**

ରାସ୍ତା ଆଲୋକିତ ପାଇଁ ସମସ୍ତ ଆଲୋକ ସ୍ତମ୍ଭର ସୁଇଚକୁ ଠିକ ସମୟରେ ଅନ୍ କରିବା ଓ ଅଫ୍ କରିବା ଦ୍ୱାରା ବିଦ୍ୟୁତ୍ ଶକ୍ତି ସଞ୍ଚୟ ହୋଇଥାଏ । ଆଜିକାଲି ଅଟୋମେଟିକ୍ ଟାଇମର ଲାଗାଯାଇ ରାସ୍ତା ଲାଇଟ ଜଳାଇବା ଓ ବନ୍ଦହେବା କାର୍ଯ୍ୟ କରାଯାଉଛି । ବିଦ୍ୟୁତ୍ ସବ୍‌ଷ୍ଟେସନମାନଙ୍କରେ ସାଧାରଣ ଟ୍ରାନ୍ସଫରମର ବଦଳରେ ଷ୍ଟାର ରେଟେଡ୍ ଟ୍ରାନ୍ସଫରମରମାନ ବସାଯାଇ ବିଦ୍ୟୁତ୍ ସଞ୍ଚୟ କରାଯାଇ ପାରିବ ।

**୭.ବିଦ୍ୟୁତ୍ ସଞ୍ଚୟ ପାଇଁ ସମସ୍ତେ ସଚେତନ ହେବା ଜରୁରୀ**

- ଘରେ, ଅଫିସ କିମ୍ବା ବ୍ୟବସାୟିକ କେନ୍ଦ୍ରମାନଙ୍କରେ ବିଦ୍ୟୁତ୍ ଉପକରଣ ମାନର ସଠିକ୍ ବ୍ୟବହାର ଓ ପରିଚାଳନା ବିଦ୍ୟୁତ୍ ସଞ୍ଚୟରେ ସହାୟକ ହୋଇଥାଏ ।
- ଅଫିସରୁ କାର୍ଯ୍ୟ ସାରି ଘରକୁ ଫେରିଲା ପୂର୍ବରୁ ସମସ୍ତ ରୁମ୍‌ର ସୁଇଚ ବନ୍ଦ କରିବା ଓ ଅନ୍ୟକୁ ଏ ବିଷୟରେ ଅବଗତ କରାଇବା ଉଚିତ ଓ  ଅଫିସ୍ କିମ୍ବା ଘରର ଲିଫ୍ଟକୁ କମ୍ ବ୍ୟବହାର କରିବା ।
- ବିଭିନ୍ନ ସାମାଜିକ ଉତ୍ସବ ପାଳନ ଓ ପୂଜା ପାର୍ବଣ ସମୟରେ କମ୍ ଆଲୋକମାଳା ସହ ଏଲ.ଇ.ଡି ଲାଇଟର ବ୍ୟବହାରକୁ ପ୍ରସାର କରିବା ।
- ଗ୍ରାମାଞ୍ଚଳ ତଥା ସହରର କ୍ଲବ, ପାଠାଗାର ଓ ଅନ୍ୟାନ୍ୟ ବେସରକାରୀ ସଂସ୍ଥା ବିଦ୍ୟୁତ୍ ସଂରକ୍ଷଣ ସମ୍ବନ୍ଧରେ ଜନସାଧାରଣଙ୍କୁ ଅବଗତ କରାଇବା ଉଚିତ୍ ।
- ସର୍ବଦା ସଠିକ୍ ମିଟର ବ୍ୟବହାର କଲେ ବିଦ୍ୟୁତ୍ ବ୍ୟବହାରରେ ସମତା ଆସିବ ।

ଏବେ ଜାଣିଲେତ, ସାମାନ୍ୟ ସାବଧାନତା ଓ ସତର୍କତା ଅବଲମ୍ବନ କରି ଦେଶ ପାଇଁ ଏହି ବଡ କାମ କରିବା ନିମନ୍ତେ ଆମେ ସମସ୍ତେ ମିଳିମିଶି ଚିନ୍ତା କରିବା ଓ ସାରା ଦେଶରେ ବିଦ୍ୟୁତ୍ ସଂରକ୍ଷଣ ବାର୍ତ୍ତାକୁ ପ୍ରବାହ କରିବା । ବିଦ୍ୟୁତ୍ ସଞ୍ଚୟ ବିଦ୍ୟୁତ୍ ଉତ୍ପାଦନ ସହ ସମାନ । ବିଦ୍ୟୁତ୍ ଶକ୍ତି ସଞ୍ଚୟ କରନ୍ତୁ ଓ ଦେଶକୁ ବିଦ୍ୟୁତ୍ ନିଅଣ୍ଟିଆ ପରିସ୍ଥିତିରୁ ରକ୍ଷା କରନ୍ତୁ । ଏଥିସହ ଆପଣଙ୍କ ବିଦ୍ୟୁତ୍ ଦେୟ ମଧ୍ୟ କମାନ୍ତୁ ।

ଜନ ସମ୍ପର୍କ ଅଧିକାରୀ, ସେସୁ, ଭୁବନେଶ୍ୱର

# ମା' ତାରିଣୀ

ଡକ୍ଟର ଶ୍ରୀହରି ପଣ୍ଡା

ସୃଷ୍ଟି ଅନ୍ତରାଳରେ ଶିବ ଏବଂ ଶିବାନୀଙ୍କର ଭୂମିକାର ବର୍ଣ୍ଣନା ଶୈବ ସିଦ୍ଧାନ୍ତ ଦର୍ଶନ ତତ୍ତ୍ୱ ରେ ଦେଖିବାକୁ ମିଳେ । ଏହି ତତ୍ତ୍ୱ ଅନୁଯାୟୀ ଅବିନଶ୍ୱର ଦିବ୍ୟ ଚେତନାର ଉତ୍ସ ହେଲେ ପରା-ଶିବ(ଅର୍ଥାତ୍ ପରିପୂର୍ଣ୍ଣ ଶିବ, ତାଙ୍କର ଦର-ପ୍ରକାଶିତ ରୂପକୁ କୁହାଯାଏ ସଦା-ଶିବ) ପରା-ଶିବଙ୍କ ଏକ ହଜାର ଭାଗରୁ ଭାଗେ ଦ୍ୱାରା ରୂପ ପାଆନ୍ତି ପରା-ଶକ୍ତି । ପରା-ଶକ୍ତିଙ୍କଠାରୁ ରୂପ ପାଆନ୍ତି ଆଦ୍ୟା-ଶକ୍ତି ବା (ଆଦି-ଶକ୍ତି)। ଆଦ୍ୟା-ଶକ୍ତିଙ୍କଠାରୁ ଜନ୍ମ ନିଅନ୍ତି ଇଚ୍ଛା-ଶକ୍ତି । ଇଚ୍ଛା-ଶକ୍ତିଙ୍କଠାରୁ ଜନ୍ମ ନିଅନ୍ତି ଜ୍ଞାନ-ଶକ୍ତି । ଜ୍ଞାନ-ଶକ୍ତିଙ୍କଠାରୁ ଜନ୍ମ ନିଅନ୍ତି କ୍ରିୟା-ଶକ୍ତି । ଏହି ପାଞ୍ଚ ଶକ୍ତି (ପରା-ଶକ୍ତି, ଆଦ୍ୟା-ଶକ୍ତି, ଇଚ୍ଛା-ଶକ୍ତି, ଜ୍ଞାନ-ଶକ୍ତି ଓ କ୍ରିୟା-ଶକ୍ତି)ସଦା-ଶିବଙ୍କର ପାଞ୍ଚଗୋଟି ବିଭବ ଯଥା ଇଶାହ, ତତ୍ପୁରୁଷ, ଅଘୋର, ବାମଦେବ, ସଦ୍ୟୋଜାତ ପଞ୍ଚମନ୍ତ୍ର ଓ ପଞ୍ଚକୃତ୍ୟ ସହିତ ସମ୍ପୃକ୍ତ । ପଞ୍ଚ-ମନ୍ତ୍ର ଓ ପଞ୍ଚ-କୃତ୍ୟ ଆଧିପତ୍ୟ ବିସ୍ତାର କରନ୍ତି ପଞ୍ଚଭୂତ (ଅର୍ଥାତ୍ କ୍ଷିତି, ଅପ୍, ତେଜୋଃ, ମରୁତ, ବ୍ୟୋମ ବା ମାଟି, ପାଣି, ଆଲୋକ, ପବନ ଓ ଇଥର) । ସୃଷ୍ଟିର ରହସ୍ୟ ଭଳି ରହସ୍ୟମୟ ଶିବ-ଶକ୍ତି ତତ୍ତ୍ୱ । ତତ୍ତ୍ୱ ଯେତେ ଗୂଢ଼ ଓ ଅବୋଧ ହୋଇଥିଲେ ବି ଶକ୍ତି ଉପାସନା ହିନ୍ଦୁ ସମାଜରେ ସର୍ବଜନବିଦିତ ଓ ଆଦୃତ । ହିନ୍ଦୁ ଧର୍ମରେ ପୂଜିତା ଦେବୀମାନେ କେଉଁଠି ଦୁର୍ଗା, କାଳୀ, ଚଣ୍ଡୀ ଆଦି ରୂପରେ ଉପାସିତ ହେଉଛନ୍ତି । ମନୁଷ୍ୟ ନିଜର ଐହିକ କଲ୍ୟାଣ, ବୈଷୟିକ ସୁଖ ପାଇଁ ଆଦ୍ୟାଶକ୍ତିଙ୍କ ଆରାଧନା କରିଥାଏ । ସୃଷ୍ଟି ତିଷ୍ଠି ରହିଛି ଶକ୍ତିଙ୍କ ପାଇଁ । ସୃଷ୍ଟିର ମଙ୍ଗଳ ନିମନ୍ତେ ଶକ୍ତି ବିଭିନ୍ନ ରୂପ ନେଇ ପୂଜା ପାଉଛନ୍ତି । ସେଥିମଧ୍ୟରୁ ଓଡ଼ିଶାରେ ଉପାସିତା ହେଉଥିବା ପ୍ରମୁଖ ଦେବୀଙ୍କ ମଧ୍ୟରୁ ମା'ତାରିଣୀ ଅନ୍ୟତମ ।



ମା'ତାରିଣୀ ବାସ କରୁଛନ୍ତି କେନ୍ଦୁଝର ଜିଲ୍ଲା ଘଟଗାଁଠାରେ । ଉପାସନା ଗୃହରେ ମା'ତାରିଣୀ ଉପାସିତ ହେଉଛନ୍ତି । ଉପାସନା ଜାଗାଟି ଚାରିପଟୁ ମୁକ୍ତ ଯଦିଓ ପୀଠର ଶୀର୍ଷଟି ଦେଉଳ ଆକୃତିର । ଉପାସନା କ୍ଷେତ୍ରର ଚାରିପଟେ ଅନୁଚ୍ଚ ମାର୍ବଲର ପାଚେରି ରହିଛି । ତାରିଣୀ କ୍ଷେତ୍ରରେ ଉତ୍ତର ପଟରେ ଆଠଫୁଟ ଲମ୍ବ ଓ ପ୍ରସ୍ଥ ବିଶିଷ୍ଟ ମଣ୍ଡପସମ ଜାଗାରେ ମା' ତାରିଣୀ ପୂଜା ପାଉଛନ୍ତି । ମା'ଙ୍କ ମନ୍ଦିର ଭିତରେ ଗୁରୁଭା, ସାହାଡ଼ା, ଡମଲଗୁଡ଼ୁ, ମଧୁମାଳତୀ, କୁସୁମ, ମନ୍ଦାର ଓ ଅଷାଢୁଆ ଆଦି ବୃକ୍ଷ ଓ ଲତାମାନ ଶୋଭା ପାଉଛନ୍ତି । ଅତୀତରେ ମା'ଙ୍କ ପୀଠସ୍ଥଳୀ ଦ୍ରୁମ ଓ କିରିକିଚି କଣ୍ଟକ ଲତାରେ ଏଭଳି ପରିପୂର୍ଣ୍ଣ ଥିଲା ଯେ ପୂଜକ ଦିନରେ ମାତ୍ର ଥରେ ଯାଇ ପୂଜା କରି ଫେରି ଆସୁଥିଲା । ଉକ୍ତ ଜାଗାଟି ପୂର୍ବରୁ ବ୍ୟାଘ୍ରମାନଙ୍କ ଦ୍ୱାରା ସୁରକ୍ଷିତ ଥିବାର ପ୍ରମାଣ ମିଳେ । ଉତ୍ତର ପଟେ ମନ୍ଦିର ଶିଖରଟିର

ଉଚ୍ଚତା ପ୍ରାୟ ୨୦ଫୁଟ ହେବ ଆଉ ତାହାରି ତଳେ କଳାପଥର ଆଚ୍ଛାଦିତ ଚଟାଣ ଉପରେ ପୂଜିତା ମା'ତାରିଣୀଙ୍କ ବିଗ୍ରହ । ଭୂମିରୁ ଫୁଟି ବାହାରିଥିବା ମାତ୍ର ୨୦ଇଞ୍ଚ ଉଚ୍ଚତାର ମାଆଙ୍କ ପଥର ବିଗ୍ରହର ଲାବଣ୍ୟ ସମସ୍ତଙ୍କୁ ଆକର୍ଷିତ କରେ । ମା'ଙ୍କ ବିଗ୍ରହ ଶିଳା ଦେହରେ ଲଗା ଯାଇଛି ଦୁଇଟି ଧାତବ ଚକ୍ଷୁ ଓ ଭ୍ରୂଲତା, ରଙ୍ଗ ଦ୍ୱାରା ଚିତ୍ରା ଯାଇଛି ଜିଭ ଏବଂ ମସ୍ତକରେ ଶୋଭା ପାଉଛି ରୂପାର କିରୀଟ । ଦେବୀଙ୍କ ଦୁଇପାର୍ଶ୍ୱରେ ଦକ୍ଷିଣକୁ ମୁହଁ କରି ପ୍ରାୟ ଆଠ ଇଞ୍ଚ ଉଚ୍ଚତାର ଦୁଇଟି ପଥର ସିଂହମୂର୍ତ୍ତି ରହିଛନ୍ତି । ଦେବୀଙ୍କ ପଶ୍ଚାତ ପଟରେ ଡମ୍ବୁଗୁଡୁ ଗଛ ତଳେ ତିନୋଟି ସିଂହମୂର୍ତ୍ତି ସହ ମା'ଙ୍କ ତ୍ରିଶୂଳ ଓ ବାନା ପ୍ରଭୃତି ରଖା ଯାଇଛି । ତାହା ସହିତ କିଛି ପିତ୍ତଳ ଘୋଡ଼ା ଓ ପିତ୍ତଳ ସାପ ମଧ୍ୟ ଅଛନ୍ତି ।

ମା'ତାରିଣୀଙ୍କ ଘଟଗାଁ ଆବିର୍ଭାବ ହେବା ପଛରେ କିମ୍ବଦନ୍ତୀ କୁହେ, ମାତା ସୀତାଙ୍କୁ ରାବଣ ଚୋରି କରି ନେଇଯିବା ପରେ ମ୍ରିୟମାଣ ରାମଚନ୍ଦ୍ର ବନଭୂମି, ଗିରିକାନ୍ତାର ଓ ଜନପଦ ଘୂରିଘୂରି ପରମ ପରାକ୍ରମୀ ରାବଣ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେଉଥିଲେ । ସେହି ସମୟରେ କ୍ଳାନ୍ତ–ଶ୍ରାନ୍ତ ରାମଚନ୍ଦ୍ର ମାତା ସୀତାଙ୍କୁ ଫେରାଇ ଆଣିବା ନିମନ୍ତେ ଦୁର୍ଗାଙ୍କ ଶରଣାପନ୍ନ ହୁଅନ୍ତି । ରାମଚନ୍ଦ୍ରଙ୍କର ଅବିଚଳ ଧ୍ୟାନ ଯୋଗୁଁ ତାଙ୍କ ମାନସପଟରେ ବରଦାୟିନୀ ମାଆ ଦୁର୍ଗା ଉଦ୍‌ଭାସିତ ହେଲେ । ଦେବୀଙ୍କ ଜ୍ୟୋତିରେ ଉଦ୍‌ଭାସିତ ଶ୍ରୀରାମ, ଚକ୍ଷୁ ଖୋଲି ଦେଖିବା ବେଳକୁ ଶକ୍ତିମୟୀ ପାଲଟି ଗଲେ ଖଣ୍ଡେ ଶିଳାରୂପେ । ସେହି ଶିଳାକୁ ପ୍ରଭୁ ଶ୍ରୀରାମ ଶକ୍ତିମୟୀ ଭାବରେ ପୂଜା କରି ମା'ଙ୍କଠାରୁ ଶକ୍ତି ପାଇ ରାବଣକୁ ପରାସ୍ତ କରି ମାତା ସୀତାଙ୍କୁ ଉଦ୍ଧାର କରିଥିଲେ । । ସୀତାଙ୍କୁ ହରାଇଥିବା ପ୍ରଭୁଙ୍କ କଷ୍ଟ ତାରଣ କରିଥିବାରୁ ଶିଳାରୂପା, ଶକ୍ତି ପ୍ରଦାୟିନୀ ସେହି ଶିଳା ତାରିଣୀ ନାମରେ ନାମିତ ହେଲେ । ଶୁଣାଯାଏ, କାଞ୍ଚି ସହରର ଅନତି ଦୂରରେ ଘଟିଥିଲା ଏହି ଅଲୌକିକ ଘଟଣା । ସହସ୍ରାଧିକ ବର୍ଷ, ଶିଳାରୂପିଣୀ ମା'ତାରିଣୀ ପୂଜିତ ହୋଇ ଆସୁଥିଲେ କାଞ୍ଚି ନିକଟସ୍ଥ ସେହି ଘୋର ଅରଣ୍ୟାନୀ ମଧ୍ୟରେ । କିମ୍ବଦନ୍ତୀ ଅନୁଯାୟୀ ଆଉ ଏକ ଅଲୌକିକ ଘଟଣା ଦ୍ୱାରା ମା'ତାରିଣୀ ଆସିଲେ ଘଟଗାଁକୁ । ୧୪୮୦ ସାଲର ଏହି ଘଟଣା ଅନୁସାରେ କେନ୍ଦୁଝରର ରାଜା ଗୋବିନ୍ଦ ଭଞ୍ଜ ନିଜ ବୀରତ୍ୱ ଓ ସାମରିକ ଦକ୍ଷତା ଦ୍ୱାରା ପୁରୀର ଗଜପତି ରାଜାଙ୍କର ପ୍ରିୟପାତ୍ର ହୋଇ ପାରିଥାନ୍ତି । ସେତେବେଳକୁ ଗଜପତି ରାଜା ପୁରୁଷୋତ୍ତମ ଏକାଧିକ ଥର କାଞ୍ଚି ଆକ୍ରମଣ କରିଥିଲେ ମଧ୍ୟ ସଫଳ ହୋଇ ପାରି ନଥିଲେ । ପୁରୁଷୋତ୍ତମଙ୍କ କାଞ୍ଚି ଅଭିଯାନ ବିଫଳ ହେବା ପରେ ଦ୍ୱିତୀୟ ଥର ଆକ୍ରମଣ ପୂର୍ବରୁ ସେ ଉଭୟ ଦୈବୀ ଏବଂ ମାନବୀ ବଳର ସାହାଯ୍ୟ ନେଇ କାଞ୍ଚି ରାଜାଙ୍କୁ ପରାସ୍ତ କରି କାଞ୍ଚି ରାଜଜେମା ପଦ୍ମାବତୀଙ୍କୁ ପୁରୀକୁ ନେଇ ଆସିଥିଲେ । ଲୋକକଥାରେ ଶୁଣାଯାଏ ରାଜା ପୁରୁଷୋତ୍ତମ ପ୍ରଥମ ଥର କାଞ୍ଚି ଅଭିଯାନରେ ପରାସ୍ତ ହୋଇ ମନଦୁଃଖରେ ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହେବାରୁ ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ କହିଲେ, ମୋ ଗଳାରେ ଥିବା ସୁନ୍ଦର ମାଳାଟି ଯାହା ଗଳାରେ ଆସନ୍ତା କାଲି ପ୍ରଭାତରେ ଥିବ ତାକୁ ସେନାପତି କରି ଦ୍ୱିତୀୟ ଥର ଯୁଦ୍ଧଯାତ୍ରା କରିଲେ ନିଶ୍ଚୟ ଜୟଯୁକ୍ତ ହେବୁ । ପରଦିନ ସକାଳେ ରାଜା ଗୋବିନ୍ଦ ଭଞ୍ଜଙ୍କ ଗଳାରେ ମାଳାଟି ଦେଖି ତାଙ୍କୁ ସେନାପତି ରୂପେ ନିଯୁକ୍ତି ଦେଇ କାଞ୍ଚି ଅଭିଯାନରେ ସଫଳ ହୋଇଥିଲେ । ଏଥିରେ ପୁରୁଷୋତ୍ତମ ଖୁସିର ନିଦର୍ଶନପୂର୍ବକ କାଞ୍ଚିର ରାଜ୍ୟଭାର ଗୋବିନ୍ଦ ଭଞ୍ଜଙ୍କୁ ଅର୍ପଣ କରିଥିଲେ । ଯୁବରାଜ ଗୋବିନ୍ଦ ଭଞ୍ଜଙ୍କର ସେତେବେଳେ ନିଜ ପିତା ତ୍ରିଲୋଚନ ଭଞ୍ଜଙ୍କ ସହ ମନୋମାଳିନ୍ୟ ଚାଲିଥିବାରୁ ଗୋବିନ୍ଦ ଭଞ୍ଜ ମଧ୍ୟ କାଞ୍ଚିର ରାଜ୍ୟଭାର ଗ୍ରହଣ କରିବା ସହିତ ଶ୍ରୀରାମଙ୍କ ଆରାଧ୍ୟା ମା'ତାରିଣୀଙ୍କୁ ଆରାଧନା କରି ମା'ଙ୍କ ଆଶିଷ ଲାଭ କରିଥିଲେ । ହେଲେ ଘଟଣାକ୍ରମରେ ପଦ୍ମାବତୀଙ୍କୁ ରାଜା ପୁରୁଷୋତ୍ତମ ବିବାହ କରିବାରୁ ଏବଂ ତ୍ରିଲୋଚନ ଭଞ୍ଜଙ୍କର ମୃତ୍ୟୁ ହୋଇ ଯିବାରୁ ଗୋବିନ୍ଦ ଭଞ୍ଜ ନିଜ ରାଜଧାନୀ କେନ୍ଦୁଝରକୁ ପ୍ରତ୍ୟାବର୍ତ୍ତନ କରିବାକୁ ବାଧ୍ୟ ହେଲେ ।

କାଞ୍ଚିରୁ ଫେରିବା ସମୟରେ ଗୋବିନ୍ଦ ଭଞ୍ଜ ମା'ତାରିଣୀଙ୍କୁ ପୂଜାର୍ଚ୍ଚନାରେ ସନ୍ତୁଷ୍ଟ କରି ସାଥୀରେ କେନ୍ଦୁଝର ନେବା ପାଇଁ ବରପ୍ରାପ୍ତ ହେଲେ । ଗୋବିନ୍ଦ ଭଞ୍ଜଙ୍କର ଭକ୍ତିରେ ତାରିଣୀ କେନ୍ଦୁଝର ଯିବାକୁ ରାଜି ହେବା ପୂର୍ବରୁ ସର୍ତ୍ତଟିଏ ରଖିଥିଲେ ଯେ, ଗୋବିନ୍ଦ ଅଶ୍ୱପୃଷ୍ଠରେ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ମା'ତାରିଣୀ ତାଙ୍କୁ ଅନୁସରଣ କରିବେ । ରାସ୍ତାସାରା ତାଙ୍କ ନୂପୁରର ଶବ୍ଦ ରୁଣୁଝୁଣୁ କରୁଥିବ କିନ୍ତୁ କୌଣସି ସ୍ଥାନରେ ଯଦି ଗୋବିନ୍ଦ ପଛକୁ ଫେରି ଚାହାନ୍ତି, ତାହାହେଲେ ମାତା ସେଠାରେ ପାଷାଣ ପାଲଟି ଯିବେ । ସର୍ତ୍ତରେ ରାଜି ହୋଇ ଗୋବିନ୍ଦ ଭଞ୍ଜ ଘଟଗାଁ ଯାଏଁ ଆସିଲେ । ଏବର ଘଟଗାଁର ଘୋର ଅରଣ୍ୟରେ ରାଜାଙ୍କ ଘୋଡ଼ା ଚାଲି ନପାରିବାରୁ ବିଶ୍ରାମ ପାଇଁ ଘୋଡ଼ାରୁ ଓହ୍ଲାଇ ଅସତର୍କତା ବଶତଃ ପଛକୁ ଚାହିଁଦେବାରୁ

ମା'ତାରିଣୀ ସେହିଠାରେ ଶିଳା ପାଲଟି ଯିବା ସହିତ ଶୂନ୍ୟବାଣୀ ଦ୍ୱାରା ନିଜର ଘଟାନ୍ତର କଥା ଜଣାଇ ଦେଲେ । ମା'ଙ୍କର ଘୋଡ଼ା ମାଟି ଘୋଡ଼ାରେ ରୂପାନ୍ତର ହୋଇଗଲା । ରାଜା ଏହି ଘଟଣା ପାଇଁ ନିଜକୁ ଦାୟୀ କରି ମନସ୍ତାପ କରିବାରୁ ମା' ଶୂନ୍ୟବାଣୀ ଦ୍ୱାରା କହିଲେ, ମୁଁ କେବଳ ତୋ ଚାହିଁବାରୁ ପାଷାଣ ହୋଇନାହିଁ ବରଂ ଏ ଘୋର ଅରଣ୍ୟର ଶୋଭା ମୋତେ ଆକର୍ଷିତ କରିଥିବାରୁ ମୁଁ ଏହିଠାରେ ରହିଗଲି । ମୁଁ ଏହି ବଣରୁ ତୋତେ ସାହାଯ୍ୟ କରିବି । ଯେତେବେଳେ ବିପଦ ଆସିବ ଥରେ ତାରିଣୀ ବୋଲି ଡାକିଦେଲେ ମୁଁ ନିଶ୍ଚୟ ସହାୟ ହେବି ।

ଦୀର୍ଘ ୫୦୦ ବର୍ଷ ହେଲା ମା'ତାରିଣୀ ଶିଳା ରୂପରେ ପୂଜା ପାଇ ଆସୁଛନ୍ତି । ସମସ୍ତ ସଂକଟରୁ ତାରଣ କରି ପାରନ୍ତି ବୋଲି ମାଆ ତାରିଣୀ ନାମ ବହନ କରିଛନ୍ତି । ମା'ଙ୍କର ପୂଜାରେ ଆଡ଼ମ୍ବର ନଥାଏ । ଅଳ୍ପରେ ମାଆ ସନ୍ତୁଷ୍ଟ ହୋଇଥାନ୍ତି । ସକାଳର ବାଳ ଭୋଗରେ ତାଙ୍କୁ ଉଖୁଡ଼ା, ଛେନା, ଦହି, ନଡ଼ିଆ ଓ କଦଳୀ ପ୍ରଭୃତି ଅର୍ପଣ କରାଯାଇଥାଏ । ସକାଳ ଦଶଟା ସମୟରେ ମା'ଙ୍କୁ ଖେଚୁଡ଼ି, ଡାଲ୍‌ମା ଓ ଖିରି ଅର୍ପଣ କରାଯାଇଥାଏ ଏବଂ ସନ୍ଧ୍ୟାରେ ଖିରି ଓ ଚକୁଳି ପିଠା ଅର୍ପଣ କରାଯାଇଥାଏ । ଏହି ଭୋଗମାନ ମା'ଙ୍କ ରୋଷଶାଳାରେ ବ୍ରାହ୍ମଣ ପୂଜକମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇ ମା'ଙ୍କ ନିକଟରେ ଲାଗି ହୋଇଥାଏ । ଦେବୀଙ୍କ ମୁଖ୍ୟ ସେବାୟତ ଦେହୁରୀ ନାମରେ ପରିଚିତ । କେତେକ ଗବେଷକ ମତ ଦିଅନ୍ତି ଗୋବିନ୍ଦ ଭଞ୍ଜ ଦେହୁରୀମାନଙ୍କୁ କାଞ୍ଚିରୁ ଆଣିଥିଲେ, ମାତ୍ର କେତେକଙ୍କ ମତରେ ଆଦିବାସୀ ବଂଶୋଦ୍ଭବ ଦେହୁରୀମାନେ ସେଠାକାର ମୂଳନିବାସୀ । ସଂପ୍ରତି ୩୦ଜଣ ଦେହୁରୀ ତାରିଣୀଙ୍କ ପୂଜାର୍ଚ୍ଚନାରେ ନିୟୋଜିତ ଅଛନ୍ତି । ଦେବୀପୀଠର ନାମ ଘଟଗାଁ ହେବା ପଛରେ କିମ୍ବଦନ୍ତୀ କୁହେ, ଏକଦା ଘୋର ଅରଣ୍ୟ ମଧ୍ୟରେ ବାସ କରୁଥିବା ଦେହୁରୀମାନଙ୍କର ଅଶୌଚ ପଡ଼ିବାରୁ ମାଆ ଅପୂଜା ରହିଲେ ଫଳରେ ରାଜାଙ୍କର ଚିନ୍ତା ବଢ଼ିଗଲା । ଦେହୁରୀମାନଙ୍କୁ ଶୌଚ କରିବା ନିମନ୍ତେ ସହସ୍ର କୋଶରୁ ବ୍ରାହ୍ମଣ ଆସିବା ମଧ୍ୟ ସମ୍ଭବ ନଥିବାରୁ ରାଜା ଯାଇ ମା'ଙ୍କ ପାଖରେ ଅଧିଆ ପଡ଼ି ଏହି ସମସ୍ୟାର ସମାଧାନ ନିମନ୍ତେ ଗୁହାରି କଲେ । ରାତ୍ରିରେ ରାଜା ଶୋଇଥିବା ସମୟରେ ଦେବୀ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ, ମୋ ପୂଜା ପାଇଁ ବ୍ୟସ୍ତ ନହୋଇ ଶୌଚ ହେବାର କଥା ମନେଦଇ ଶୁଣ । ଶୌଚ ନିମନ୍ତେ ଗୋଟିଏ ଘଟ ଆଣି ସେଥିରେ ଗୋ–ଘୃତ ପୂର୍ଣ୍ଣ କରି ତାକୁ ନେଇ ଦେହୁରୀଙ୍କୁ ଦେବୁ । ଦେହୁରୀ ସେହି ଘଟକୁ ନେଇ ମୋ ଆସ୍ଥାନ ନିକଟ ବୃକ୍ଷ ମଧ୍ୟରେ ରଖି ଗୋଟିଏ ଶିଳା ତା' ଉପରେ ଝୁଲାଇବା ସହିତ ପ୍ରତିଦିନ ପୂଜାଜଳ ତା' ଉପରେ ସିଞ୍ଚନ କରିବ । ସେହି ଜଳରେ ଅଶୌଚ ଲୋକ ଶୌଚ ହେବ କିନ୍ତୁ ଦେହୁରୀ ବ୍ୟତୀତ ଅନ୍ୟ ଲୋକ ଦେହୁରୀ ପାଖରୁ ଶାଳପତ୍ରରେ ଘୃତ ଟିକିଏ ଆଣି ସେଥିରେ ପାଣି ମିଶାଇ ନିଜ ଉପରେ ସିଞ୍ଚି ହେଲେ ଶୌଚ ହେବ । ମା'ତାରିଣୀଙ୍କ ସ୍ୱପ୍ନାଦେଶ ପରେ ଗୋବିନ୍ଦ ଭଞ୍ଜ ସକାଳୁ ନିତ୍ୟକର୍ମ ସମାପନ ପୂର୍ବକ ଘୃତଘଟକୁ ନେଇ ପୀଠବୃକ୍ଷରେ ଝୁଲାଇବାର ବ୍ୟବସ୍ଥା କଲେ । ଦେହୁରୀଙ୍କ ସହିତ ଆଖପାଖ ଲୋକ ସେହି ଘଟରୁ ଘୃତ ଆଣି ଶୌଚ ହେଲେ । ଧୀରେଧୀରେ ଘଟର ମହିମା ବଢ଼ିବାରୁ ସ୍ଥାନର ନାମ ଘଟଗାଁ ହୋଇଥିବା ଅନୁମାନ । ମା'ଙ୍କର ପର୍ବମାନଙ୍କ ମଧ୍ୟରୁ ଆଷାଢ଼ ମାସରେ ମା'ଙ୍କର ମଙ୍ଗଳବାର ଓଷା ଆରମ୍ଭ ହୁଏ । ଧୂପଦୀପ ଆଦି ପ୍ରଦାନ ପୂର୍ବକ ଦେବୀଙ୍କର ଶରଣାପନ୍ନ ହୋଇ ଏହି ବ୍ରତ ଆରମ୍ଭ କରାଯାଇଥାଏ । ଦଶହରା ବେଳେ ପାଞ୍ଚଦିନ ପାଇଁ ଷଷ୍ଠୀରୁ ଦଶମୀ ଯାଏଁ ଚଣ୍ଡୀପାଠ, ହୋମ ଏବଂ ଯଜ୍ଞ ଇତ୍ୟାଦି ତାରିଣୀ ପୀଠରେ ଅନୁଷ୍ଠିତ ହୁଏ । ମା'ଙ୍କର ସବୁଠାରୁ ବଡ଼ ପର୍ବ ହେଉଛି ଚଇତି ପର୍ବ । ଏହା ବିଷୁବ ସଂକ୍ରାନ୍ତି ପାଞ୍ଚଦିନ ପୂର୍ବରୁ ଆରମ୍ଭ ହୋଇ ବିଷୁବ ସଂକ୍ରାନ୍ତିରେ ଶେଷହୁଏ । ବିଷୁବ ସଂକ୍ରାନ୍ତି ବେଳେ ଏଠାରେ ମା'ଙ୍କର ସ୍ୱତନ୍ତ୍ର ପୂଜା ହୁଏ । ସେହି ସମୟରେ ପ୍ରତିଦିନ ପୀଠରେ ପାଲା ଅନୁଷ୍ଠିତ ହୁଏ ଏବଂ ନାନା ସାଂସ୍କୃତିକ କାର୍ଯ୍ୟକ୍ରମରେ ପୀଠ ମୁଖରିତ ହୋଇ ଉଠେ । ବିଷୁବ ସଂକ୍ରାନ୍ତିରେ ମା'ଙ୍କର ସୁନାବେଶ ହୋଇଥାଏ । ତାରିଣୀ ପୀଠର ସୁପରିଚାଳନା ନିମନ୍ତେ ୧୯୭୦ ସାଲରୁ ଗୋଟିଏ ଟ୍ରଷ୍ଟ ଗଢା ଯାଇଛି । ବର୍ତ୍ତମାନର ମନ୍ଦିରଟିର ପରିକଳ୍ପନା ୧୯୭୫ ସାଲର କରାଯାଇ ମା'ଙ୍କ ଇଚ୍ଛା ମୁତାବକ ମନ୍ଦିରଟିଏ ନିର୍ମାଣ ହୋଇଛି । ଧୃମା, ଧୃତି ଓ ଧରଣୀର ମାତା ରିଦ୍ଧି ସିଦ୍ଧି ଯୁକ୍ତା, ସୌମ୍ୟରୂପା, ଜିତେନ୍ଦ୍ରିୟାଶ୍ୱରୀ, ଯୋଗରୂପା ମା'ତାରିଣୀ ତ୍ରେତା ଯୁଗରୁ ଭକ୍ତମାନଙ୍କୁ ସଂକଟରୁ ଉଦ୍ଧାର କରି ଆସୁଛନ୍ତି । ଅଳ୍ପରେ ସନ୍ତୁଷ୍ଟା ମା' ନଡ଼ିଆ ରଙ୍କୁଣୀ । ନଡ଼ିଆଟିଏ ଭକ୍ତିର ସହିତ ତାଙ୍କୁ ଅର୍ପଣ କରିଦେଲେ ଭକ୍ତର ସଂକଟରୁ ଭକ୍ତକୁ ଉଦ୍ଧାର କରି ନିଅନ୍ତି ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ

# ଇ–କୃଷି ଏବଂ କୃଷିର ବିକାଶ

ଡ଼କ୍ଟର ମାନସ ରଞ୍ଜନ ସେନାପତି

ସୂଚନା ଓ ପ୍ରଯୁକ୍ତି ବିଦ୍ୟା ବିଜ୍ଞାନ ଓ ବୈଷୟିକ ଶିକ୍ଷାର ମାନବ ସମାଜକୁ ଅବଦାନ । ସୂଚନା ପ୍ରଯୁକ୍ତି ଦ୍ୱାରା କୃଷି ସମ୍ବନ୍ଧୀୟ ବିଭିନ୍ନ ସୂଚନାଗୁଡ଼ିକୁ ପୃଥିବୀର ବିଭିନ୍ନ ଅଞ୍ଚଳରେ ପରିବେଷଣ କରାଯିବାର ବ୍ୟବସ୍ଥାକୁ ଇ–କୃଷି କୁହାଯାଏ । ଜାତିସଂଘର ଖାଦ୍ୟ ଏବଂ କୃଷି ସଂସ୍ଥା ଇ–କୃଷିର ପ୍ରଚଳନ ପାଇଁ ପଦକ୍ଷେପ ନେଇଛି । ଇ–କୃଷି ଚାଷ ଏବଂ ଚାଷ ସହିତ ଜଡ଼ିତ ବ୍ୟକ୍ତିମାନଙ୍କର କାର୍ଯ୍ୟକୁ ସହଜ ସାଧ ଏବଂ ସମୟ ସାପେକ୍ଷ କରିଥାଏ । ବର୍ତ୍ତମାନ ସୂଚନା ପ୍ରଯୁକ୍ତି ମାଧମରେ ଚାଷୀଭାଇମାନେ କୃଷି ସମ୍ବନ୍ଧୀୟ ସମସ୍ତ ସୂଚନା ପାଇପାରିବେ । ସ୍ମାର୍ଟ ଫୋନ୍ ଦ୍ୱାରା ଘରେ ବସି ଚାଷୀ ନିଜର ଜମିର ଗୁଣ, କୃଷି ସମ୍ବନ୍ଧୀୟ ଅତ୍ୟାଧୁନିକ ଜ୍ଞାନ କୌଶଳ, ଜଳବାୟୁ, ଫସଲ ସଂରକ୍ଷଣ, ଆର୍ଥିକ ସହଯୋଗ, ବୀମା ଇତ୍ୟାଦି ସମ୍ବନ୍ଧରେ ଉପାଦେୟ ତଥ୍ୟ ପାଇପାରିବେ । ସଠିକ୍ ସମୟରେ ଏହିସବୁ ଖବର ଚାଷୀ ପାଖରେ ପହଞ୍ଚିଲେ ଅମଳ ବାଧାପ୍ରାପ୍ତ ହେବ ନାହିଁ କି ଚାଷୀ ତା'ର ସମ୍ବଳ ହରାଇ ବସିବ ନାହିଁ । ପ୍ରତିକୂଳ ପାଣିପାଗରୁ ଫସଲକୁ ରକ୍ଷା କରିବା ଜ୍ଞାନକୌଶଳ ଚାଷୀଙ୍କ ପାଖରେ ଥିଲେ ଚାଷୀ ସହଜରେ ଚାଷ କାର୍ଯ୍ୟ କରିବେ । ଜଳ, ସାର ଓ କୀଟନାଶକ ଔଷଧର ସଠିକ୍ ପ୍ରୟୋଗ ଏହି ଇ–କୃଷିର ଅନ୍ତର୍ଗତ । କୃଷକମାନେ ଯେପରି ତାଙ୍କର ଉତ୍ପାଦିତ ଶସ୍ୟ ସୁବିଧାରେ ଓ ଉଚିତ୍ ଦରରେ ବିକ୍ରି କରିପାରିବେ, ସେଥିପାଇଁ କେତୋଟି ଇ–ମଣ୍ଡି ଖୋଲିବା ପାଇଁ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ପଦକ୍ଷେପ ନେଇଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, କେନିଆରେ ସୂଚନା ପ୍ରଯୁକ୍ତି ମାଧ୍ୟମରେ ହାତୀପଲଦ୍ୱାରା ଫସଲର କ୍ଷୟକ୍ଷତି ରୋକାଯାଇ ପାରୁଛି ।



ଇ–କୃଷି ଦ୍ୱାରା ଦେଶ ଓ ବିଦେଶର ଉନ୍ନତ କୃଷି ପଦ୍ଧତିଗୁଡ଼ିକ ବିଶଦ୍ ଆକାରରେ ଚାଷୀ ପାଖରେ ପହଞ୍ଚି ଯାଇପାରୁଛି, ଯାହାଦ୍ୱାରା ଚାଷୀ ସେହିସବୁ କୌଶଳଗୁଡ଼ିକୁ ସହଜରେ ନିଜ ଜମିରେ ପ୍ରୟୋଗ କରି ଲାଭବାନ ହୋଇପାରୁଛି । ରିମୋଟ୍ ସେନ୍‌ସିଙ୍ଗ, ଜି. ଆଇ. ଏସ୍ ପଦ୍ଧତି ସବୁ ଇ–କୃଷି ମାଧ୍ୟମରେ ଅବଲମ୍ବନ କରାଯାଇ ପାରୁଛି । କୃଷିର ବିଭିନ୍ନ ଅଂଶୀଦାରଗୁଡ଼ିକ ହେଉଛନ୍ତି ଜମି, ଚାଷୀ, ଚାଷ ଉପକରଣ, ଉପକରଣ ଯୋଗାଉଥିବା ସରକାରୀ ଓ ବେସରକାରୀ ସଂସ୍ଥା, ଅମଳ ହେଉଥିବା ଫସଲ, ବଜାର, ଖାଦ୍ୟ ପ୍ରକ୍ରିୟାକରଣ ବ୍ୟବସ୍ଥା, ଖାଉଟି ଓ ସାଧାରଣ ଜନତା । ଏହିସବୁ ଅଂଶୀଦାରମାନଙ୍କୁ ନେଇ ସାମଗ୍ରିକ କାର୍ଯ୍ୟ ସମ୍ପାଦନା

ପାଇଁ ଯେଉଁ ଶୃଙ୍ଖଳ ସୃଷ୍ଟି ହୁଏ, ତାହାକୁ କୃଷି ମୂଲ୍ୟଭିତ୍ତିକ ଶୃଙ୍ଖଳ କୁହାଯାଏ । ଇ–କୃଷି ଦ୍ୱାରା ଏହି ଶୃଙ୍ଖଳର ପ୍ରତ୍ୟେକ ଅଂଶୀଦାର ଉପକୃତ ହୋଇପାରିବେ । ତେଣୁ ଚାଷ କାର୍ଯ୍ୟରେ ଉନ୍ନତି ହେବା ସହିତ ଚାଷୀମାନଙ୍କର ମଧ୍ୟ ଉନ୍ନତି ସମ୍ଭବ ହୋଇ ପାରିବ । ଚାଷୀମାନେ କେଉଁ ସମୟରେ କେଉଁ ଫସଲ ଚାଷ କଲେ ଅଧିକ ଲାଭବାନ ହୋଇପାରିବେ ତତ୍ ସମ୍ବନ୍ଧୀୟ ଜ୍ଞାନ ମିଳିପାରୁଛି । ବର୍ତ୍ତମାନ ଉପରୋକ୍ତ ଚାଷ ସମ୍ବନ୍ଧୀୟ ସୂଚନାଗୁଡ଼ିକ ମିଳୁଥିଲେ ମଧ୍ୟ ଉପଯୁକ୍ତ ବୈଷୟିକ ଜ୍ଞାନ ଅଭାବରୁ ଠିକ୍ ସମୟରେ ଚାଷୀ ଏବଂ ଅନ୍ୟ ଅଂଶୀଦାରମାନଙ୍କ ପାଖରେ ପହଞ୍ଚିପାରୁନାହିଁ । ତେଣୁ ଶୃଙ୍ଖଳରୁ ଆଶାଜନକ ଫଳ ମିଳିପାରୁ ନାହିଁ ।

ଆମ ରାଜ୍ୟରେ ହେକ୍ଟର ପିଛା ହାରାହାରି ଉତ୍ପାଦନ ଜାତୀୟ ହାରଠାରୁ କମ୍ ରହିଛି । ବର୍ତ୍ତମାନ ପରିପ୍ରେକ୍ଷୀରେ ଶିକ୍ଷାର ଅଭାବ ଇ–କୃଷିର କାର୍ଯ୍ୟକାରିତାରେ ବାଧା ସୃଷ୍ଟି କରିପାରେ । କିନ୍ତୁ ଏଥିପାଇଁ ଉପଯୁକ୍ତ ପଦକ୍ଷେପ ନେଲେ ସମସ୍ୟାର ସମାଧାନ ହୋଇପାରିବ । ଆଜିକାଲି ଗାଁ ଗହଳିରେ ମଧ୍ୟ କମ୍ପ୍ୟୁଟର, ଲାପଟପ୍, ସ୍ମାର୍ଟଫୋନ୍ ଇତ୍ୟାଦିର ଚାହିଦା ବଢ଼ିଲାଣି । ଏଥିପାଇଁ ରାଜ୍ୟ କୃଷି ବିଭାଗ ଓ ମୃତ୍ତିକା ସଂରକ୍ଷଣ ବିଭାଗ ପଦକ୍ଷେପ ନେଲେ ଆମ ରାଜ୍ୟରେ ଇ–କୃଷି ମାଧ୍ୟମରେ ଚାଷର ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ଚାଷୀମାନେ ମଧ୍ୟ ଉପକୃତ ହୋଇପାରିବେ । କୃଷକମାନଙ୍କୁ ଶିକ୍ଷିତ ଓ ସଚେତନ କରିବା ପାଇଁ ସରକାର ବ୍ୟାପକ କର୍ମଶାଳା ଓ ସଚେତନତା କାର୍ଯ୍ୟକ୍ରମର ଆୟୋଜନ କରିବା ଉଚିତ୍ ।

ରସାୟନ ବିଜ୍ଞାନ ବିଭାଗ ମୁଖ୍ୟ
ଟ୍ରାଇଡ଼େଣ୍ଟ ଏକାଡ଼େମୀ ଅଫ୍ ଟେକ୍ନୋଲୋଜି
ଭୁବନେଶ୍ୱର– ୭୫୧୦୨୪

## ଜୟପୁର–ନବରଙ୍ଗପୁର ଏବଂ ଜୟପୁର–ମାଲକାନଗିରି ରେଳ ପ୍ରକଳ୍ପର କାର୍ଯ୍ୟ ତୁରନ୍ତ ଆରମ୍ଭ କରିବା ପାଇଁ ଅନୁରୋଧ

ଦୀର୍ଘ ଦିନରୁ ଦାବି ହୋଇ ଆସୁଥିବା ଦକ୍ଷିଣ ଓଡ଼ିଶାର ଅନୁନ୍ନତ ଓ ପଛୁଆ ତଥା ମାଓ ଅଧ୍ୟୁଷିତ ଅଞ୍ଚଳରେ ଜୟପୁର–ମାଲକାନଗିରି ଏବଂ ଜୟପୁର–ନବରଙ୍ଗପୁର ରେଳ ଲାଇନ୍ ପ୍ରକଳ୍ପର କାର୍ଯ୍ୟ ଶୀଘ୍ର ବୁଝାମଣାପତ୍ର ସ୍ୱାକ୍ଷର କରିବା ପାଇଁ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝୀ କେନ୍ଦ୍ର ରେଳ ମନ୍ତ୍ରୀ ଶ୍ରୀ ସୁରେଶ ପ୍ରଭୁଙ୍କୁ ଏକ ପତ୍ର ଲେଖିଛନ୍ତି । ଚଳିତ ବର୍ଷ ରେଳ ବଜେଟ୍‌ରେ ଉପରୋକ୍ତ ଦୁଇ ରେଳ ପ୍ରକଳ୍ପ ଅନୁମୋଦନ ଲାଭ କରିଛି ଏବଂ ଏହା ପିଙ୍କ୍ ବୁକ୍‌ରେ ମଧ୍ୟ ସ୍ଥାନ ପାଇଛି । ରାଜ୍ୟ ସରକାର ଏହି ଦୁଇ ପ୍ରକଳ୍ପ ନିର୍ମାଣ ନିମନ୍ତେ ରାଜ୍ୟର ଅଂଶଧନ ବାବଦ ଅର୍ଥ ଦେବାକୁ ସମ୍ମତି ପ୍ରକାଶ କରି ପୂର୍ବରୁ କେନ୍ଦ୍ର ସରକାରଙ୍କୁ ୨୦୧୪ ମସିହାରେ ପତ୍ର ଲେଖିଥିଲେ । ଜୟପୁର–ମାଲକାନ୍‌ଗିରି ରେଳ ଲାଇନ୍ ପ୍ରକଳ୍ପର ନିର୍ମାଣ ଖର୍ଚ୍ଚ ୨୫ ପ୍ରତିଶତ ଦେବାକୁ ରାଜ୍ୟ ସରକାର ରାଜି ହୋଇଥିବା ବେଳେ ଜୟପୁର–ନବରଙ୍ଗପୁର ରେଳ ଲାଇନ୍ ନିମନ୍ତେ ମାଗଣା ଜମି ଯୋଗାଇ ଦେବା ସହ ନିର୍ମାଣ ଖର୍ଚ୍ଚର ୫୦ ପ୍ରତିଶତ ବହନ କରିବାକୁ ସମ୍ମତି ପ୍ରଦାନ କରିଛନ୍ତି ।

ସୂଚନାଯୋଗ୍ୟ ଯେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଚଳିତ ବର୍ଷ ଅପ୍ରେଲ ୧୬ ତାରିଖରେ ରେଳ ମନ୍ତ୍ରୀ ଶ୍ରୀ ପ୍ରଭୁଙ୍କ ସହିତ ସାକ୍ଷାତ ଆଲୋଚନା ସମୟରେ ଏ ସଂପର୍କରେ ବିଶଦ ଆଲୋଚନା କରିଥିଲେ ଏବଂ ରେଳମନ୍ତ୍ରୀ ଖୋର୍ଦ୍ଧା–ବଲାଙ୍ଗୀର ରେଳପଥ ଢାଞ୍ଚାରେ ଉପରୋକ୍ତ ଦୁଇ ରେଳ ପ୍ରକଳ୍ପ ନିର୍ମାଣକୁ କାର୍ଯ୍ୟକାରୀ କରିବା ପାଇଁ ସମ୍ମତ ହୋଇଥିଲେ । ଏହି ପରିପ୍ରେକ୍ଷୀରେ ଚଳିତ ଆର୍ଥିକ ବର୍ଷର ୨ ମାସ ବିତି ଯାଇଥିଲେ ମଧ୍ୟ ଏହି ଦୁଇ ଗୁରୁତ୍ୱପୂର୍ଣ୍ଣ ରେଳ ପ୍ରକଳ୍ପ ନିର୍ମାଣ ଦିଗରେ କୌଣସି ପଦକ୍ଷେପ ନିଆଯାଇ ନ ଥିବାରୁ ତୁରନ୍ତ ଏ ଦିଗରେ ରାଜ୍ୟ ସରକାରଙ୍କ ସହିତ ଆବଶ୍ୟକୀୟ ବୁଝାମଣାପତ୍ର ଓ ରାଜିନାମା ସ୍ୱାକ୍ଷର କରି ନିର୍ମାଣ କାମ ଆରମ୍ଭ କରିବା ପାଇଁ ମନ୍ତ୍ରୀ ଶ୍ରୀ ମାଝୀ ତାଙ୍କ ପତ୍ରରେ ଅନୁରୋଧ କରିଛନ୍ତି । ଏଥି ସହିତ ଏହି ପ୍ରକଳ୍ପ ନିମନ୍ତେ ରାଜ୍ୟ ସରକାର ଚଳିତ ବଜେଟ୍‌ରେ ତାଙ୍କର ଅଂଶଧନ ବାବଦକୁ ଅର୍ଥ ମଂଜୁର କରିଥିବା କଥା ଉଲ୍ଲେଖ କରିଛନ୍ତି ।

# ଭକ୍ତି ଓ ଭକ୍ତ

ଗୋଲାପ ମଞ୍ଜରୀ ନନ୍ଦ

ଯେଉଁ ଶକ୍ତି ବଳରେ ଈଶ୍ୱରଙ୍କ ମନ ଓ ହୃଦୟ ଶୀଘ୍ର ଦ୍ରବୀଭୂତ ହୁଏ, ସେଇ ଅଦୃଶ୍ୟ ଶକ୍ତିର ନାମ ଭକ୍ତି । ଭକ୍ତି ହେଉଛି ଭଗବାନଙ୍କ ପ୍ରଦତ୍ତ ଶ୍ରେଷ୍ଠ ଶକ୍ତି । ଭଗବତ୍ ଶକ୍ତିରୂପୀ ଭକ୍ତି ବହୁତ ଶକ୍ତିଶାଳୀ । ଭଗବାନଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଇବା ହେଉଛି ଭକ୍ତି । ଭକ୍ତି ହେଉଛି ସଚ୍ଚିଦାନନ୍ଦ ସ୍ୱରୂପା ଶକ୍ତି, ଯାହାକୁ ଭକ୍ତ ହୃଦୟରେ ଧାରଣ କରେ ଏବଂ ପରମାନନ୍ଦଙ୍କ କୃପା ଲାଭ କରିବାର ସୁଯୋଗ ପାଏ । କରୁଣାମୟ ଆନନ୍ଦମୟ ବିଭୁଙ୍କୁ ସାକ୍ଷାତ କରିବାର ଶ୍ରେଷ୍ଠ ମାଧ୍ୟମ ହେଉଛି ଭକ୍ତି । ନଦୀ ଯେପରି ପ୍ରବାହିତ ନହେଲେ ତା'ର କାୟା ବିସ୍ତାର କରିପାରେ ନାହିଁ, ସେହିପରି ଭକ୍ତି ପ୍ରସାରିତ ନହେଲେ ତା'ର ସୁଦୂର ପ୍ରସାରୀ ସୀମା ଜଣାପଡି ନଥାଏ । ଭଗବାନଙ୍କୁ ସମଗ୍ର ବିଶ୍ୱ ଭକ୍ତି କରେ ତଥାପି ତା' ମଧ୍ୟରେ ଶ୍ରେଷ୍ଠ ଭକ୍ତ ଥାଆନ୍ତି ଅଳ୍ପ କିଛି । ଭକ୍ତି କରିବାକୁ ସମସ୍ତଙ୍କର ଇଛା ଥିଲେ ମଧ୍ୟ ସମସ୍ତେ ଭକ୍ତି କରିପାରନ୍ତି ନାହିଁ । ସମୁଦ୍ରରେ ଥିବା ଅମାପ ଜଳରାଶି ଲବଣାକ୍ତ ହେତୁ ପିଇବା ଉପଯୋଗୀ ନୁହେଁ । ଠିକ୍ ସେହିପରି ଲୋକ ଦେଖାଣିଆ ଭକ୍ତି ଓ ଅନ୍ତରର ଶ୍ରଦ୍ଧାବିହୀନ ଭକ୍ତି ସମୁଦ୍ରର ଲବଣାକ୍ତ ଜଳ ସହ ସମାନ, ଯାହାକୁ କି ଈଶ୍ୱର ଗ୍ରହଣ କରିନଥାନ୍ତି ।

ସଂସାର ସିନ୍ଧୁ ରୂପେଣ ମୀନ ରୂପେଣ ମାନବାଃ
ଜଂଜାଳ ଜାଲ ରୂପେଣ କାଳ ରୂପେଣ ଧୀବରାଃ ।

ସଂସାର ରୂପକ ସାଗରରେ ମୀନ ରୂପେ ମଣିଷ ଖେଳୁଛି । ସେହି ମୀନଙ୍କୁ ଜଂଜାଳ ରୂପକ ଜାଲରେ କାଳ ବା ମୃତ୍ୟୁ ରୂପକ ଧୀବର ଧରୁଛି । ଏହା ହିଁ ଚିରନ୍ତନ ସତ୍ୟ । ଏଥିରୁ ମୁକ୍ତି ପାଇବାକୁ ହେଲେ ଭଗବାନଙ୍କ ପଦାରବିନ୍ଦରେ ଭକ୍ତି କରିବା ଏକାନ୍ତ ଆବଶ୍ୟକ । ପ୍ରଭୁଙ୍କ ନିକଟରେ ବ୍ୟାକୁଳ ପ୍ରାଣର ନିବେଦନ କେବେ ବ୍ୟର୍ଥ ହୁଏ ନାହିଁ । ନିଷ୍ଠାର ସହ ନାମ ଭଜନ କଲେ ଭକ୍ତି ବଢ଼େ । ସଂସାରରେ ସବୁ ଜାଗାରେ ଛାଇ ରହିଥିବା ଭଗବାନଙ୍କ ଦର୍ଶନ ଭକ୍ତକୁ ସେପର୍ଯ୍ୟନ୍ତ ମିଳିପାରିବ ନାହିଁ ଯେପର୍ଯ୍ୟନ୍ତ ଭକ୍ତ ନିଜର ମନକୁ ନିର୍ମଳ କରିପାରିବ ନାହିଁ ।

ଜନ୍ମ ଦୁଃଖଂ ଜରା ଦୁଃଖଂ ଜାୟା ଦୁଃଖଂ ପୁନଃ ପୁନଃ
ଅନ୍ତକାଳଂ ମହାଦୁଃଖ ତସ୍ମାତ୍ ଜାଗୃହି ଜାଗୃହି ।

ଜୀବନ କାଳରେ ଭୋଗୁଥିବା ସମସ୍ତ ଦୁଃଖରୁ ଅନ୍ତକାଳର ଦୁଃଖ ଅତୀବ କଷ୍ଟଦାୟକ । ଏଥିରୁ ରକ୍ଷା ପାଇବାକୁ ହେଲେ ନିଜକୁ ସଂପୂର୍ଣ୍ଣ ରୂପେ ଭଗବାନଙ୍କ ପାଖରେ ସମର୍ପଣ କରିବାକୁ ପଡିବ । ପ୍ରେମ ଭକ୍ତିର ଠାକୁର ଭକ୍ତ ପାଇଁ ସବୁକିଛି କରିପାରନ୍ତି । ଏକନିଷ୍ଠ ଭକ୍ତିର ଡୋରିରେ ଭକ୍ତ ଯେ ଭଗବାନଙ୍କୁ ବାନ୍ଧିରଖେ ସେଥିରୁ ଭଗବାନ ମୁକୁଳି ପାରନ୍ତି ନାହିଁ । ପରମେଶ୍ୱର, ଅଖିଳବ୍ରହ୍ମାଣ୍ଡ ନାଥ, ଅନ୍ତର୍ଯ୍ୟାମୀ ଭକ୍ତର ଭକ୍ତିରେ ଏମିତି ବାନ୍ଧି ହୋଇଯାଆନ୍ତି ଯେ ତା'ର ପଛେ ପଛେ ଧାଇଁଥାନ୍ତି ଟିକିଏ ଭକ୍ତି ପାଇଁ । ସାଲବେଗଙ୍କ ଭାଷାରେ–

ଧେନୁ ପଛେ ପଛେ ବତ୍ସା ଗମେ କ୍ଷୀର ଲୋଡେ
ଭକତ ପଛରେ ତୁହି ଥାଉ ସେହି ଭାବେ ।

ତ୍ରେତୟା ଯୁଗର ସେ ଶ୍ରବଣା ଶବରୀ କଥା ମନେ ପକାନ୍ତୁ କ'ଣ ଥିଲା ତା'ର ଶିକ୍ଷାଦୀକ୍ଷା ଧନମାନ କିନ୍ତୁ ଥିଲା ତା'ର ନିର୍ମଳ ମନ ନିଷ୍କପଟ ହୃଦୟ, ଅନାବିଳ ଭକ୍ତି, ଯାହାକୁ କି ନବଧା ଭକ୍ତି କୁହାଯାଏ । ଭକ୍ତି ହେଉଛି ନଅ ପ୍ରକାରର ।

୧) ଭଗବାନଙ୍କ ନାମ ଶ୍ରବଣ କରିବା

୨) ଭଗବାନଙ୍କ ନାମ କୀର୍ତ୍ତନ କରିବା ।

୩) ଈଶ୍ୱରଙ୍କ ନାମ ସ୍ମରଣ କରିବା ।

୪) ଈଶ୍ୱରଙ୍କ ପାଦ ସେବା କରିବା ।

୫) ବିଭିନ୍ନ ବେଶ ସଜେଇ ପୂଜା ଅର୍ଚ୍ଚନା କରିବା ।

୬) ଭଗବାନଙ୍କ ବନ୍ଦନା ବା ପ୍ରାର୍ଥନା କରିବା ।

୭) ନିଜକୁ ଈଶ୍ୱରଙ୍କର ଭୃତ୍ୟ ବା ଦାସ ମନେ କରିବା ।

୮) ଭଗବାନଙ୍କ ସହ ସଖା ବା ମିତ୍ର ଭାବ ରଖିବା ।

୯) ନିଜକୁ ଭଗବାନଙ୍କ ପାଖରେ ସମର୍ପଣ କରିବା ।

ଇତିହାସରେ ରହିଛି ଏହି ନଅ ପ୍ରକାର ଭକ୍ତଙ୍କ ଉଦାହରଣ ।

ଶ୍ରବଣ କରିବା ଭକ୍ତ– ଶୁକମୁନି, କୀର୍ତ୍ତନ – ଶ୍ରୀଚୈତନ୍ୟ, ସ୍ମରଣ–ଅଜାମିଳ ଓ ମୃଗୁଣୀ, ପାଦ ସେବନ–ଶବରୀ, ଅର୍ଚ୍ଚନ–କୁବୁଜା, ବନ୍ଦନ–ପ୍ରହ୍ଲାଦ, ଦାସ୍ୟ–ହନୁମାନ, ସଖ୍ୟ–ଅର୍ଜୁନ, ସୁଦାମା, ଆତ୍ମ ନିବେଦନ–ଗୋପୀମାନେ ଓ ମୀରାବାଈ । ଗୀତାରେ ଭଗବାନ କହିଛନ୍ତି – ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ – ଅର୍ଥାତ୍ ମୋର ଭକ୍ତ ଯେଉଁ ଭାବରେ ମୋର ଶରଣାପନ୍ନ ହୁଅନ୍ତି ମୁଁ ସେହି ରୂପରେ ମାର୍ଗ ଦର୍ଶନ କରାଇଥାଏ ।

ଭକ୍ତି କରିବା ପାଇଁ ବା ଭଗବାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଜ୍ଞାନଭିତ୍ତିକ ଶିକ୍ଷାଦୀକ୍ଷା, ଐଶ୍ୱର୍ଯ୍ୟ, ପଦମର୍ଯ୍ୟାଦା, ଆଭିଜାତ୍ୟର ଆବଶ୍ୟକତା ନାହିଁ ।

ବ୍ୟାଧସ୍ୟାଚରଣଂ ଧ୍ରୁବସ୍ୟତବୟୋ
ବିଦ୍ୟା ଗଜେନ୍ଦ୍ରସ୍ୟ କା
କାଜାତି ବିଦୁରସ୍ୟ ଯାଦବପତେ
ଉଗ୍ରସ୍ୟ କିଂ ପୌରଷମ୍
କୁବଜାୟା କିମୁନାମ ରୂପମଧିକ
କିଂ ତତ୍ ସୁଦାମୋ ଧନ
ଭକ୍ତ୍ୟା ତୁଷ୍ୟନ୍ତି କେବଳଂ ନଚ ଗୁଣୈଃ
ଭକ୍ତି ପ୍ରିୟ ମାଧବଃ ।

ବ୍ୟାଧ କହିଲେ ଶିକାରୀ, ଯିଏ ପ୍ରତ୍ୟହ ପଶୁହତ୍ୟା କରେ ତା'ର ଭଲ ଆଚରଣ କ'ଣ ଥିଲା । ବୃକ୍ଷ ତଳେ ଥିବା ବ୍ୟାଘ୍ର ଭୟରେ ବିଲ୍ୱ ବୃକ୍ଷରେ ଚଢ଼ି ବିଲ୍ୱ ପତ୍ର ସବୁ ଛିଣ୍ଡାଇ ଅନ୍ୟ ମନସ୍କ ଭାବେ ତଳକୁ ପକାଉଥିଲା । ଯାହା ବୃକ୍ଷ ତଳେ ଥିବା ଶିବଲିଙ୍ଗ ଉପରେ ପଡୁଥିଲା । ରାତ୍ରିର ଚାରି ପ୍ରହର ଏମିତି କରୁ କରୁ ଶିବରାତ୍ରୀ ବ୍ରତର ଫଳ ମିଳିଲା ତାକୁ । ବାଳକ ଧ୍ରୁବର ବୟସ କେତେ ଥିଲା । କ'ଣ ଜଣାଥିଲା ତାକୁ ଈଶ୍ୱରଙ୍କ ବିଷୟରେ । ଅରଣ୍ୟର ବୃକ୍ଷଲତା, ପଶୁପକ୍ଷୀ ଭୟଙ୍କର ବ୍ୟାଘ୍ର ସର୍ପ ଆଦିଙ୍କୁ ହରି ଭାବି କୋଳାଗ୍ରତ କରୁଥିଲା ସିଏ । ତା'ର ଏଇ ଅନାବିଳ ଭକ୍ତିରେ ବାନ୍ଧି ହୋଇ ଭଗବାନ ତାକୁ ଯୁଗ ଯୁଗ ପାଇଁ ଧ୍ରୁବଲୋକରେ ସ୍ଥାନ ଦେଲେ । ଗଜ କହିଲେ – ହସ୍ତୀ ଯାହାକୁ ଲୋକେ ଗଜମୂର୍ଖ କହନ୍ତି ତା'ର ବିଦ୍ୟାବୁଦ୍ଧି କ'ଣ ଥିଲା ଯେ ଭଗବାନ ତାକୁ କୁମ୍ଭୀର କବଳରୁ ରକ୍ଷା କରିଥିଲେ । କେବଳ ଜଳରୁ ପଦ୍ମଫୁଲଟିଏ ଟେକି ଦେଇଥିଲା ସେ ଭଗବାନଙ୍କ ଉଦ୍ଦେଶ୍ୟରେ । ବିଦୁରଙ୍କ ଜାତି କ'ଣ ଥିଲା । ସେ ଥିଲେ ଦାସୀପୁତ୍ର କିନ୍ତୁ ତାଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇ ଭଗବାନ ତାଙ୍କ ପାଖରୁ ଶାଗଭାତ ଗ୍ରହଣ କରିଥିଲେ । ଯାଦବପତି ଉଗ୍ରସେନଙ୍କର ପୌରୁଷତା କ'ଣ ? ସେ ସର୍ବଦା କଂସ ଭୟରେ ଭୀତତ୍ରସ୍ତ ଥିଲେ । ଭଗବାନ ତାଙ୍କୁ କୃପା କରି ମଥୁରାରେ ରାଜପଦ ଦେଇଥିଲେ ଓ ତାଙ୍କୁ ନିଜର ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ ଦେଇଥିଲେ । କୁବ୍‌ଜା ନାମ ଶୁଣନ୍ତୁ ଯାହାର ପିଠିରେ ଗୋଟିଏ କୁଜ ରହିଥିଲା । ତା'ର ଭକ୍ତିରେ ପ୍ରୀତ ମାଧବ ତାକୁ ଅନନ୍ୟା ସୁନ୍ଦରୀ କରିଦେଲେ । ସୁଦାମା ଭଳି ଗରିବ ଲୋକର ପର୍ଣ୍ଣକୁଟୀରରେ ଖୁଦଭଜା ଗ୍ରହଣ କରି ତାଙ୍କୁ ଅମାପ ଧନର ଅଧିକାର ଦେଇଥିଲେ । ଗୁଣ ବିଦ୍ୟା ଶିକ୍ଷା ରୂପ ଏସବୁ ଭଗବାନଙ୍କ ପାଖରେ କାମରେ ଆସେନି । କେବଳ ଭକ୍ତିରେ ସନ୍ତୁଷ୍ଟ ହୁଅନ୍ତି ପ୍ରଭୁ । ସେ ଭକ୍ତି ପ୍ରିୟ ମାଧବ । ଭକ୍ତ ପ୍ରତି ପ୍ରଭୁଙ୍କର ଅହେତୁକ କୃପା ସବୁବେଳେ ରହିଛି ।

ଆହୁରି ଅନେକ ଉଦାହରଣ ରହିଛି ଆମ ଆଗରେ । ପ୍ରହ୍ଲାଦକୁ ହତ୍ୟା କରିବା ପାଇଁ ତା'ର ରାକ୍ଷସ ପିତା କେତେ ଭୟଙ୍କର ଯୋଜନାମାନ ପ୍ରସ୍ତୁତ କରିନଥିଲା । ମାତ୍ର ଭକ୍ତ ବତ୍ସଳ ହରି ସମସ୍ତ କଠିନ ପରୀକ୍ଷାରୁ ଉତ୍ତୀର୍ଣ୍ଣ କରାଇ ଶେଷରେ ସେଇ ଭକ୍ତର ସୁରକ୍ଷା ନିମିତ ନିଜେ ଏକ ଅସାଧାରଣ ଅବତାର

'ନରସିଂହ' ନେଇ ହିରଣ୍ୟକଶିପୁକୁ ହତ୍ୟା କରିଥିଲେ । ମନ ଓ ହୃଦୟରେ ଅତୁଟ ଭକ୍ତି ଥିଲା ଦାସିଆ ବାଉରୀର, ସାଲବେଗଙ୍କର, ବନ୍ଧୁ ମହାନ୍ତି ଓ ବଳରାମ ଦାସଙ୍କର ଯେଉଁଥି ପାଇଁ କି ତାଙ୍କ ଅନନ୍ୟ ଭକ୍ତି ଇତିହାସରେ ଲିପିବଦ୍ଧ । କୁରୁସଭା ମଧ୍ୟରେ ଦ୍ରୌପଦୀ ନିରୁପାୟ ହୋଇ ଭଗବାନଙ୍କ ପାଖରେ ଆତ୍ମ ସମର୍ପଣ କରିଥିଲେ । କୋଟି ବ୍ରହ୍ମାଣ୍ଡ ନାୟକ ପ୍ରଭୁ ନାରୀର ସମ୍ମାନ ରକ୍ଷା କରିବାକୁ ୫୨ କୋଟି ଭଣ୍ଡାରର ବସ୍ତ୍ର ଯୋଗାଇ ଥିବାର ପ୍ରମାଣ ମହାଭାରତରୁ ମିଳେ । ଭକ୍ତ ଗଜପତି ରାଜାଙ୍କର ସମ୍ମାନ ରକ୍ଷା କରିବାକୁ ଯାଇ ପ୍ରଭୁ ନିଜେ କଳାଧଳା ଘୋଡା ଚଢ଼ି ସୈନିକ ବେଶରେ କାଂଚି ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ଧନ୍ୟ ପ୍ରଭୁ ଧନ୍ୟ ତୁମର ଭକ୍ତ ବତ୍ସଳତା ।

ଭଗବାନଙ୍କ ପାଖରେ ଏତିକି ପ୍ରାର୍ଥନା ହେ ପ୍ରଭୋ ! ଧର୍ମ ଅର୍ଥ, କାମ, ମୋକ୍ଷ ମୋର ଦରକାର ନାହିଁ । ମୋତେ ଜନ୍ମ ଜନ୍ମ ପାଇ ତୁମ ଚରଣରେ ଭକ୍ତି ଦିଅ ଭକ୍ତି ଦିଅ ।

ଧର୍ମ ଅର୍ଥେ କାମେ ଲୋଭ ମୋର ନାହିଁ
ନଲୋଡା ନିର୍ବାଣ ଗତି
ଜନ୍ମ ଜନ୍ମ ପାଇଁ ଦିଅ ମୋତେ ପ୍ରଭୁ
ତୁମ ଶ୍ରୀଚରଣେ ଭକ୍ତି ।

ଭକ୍ତମାନଙ୍କୁ ୪ଟି ଶ୍ରେଣୀରେ ବିଭକ୍ତ କରାଯାଏ ।

୧) ଜିଜ୍ଞାସୁ – ପରମାତ୍ମାଙ୍କ ଗୂଢ଼ ରହସ୍ୟ ଜାଣିବାକୁ ଇଚ୍ଛା କରୁଥିବା ଭକ୍ତ ।

୨) ଜ୍ଞାନୀ – ଜ୍ଞାନ ବା ତତ୍ତ୍ୱ ଅର୍ଜନ କରିବାକୁ ଇଚ୍ଛା କରୁଥିବା ଭକ୍ତ ।

୩) ଆର୍ତୀ – ସଙ୍କଟ ବା ବିପଦରୁ ମୁକ୍ତି ଇଚ୍ଛା କରୁଥିବା ଭକ୍ତ ।

୪) ଅର୍ଥାର୍ଥୀ – ଲୌକିକ ବା ସାଂସାରିକ ସିଦ୍ଧି ଇଛା କରୁଥିବା ଭକ୍ତ ।

ହୃଦୟରେ ଦୟା, କ୍ଷମା, କରୁଣା, ମାନବିକତା ପରୋପକାର ଆଦି ଗୁଣ ରହି ପାରିଲେ ଭକ୍ତିଭାବ ଆପେ ଆପେ ଚାଲିଆସିବ । ବିଭୁ କୃପା ପାଇବାକୁ ହେଲେ ଉଚ୍ଚ ନୀଚ ଭେଦଭାବ ଭୁଲି ହୃଦୟରେ ଦୟା କ୍ଷମାର ଭଣ୍ଡାର ଖୋଲି ଭଗବାନଙ୍କ ସୃଷ୍ଟିର ସକଳ ଜୀବଙ୍କୁ ସମଭାବଜ୍ଞାନ କରି ନିର୍ମଳ ହୃଦୟରେ ତାଙ୍କୁ ଡାକିବା ଏବଂ ତାଙ୍କର ଶରଣାପନ୍ନ ହେବା, ତେବେ ଯାଇ ପରମେଶ୍ୱରଙ୍କ ଶୁଭ ଦୃଷ୍ଟି ଆମ ଉପରେ ପଡିବ ଏବଂ ମାନବ ଜୀବନ ଧନ୍ୟ ହେବ ।

ସ୍ଥାନ – କ୍ୱାର୍ଟର ନଂ– ୧ବି–୨୦
ପୋ–ଦେଉଳବେଡା କଲୋନୀ
ଭାୟା–ତାଳଚେର
ଜିଲ୍ଲା–ଅନୁଗୋଳ
ପିନ୍–୭୫୯୧୦୨



# ସପ୍ରସଙ୍ଗ ଓଡ଼ିଶା



## ଓଡ଼ିଶା ଜୀବିକା ମିଶନ କାର୍ଯ୍ୟକ୍ରମରେ ରାଜ୍ୟର ୩୦ଟି ଜିଲ୍ଲା ସାମିଲ

ଓଡ଼ିଶା ଜୀବିକା ମିଶନ ଅନ୍ତର୍ଗତ କାର୍ଯ୍ୟକ୍ରମରେ ୨୪ଟି ଜିଲ୍ଲାର ୮୮ଟି ବ୍ଲକ୍ ସାମିଲ ଥିଲା । ଏବେ ରାଜ୍ୟର ୩୦ଟି ଜିଲ୍ଲାର ୧୦୭ଟି ବ୍ଲକ୍‌କୁ ସାମିଲ କରାଯାଉଛି ଏବଂ ପର୍ଯ୍ୟାୟକ୍ରମେ ୨୦୨୧– ୨୨ ସୁଦ୍ଧା ରାଜ୍ୟର ସମସ୍ତ ୩୧୪ ବ୍ଲକ୍‌କୁ ସାମିଲ କରାଯିବ ବୋଲି ପଞ୍ଚାୟତିରାଜ ଓ ଆଇନ ମନ୍ତ୍ରୀ ଡ. ଅରୁଣ କୁମାର ସାହୁଙ୍କ ସମୀକ୍ଷା ବୈଠକରୁ ସୂଚନା ମିଳିଛି ।

ସଚିବାଳୟରେ ମନ୍ତ୍ରୀ ଡ. ସାହୁ ଓଡ଼ିଶା ଜୀବିକା ମିଶନର ବିଭିନ୍ନ କାର୍ଯ୍ୟକ୍ରମର ସମୀକ୍ଷା କରିଛନ୍ତି । ରାଜ୍ୟର ୧୫୦୦ ଗ୍ରାମପଞ୍ଚାୟତରେ ପ୍ରାୟ ୧୨୦୯୪ ଗ୍ରାମରେ ଜୀବିକା ମିଶନ କାର୍ଯ୍ୟକ୍ରମ ଚାଲିଛି ଏବଂ ଏଥିରେ ପ୍ରାୟ ୧୧,୮୪୩୪ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି । ପ୍ରାୟ ୧୨.୫୪ ଲକ୍ଷ ପରିବାରଙ୍କୁ ଏଥିରେ ସାମିଲ କରାଯାଇଛି । ଏଥି ମଧ୍ୟରୁ ୮୯୦୨୯ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ବର୍ତ୍ତମାନ ସୁଦ୍ଧା ପ୍ରାୟ ୧୧୩ କୋଟି ଟଙ୍କା ଆବର୍ତ୍ତନ ପାଣ୍ଠି ଯୋଗାଇ ଦିଆଯାଇଛି । ମାର୍ଚ୍ଚ ୨୦୧୬ ସୁଦ୍ଧା ୭୨୭୮୧ ସ୍ୱୟଂ ସହାୟକ ଗୋଷ୍ଠୀ ଅଣୁ ନିବେଶ ଯୋଜନା ପ୍ରସ୍ତୁତ କରିଛନ୍ତି ଏବଂ ଏହି ଯୋଜନାରେ ବର୍ତ୍ତମାନ ସୁଦ୍ଧା ୨୪୪ କୋଟି ଟଙ୍କା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ପ୍ରଦାନ କରାଯାଇଛି । ୧୪୯୧ଟି ଗ୍ରାମ ପଞ୍ଚାୟତ ସ୍ତରୀୟ ମହାସଂଘ ଗଠିତ ହୋଇଛି ଏବଂ ବ୍ୟାଙ୍କ୍ କ୍ରେଡିଟ୍ ଲିଙ୍କେଜ୍ ପାଇଁ ବିଶେଷ ବ୍ୟବସ୍ଥା ହୋଇଥିବା ବୈଠକରୁ ଜଣାପଡିଛି । ଆଗାମୀ ୨୦୧୬–୧୭ ଆର୍ଥିକ ବର୍ଷରେ ଜୀବିକା ନିର୍ବାହ କ୍ଷେତ୍ରରେ କୃଷି କ୍ଷେତ୍ରର ପ୍ରାୟ ୮ ହଜାର ଗ୍ରାମର ୧ ଲକ୍ଷ ୫୦ ହଜାର ପରିବାର ପ୍ରାଣୀ ସଂପଦରେ ୮୦ ହଜାର ଏବଂ ଅନ୍ୟାନ୍ୟ କ୍ଷେତ୍ରରେ ମୋଟ ୨,୬୪,୧୦୦ ପରିବାରଙ୍କୁ ସହାୟତା ଯୋଗାଇ ଦିଆଯିବା ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ସେହିଭଳି ଦକ୍ଷତା ବିକାଶ କାର୍ଯ୍ୟକ୍ରମରେ ଓଡ଼ିଶାର କାର୍ଯ୍ୟ ଜାତୀୟସ୍ତରରେ ପ୍ରଶଂସିତ ହୋଇଛି । ତାଲିମଦାତାଙ୍କ ପାଇଁ ତାଲିମର ବିଶେଷ କାର୍ଯ୍ୟକ୍ରମକୁ ପ୍ରଶଂସା କରାଯାଇଛି । ୨୦୧୫– ୧୬ରେ ମୋଟ ୨୫ ହଜାର ୭୮୯ ଯୁବକଯୁବତୀଙ୍କୁ ଦକ୍ଷତା ତାଲିମ ଦିଆଯାଇଛି ଯେଉଁଥିରେ ୧୭୩୨୭ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକ ଅଛନ୍ତି । ସାରା ଭାରତରେ କର୍ମସଂସ୍ଥାନ ହାର ୬୧ ପ୍ରତିଶତ ଥିବାବେଳେ ଓଡ଼ିଶାର ହାର ୬୬ ପ୍ରତିଶତ ରହିଛି ଯାହା ଜାତୀୟ ସ୍ତରରେ ଦୃଷ୍ଟି ଆକର୍ଷଣ କରିଛି ।

ରକ୍ଷକ ନାୟକ, ସୂଚନା ଅଧିକାରୀ

## ଜୁନ ୧ରୁ ୨୧ ତାରିଖ ସରକାରୀ କାର୍ଯ୍ୟଦିବସରେ ମେସର୍ସ ରୋଜଭ୍ୟାଲି କମ୍ପାନୀସମୂହର ଜମାକାରୀଙ୍କଠାରୁ ଆବେଦନ ଗ୍ରହଣ

ମେସର୍ସ ରୋଜଭ୍ୟାଲି କମ୍ପାନୀସମୂହ ଦ୍ୱାରା କ୍ଷତିଗ୍ରସ୍ତ ଜମାକାରୀମାନେ ନିର୍ଦ୍ଧାରିତ ଫର୍ମରେ ଆବେଦନପତ୍ରକୁ ଉପଯୁକ୍ତ ଭାବେ ପୂରଣ କରି ନିଜ ନିଜ ତହସିଲର ତହସିଲଦାରଙ୍କ ନିକଟରେ ଦାଖଲ କରିବେ । ଆବେଦନଗୁଡିକ ସଂପୃକ୍ତ ତହସିଲ

କାର୍ଯ୍ୟାଳୟରେ ସରକାରୀ ଛୁଟିଦିନ ବ୍ୟତୀତ ଜୁନ୍ ୧ ତାରିଖରୁ ଜୁନ୍ ୨୧ ତାରିଖ ପର୍ଯ୍ୟନ୍ତ କାର୍ଯ୍ୟାଳୟ ସମୟ ଦିନ ୧୦ଟାରୁ ଅପରାହ୍ନ ୫ଟା ମଧ୍ୟରେ ଗ୍ରହଣ କରାଯିବ । ଏହି ସମ୍ବନ୍ଧରେ ଅର୍ଥ ବିଭାଗ ପକ୍ଷରୁ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗକୁ ଏକ ପତ୍ର ଲେଖାଯାଇଛି । ଏଥିରେ ସମସ୍ତ ଜିଲ୍ଲାପାଳମାନଙ୍କୁ ସେମାନଙ୍କ ଜିଲ୍ଲାର ତହସିଲଦାରମାନଙ୍କୁ ଏହି ଦରଖାସ୍ତ ଗ୍ରହଣ କରିବା ପାଇଁ ଓ ସେଗୁଡ଼ିକୁ ଏକତ୍ର କରିବା ନିମନ୍ତେ ନିର୍ଦ୍ଦେଶ ଦେବା ସହ କେତେକ ଆନୁଷଙ୍ଗିକ ବ୍ୟବସ୍ଥା ଗ୍ରହଣ କରିବାକୁ ଉଲ୍ଲେଖ ରହିଛି । ପ୍ରତି ତହସିଲରେ ଦରଖାସ୍ତ ଗ୍ରହଣ କରି ପ୍ରାପ୍ତି ସ୍ୱୀକାର ଦେବା ପାଇଁ ଜଣେ ନୋଡାଲ ଅଫିସରଙ୍କୁ ଦାୟିତ୍ୱ ଦିଆଯିବ । ସେ ଏକ ରେଜିଷ୍ଟରରେ କ୍ରମିକ ନମ୍ବର, ଆବେଦନକାରୀଙ୍କ ନାମ, ପିତାଙ୍କ ନାମ, ଠିକଣା, ଫୋନ ନମ୍ବର, ଇ–ମେଲ୍ ଠିକଣା ଓ ଆବେଦନକାରୀଙ୍କ ଦସ୍ତଖତ ରଖିବେ । ପ୍ରତି କାର୍ଯ୍ୟଦିବସର ତାରିଖ ସ୍ପଷ୍ଟଭାବେ ରେଜିଷ୍ଟରରେ ଦର୍ଶାଯିବା ଆବଶ୍ୟକ । ଜୁନ୍ ୨୧ ତାରିଖରେ ଜଣେ କ୍ଷମତାପନ୍ନ ବରିଷ୍ଠ ଅଧିକାରୀ ତହସିଲଗୁଡ଼ିକ ଯାଇ ରେଜିଷ୍ଟରର ଶେଷ ଜମାକାରୀଙ୍କ ବିବରଣୀ ପରେ ଦସ୍ତଖତ କରିବେ । ଅଧିକ ଆବେଦନକାରୀ ଥିବା ତହସିଲଗୁଡ଼ିକର ଦରଖାସ୍ତ ଦେବା ପ୍ରକ୍ରିୟାର ଭିଡିଓ ଚିତ୍ର ଉତ୍ତୋଳନ କରାଯିବ । ରେଭିନ୍ୟୁ ଡିଭିଜନାଲ୍ କମିଶନରଙ୍କ ତଦାରଖରେ ଏହି ସଂପୂର୍ଣ୍ଣ ପ୍ରକ୍ରିୟା କରାଯିବାକୁ ଏହି ପତ୍ରରେ କୁହାଯାଇଛି । ଉଲ୍ଲେଖଯୋଗ୍ୟ ଯେ, ଏ ସଂପର୍କିତ ଆବେଦନପତ୍ର ସମ୍ବାଦପତ୍ରରେ ବିଜ୍ଞାପନ ମାଧ୍ୟମରେ ପ୍ରକାଶିତ ହୋଇସାରିଛି । ଏହାକୁ ଉପଯୁକ୍ତ ଭାବେ ପୂରଣ କରି ଜମାକାରୀମାନେ ଆବେଦନ କରିବେ ଓ ପ୍ରାପ୍ତିସ୍ୱୀକାର ଗ୍ରହଣ କରିବେ ବୋଲି ବିଜ୍ଞାପନରେ ସ୍ପଷ୍ଟ ଉଲ୍ଲେଖ ଅଛି ।

ସନ୍ତୋଷ କୁମାର ଦାସ, ସୂଚନା ଅଧିକାରୀ

## ଓଡ଼ିଶାର ଗର୍ବ ଓ ଗୌରବ ଦେବାଶିଷ ସମ୍ବର୍ଦ୍ଧିତ

ଆଜିକାଲି ବିଭିନ୍ନ ସମୟରେ ରନ୍ଧନଶାଳାରେ ଏଲ୍.ପି.ଜି ବ୍ୟବହାର ସମୟରେ ଆକସ୍ମିକ ଦୁର୍ଘଟଣା ଘଟୁଛି । ସେହି ଦୁର୍ଘଟଣାକୁ ଏଡାଇବା ଲକ୍ଷ୍ୟରେ ଓଡ଼ିଶାର ଛାତ୍ର ଦେବାଶିଷ ଏକ ନୂତନ ଓ ଅଭିନବ ପ୍ରକଳ୍ପ ପ୍ରସ୍ତୁତ କରିଛନ୍ତି । ଏହି ପ୍ରକଳ୍ପରେ ସେନ୍‌ସର ଓ ବଜର୍ ରହିଛି । ଏଲ୍.ପି.ଜି ଦୁର୍ଘଟଣା ଘଟିଲେ ବଜର୍ ଯୋଗେ ଜାଣିହେବ ଏବଂ ଟେକ୍ସଟ ମେସେଜ୍ ଯୋଗେ ଘର ଲୋକ ଓ ପଡୋଶୀମାନେ ମଧ୍ୟ ଜାଣିପାରିବେ । ଆଉ ମଧ୍ୟ ଦୁର୍ଘଟଣା ଘଟିଲେ ଘରୁ ଆପେ ଆପେ ବିଦ୍ୟୁତ୍ ସଂଯୋଗ ବିଚ୍ଛିନ୍ନ ହୋଇଯିବ । ଓଡ଼ିଶା ଶିଶୁ ଅଧିକାର ସୁରକ୍ଷା ଆୟୋଗର ଅଧ୍ୟକ୍ଷା କସ୍ତୁରୀ ମହାପାତ୍ର ଓ.ଏସ୍.ସି.ପି.ସି.ଆର୍.ର ସମ୍ମିଳନୀ କକ୍ଷରେ କବି ପ୍ରସନ୍ନ ପାଟ୍ଟଶାଣୀ ଉଚ୍ଚ ବିଦ୍ୟାଳୟ, ମୁନିନ୍ଦା, ଡେଲାଙ୍ଗ, ପୁରୀର ଦେବାଶିଷ ଶିବମଙ୍ଗଳଙ୍କୁ ସମ୍ବର୍ଦ୍ଧିତ କରିଛନ୍ତି । ଶିବମଙ୍ଗଳଙ୍କର ଏଲ୍.ପି.ଜି. ଡିଟେକ୍ଟର ଓ କଣ୍ଟ୍ରୋଲ୍‌ର (କିଚେନ୍ ସେଫ୍‌ଟି) ଉପରେ ପ୍ରସ୍ତୁତ ପ୍ରକଳ୍ପଟି ଭାରତ ସରକାରଙ୍କର ବିଜ୍ଞାନ ଓ ପ୍ରଯୁକ୍ତି ମନ୍ତ୍ରଣାଳୟ ଦ୍ୱାରା ମନୋନୀତ ହୋଇଛି । ମନ୍ତ୍ରଣାଳୟ ପକ୍ଷରୁ ଶିବମଙ୍ଗଳ ଜାପାନର ଟୋକିଓଠାରେ ଆୟୋଜିତ 'ସାକୁରା ବିଜ୍ଞାନ ବିନିମୟ କାର୍ଯ୍ୟକ୍ରମ'ରେ ଅଂଶ ଗ୍ରହଣ କରିଥିଲେ । ଏହି କାର୍ଯ୍ୟକ୍ରମର କୃତୀ ପ୍ରତିଯୋଗୀମାନେ ବିଭିନ୍ନ ସ୍ଥାନକୁ ଷ୍ଟଡି ଟୁର୍ ଯିବା ସହିତ ନୋବେଲ୍ ବିଜେତାମାନଙ୍କ ସହିତ ଭାବ ବିନିମୟ କରିଥିଲେ । ଓ.ଏସ୍.ସି.ପି.ସି.ଆର୍. ପକ୍ଷରୁ ଓଡ଼ିଶା ଶିଶୁ ଅଧିକାର ସୁରକ୍ଷା ଆୟୋଗର ଅଧ୍ୟକ୍ଷା କସ୍ତୁରୀ ଶିବମଙ୍ଗଳଙ୍କୁ ଅଭିନନ୍ଦନ ଜଣାଇ କହିଥିଲେ ଯେ ସେ ଓଡ଼ିଶାର ଗର୍ବ ଓ ଗୌରବ ।

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ, ସୂଚନା ଅଧିକାରୀ

## ଆମେରିକାର ସିଲିକନ୍ ଭ୍ୟାଲିଠାରେ ୨୩ତମ ପ୍ରଯୁକ୍ତି ଓ ଔଦ୍ୟୋଗିକ ବିଶ୍ୱ ସମ୍ମେଳନ ଅନୁଷ୍ଠିତ

ଯୁକ୍ତରାଷ୍ଟ୍ର ଆମେରିକାର ସାନ୍ତାକ୍ଲାରାର ସିଲିକନ୍ ଭ୍ୟାଲିଠାରେ ୨୩ତମ ଗ୍ଲୋବାଲ ମେଗା ସମ୍ମେଳନ ଅନୁଷ୍ଠିତ ହୋଇଯାଇଛି । ପ୍ରଯୁକ୍ତି ଓ ଔଦ୍ୟୋଗିକ ସଂପର୍କରେ ଅନୁଷ୍ଠିତ ଏହି ସମ୍ମେଳନରେ ରାଜ୍ୟ ଶିଳ୍ପ, ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ରଙ୍କ ନେତୃତ୍ୱରେ ଏକ ଉଚ୍ଚସ୍ତରୀୟ ପ୍ରତିନିଧିମଣ୍ଡଳୀ ଯୋଗ ଦେଇଥିଲେ । ମେଗା ବିଶ୍ୱ ସମ୍ମେଳନରେ ମନ୍ତ୍ରୀ ଶ୍ରୀ ମିଶ୍ର ଅନ୍ୟତମ

ପ୍ରମୁଖ ବକ୍ତା ଭାବରେ ଉପସ୍ଥିତ ପ୍ରାୟ ୫ ହଜାର ଅଂଶଗ୍ରହଣକାରୀମାନଙ୍କୁ ସମ୍ବୋଧିତ କରିବା ଅବସରରେ କହିଲେ ଯେ ବିଂଶ ଶତାବ୍ଦୀର ଶେଷ ଭାଗରେ ଏବଂ ନୂତନ ଶତାବ୍ଦୀର ପ୍ରାରମ୍ଭରେ କମ୍ପ୍ୟୁଟର ଏବଂ ଇଣ୍ଟରନେଟ୍‌ରେ ଆସିଥିବା ବିପ୍ଳବ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ କ୍ଲାଉଡ୍ କମ୍ପ୍ୟୁଟିଙ୍ଗ ଓ ସୋସିଆଲ୍ ମିଡିଆର ଆବିର୍ଭାବ ଜୀବନର ପ୍ରତ୍ୟେକ ସ୍ତରକୁ ପ୍ରଭାବିତ କରିଛି । ତେବେ ଆଜି ଲୋକମାନେ ଯାହାକିଛି ବ୍ୟବହାର କରୁଛନ୍ତି, ଆଉ କିଛି ଦିନ ପରେ ତାହା ଅକାମୀ ହୋଇଯିବ । ସଂପ୍ରତି ତୃତୀୟ ପର୍ଯ୍ୟାୟରେ ହେବାକୁ ଯାଉଥିବା ନୂଆ ଉଦ୍‌ଭାବନ ଆୟୋଟ, ଡାଟା ମାଇନିଂ ଓ ଆନାଲିସିସ୍ ଏବଂ ଆର୍ଟିଫିସିଆଲ ଇଣ୍ଟେଲିଜେନ୍ସ ଆଦି ଫଳରେ ମାନବ ସମାଜ ଗଭୀର ଭାବରେ ପ୍ରଭାବିତ ହେବାକୁ ଯାଇଛି ବୋଲି ଶ୍ରୀ ମିଶ୍ର କହିଥିଲେ । ସାଂପ୍ରତିକ ନୂତନ ଉଦ୍‌ଭାବନ ମଧ୍ୟରେ ଚନ୍ଦାପଣ ଦୂର, ଚର୍ମକୁଞ୍ଚନ ଦୂର, ଆର୍ଥ୍ରାଇଟିସ୍‌ରୁ ଆରୋଗ୍ୟ ଏବଂ ସନ୍ତ୍ରାସବାଦ, ନିଶା ଚୋରାଚାଲାଣ, ସେକ୍ସ ଟ୍ରାଫିକିଂ ଆଦି ଠାବ କରିବା ଦିଗରେ ନୂତନ ଉଦ୍‌ଭାବନର ଶ୍ରୀ ମିଶ୍ର ଉଦାହରଣ ଦେଇଥିଲେ । ନୂତନ ଉଦ୍‌ଭାବନ ଓ ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ ଫଳରେ ଲୋକମାନେ ନିଯୁକ୍ତି ହରାଇବା ଆଶଙ୍କା ଥିବାରୁ ଭାରତ ଭଳି ବିଶ୍ୱର ଜନବହୁଳ ରାଷ୍ଟ୍ରରେ କୃଷି, ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ଉଦ୍‌ଭାବନ ଓ ବିକାଶ ଆଣି ନୂତନ ନିଯୁକ୍ତି ଓ ଲୋକମାନଙ୍କର ରୋଜଗାର ବୃଦ୍ଧି କରିବା ଆବଶ୍ୟକ ବୋଲି ଶ୍ରୀ ମିଶ୍ର ମତବ୍ୟକ୍ତ କରିଥିଲେ । ପ୍ରଯୁକ୍ତି ବିଦ୍ୟାର ପ୍ରଗତିରେ ସିଲିକନ୍ ଭ୍ୟାଲି ସମେତ ସମସ୍ତ ଉଦ୍ୟୋଗୀ ଏବଂ ନବ ଉଦ୍ୟୋଗୀମାନଙ୍କ ଭୂମିକାକୁ ଶ୍ରୀ ମିଶ୍ର ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ସିଲିକନ୍ ଭ୍ୟାଲି ସହିତ ସହଯୋଗିତା ସମେତ ପୁଞ୍ଜି ନିବେଶ ନିମନ୍ତେ ଭାରତର ପୂର୍ବାଞ୍ଚଳରେ ଅବସ୍ଥିତ ଓଡ଼ିଶାରେ ଶିଳ୍ପାନୁକୂଳ ବାତାବରଣ ରହିଛି ଏବଂ ସରକାର ଆବଶ୍ୟକ ଭିତ୍ତିଭୂମି ଓ ପ୍ରୋତ୍ସାହନ ଯୋଗାଇ ଦେଉଛନ୍ତି ବୋଲି ସେ ଉଲ୍ଲେଖ କରିଥିଲେ । ସୂଚନାଯୋଗ୍ୟ ଯେ ଏହି ବିଶ୍ୱ ସମ୍ମେଳନରେ ଓଡ଼ିଶା ଏକମାତ୍ର ରାଜ୍ୟ ଯାହାକୁ ଫୋକସ୍ ଷ୍ଟେଟ୍ ମାନ୍ୟତା ଦିଆଯାଇଥିଲା, ଯଦ୍ୱାରା ପୃଥିବୀର ନାମୀଦାମୀ କମ୍ପାନୀମାନଙ୍କ ସହିତ ଭାବ ବିନିମୟ ଓ ଓଡ଼ିଶାରେ ବୈଷୟିକ ଏବଂ ନିବେଶିକ ସହଭାଗିତା ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇପାରିଥିଲା । ଏହା ଦ୍ୱାରା ଅନେକ ଶିଳ୍ପୋଦ୍ୟୋଗୀ, ପୁଞ୍ଜି ନିବେଶକାରୀ, ପ୍ରଯୁକ୍ତି ବିଦ୍ୟା ବିଶେଷଜ୍ଞମାନଙ୍କ ମଧ୍ୟରେ ଓଡ଼ିଶା ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା ।

ତାପସ କୁମାର ସାହା, ସୂଚନା ଅଧିକାରୀ

## କେନ୍ସ ଚଳଚ୍ଚିତ୍ର ଉତ୍ସବରେ ଓଡ଼ିଆ ସଂସ୍କୃତିର ବାସ୍ନା ‘ଗଡ୍‌ସ୍ ଓନ୍ ପିପୁଲ୍’ ପ୍ରଦର୍ଶିତ

ବିଶ୍ୱପ୍ରସିଦ୍ଧ ଜଗନ୍ନାଥ ସଂସ୍କୃତିର ଏକ ଚମତ୍କାର ପ୍ରଦର୍ଶନ ଫ୍ରାନ୍ସର କାନ୍ସଠାରେ ଆୟୋଜିତ ଆନ୍ତର୍ଜାତିକ ଚଳଚ୍ଚିତ୍ର ମହୋତ୍ସବରେ ସାମିଲ ହୋଇଛି । ଶ୍ରୀଜଗନ୍ନାଥଙ୍କ ନବକଳେବର ପ୍ରସଙ୍ଗ ସମ୍ବଳିତ ପ୍ରସ୍ତୁତ ପ୍ରାମାଣିକ ଚଳଚ୍ଚିତ୍ର ‘ଗଡ୍‌ସ୍ ଓନ୍ ପିପୁଲ୍’ ପ୍ରଦର୍ଶିତ ହୋଇଛି । ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ଏହି ଉଦ୍‌ଘାଟନ କାର୍ଯ୍ୟକ୍ରମରେ ଯୋଗଦେଇ ଏହି ଚିତ୍ର ପ୍ରଦର୍ଶନ ଫଳରେ ଜଗନ୍ନାଥ ସଂସ୍କୃତିର ସୁବାସ ବିଦେଶରେ ଚହଟିଲା ବୋଲି ଉଲ୍ଲେଖ କରିଛନ୍ତି । କେନ୍ସ ବ୍ୟତୀତ ଏହି ଚଳଚ୍ଚିତ୍ର ଫ୍ରାନ୍ସର ଡକ୍ସ କର୍ଣ୍ଣର ଓ ଗ୍ରେଟ୍ ୱାର୍ଲ୍ଡ ମାର୍କେଟ୍ ପ୍ରିମିୟରରେ ମଧ୍ୟ ପ୍ରଦର୍ଶିତ ହେବ । ଏପରି ଉଦ୍ୟମ ଫଳରେ ଓଡ଼ିଶାର ସଂସ୍କୃତି ଓ ପର୍ଯ୍ୟଟନର ବାସ୍ନା ବିଶ୍ୱସ୍ତରୀୟ ହେଲା ତଥା ଆନ୍ତର୍ଜାତିକ ଫିଲ୍ମ ନିର୍ମାତାମାନେ ଓଡ଼ିଶା ପ୍ରତି ଆକୃଷ୍ଟ ହେବେ ବୋଲି ମନ୍ତ୍ରୀ ଶ୍ରୀ ପଣ୍ଡା କହିଛନ୍ତି ।

ଓଡ଼ିଶାର ବିଭିନ୍ନ କୀର୍ତ୍ତି ପୀଠ ଓ ପର୍ଯ୍ୟଟନ ବିଭବ ତଥା ବର୍ଣ୍ଣିଳ ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟରେ ନିର୍ମାତାମାନେ ଚିତ୍ରର ସୁଟିଂ କରିପାରିବେ ବୋଲି ସେ ଆଶା ପ୍ରକାଶ କରିଛନ୍ତି । ଆବଶ୍ୟକ ପଡିଲେ ପରିସ୍ଥିତିକୁ ଅନୁକୂଳ କରିବା ପାଇଁ ରାଜ୍ୟ ସରକାରଙ୍କ ପର୍ଯ୍ୟଟନ ନୀତିରେ ଆବଶ୍ୟକ ସଂଶୋଧନ କରାଯାଇପାରିବ ବୋଲି ମନ୍ତ୍ରୀ ଶ୍ରୀ ପଣ୍ଡା କହିଛନ୍ତି । ଚଳଚ୍ଚିତ୍ର ଉତ୍ସବର ଉଦ୍‌ଘାଟନ ପର୍ବରେ ଫ୍ରାନ୍ସରେ ଅବସ୍ଥାପିତ ଭାରତୀୟ ରାଷ୍ଟ୍ରଦୂତ ମୋହନ କୁମାର, ପର୍ଯ୍ୟଟନ ବିଭାଗ ନିର୍ଦ୍ଦେଶକ ନିତୀନ ଭାନୁଦାସ ଜାୱାଲେ, ଚଳଚ୍ଚିତ୍ରର ନିର୍ଦ୍ଦେଶକ ପଦ୍ମଶ୍ରୀ ନୀଳମାଧବ ପଣ୍ଡା, ସହ-ପ୍ରଯୋଜକ ଅକ୍ଷୟ ପରିଜା ଓ ପର୍ଯ୍ୟଟନ ଅଧିକାରୀ ରତିକାନ୍ତ ପଟ୍ଟନାୟକ ପ୍ରମୁଖ ଉପସ୍ଥିତ ଥିଲେ ।

ସୂର୍ଯ୍ୟ ମିଶ୍ର, ସୂଚନା ଅଧିକାରୀ



# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**May - June - 2016**

**୭୨ ଭାଗ ୧୦ମ-୧୧ଶ ସଂଖ୍ୟା ବୈଶାଖ- ଆଷାଢ଼ ମଇ-ଜୁନ୍ - ୨୦୧୬**



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**

# ସୂଚୀ

**ମଇ-ଜୁନ୍- ୨୦୧୬**







ମହାକବି ଜୟଦେବ

ଏଠାରେ ଉଲ୍ଲେଖନୀୟ ଯେ, ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ରାଜ୍ୟର ସବୁ ପଞ୍ଚାୟତକୁ ୨୦୧୭ ସୁଦ୍ଧା ପାଇପ୍ ଯୋଗେ ବିଶୁଦ୍ଧ ପିଇବା ପାଣି ଯୋଗାଇଦେବା ପାଇଁ ପଦକ୍ଷେପ ନିଆଯାଇଛି । ୨୦୦୦ ମସିହାରେ ରାଜ୍ୟରେ ମାତ୍ର ୪୫୯ଟି ପାନୀୟ ଜଳ ପ୍ରକଳ୍ପ କାର୍ଯ୍ୟ କରୁଥିବା ବେଳେ ବର୍ତ୍ତମାନ ୧୦ ହଜାରରୁ ଅଧିକ ପ୍ରକଳ୍ପ କାର୍ଯ୍ୟ କରୁଛି । ପାଣି ସମସ୍ୟାର ସମାଧାନ ପାଇଁ ରାଜ୍ୟର ବିଭିନ୍ନ ସ୍ଥାନରେ ଟ୍ୟାଙ୍କର ଯୋଗେ ପିଇବା ପାଣି ଯୋଗାଇ ଦିଆଯିବା ସହିତ ଆବଶ୍ୟକ ସ୍ଥଳେ ନଳକୂପ ମରାମତି ପାଇଁ ୨୪ ଘଣ୍ଟିଆ ବ୍ୟବସ୍ଥା କରାଯାଇଛି । ଦୀର୍ଘକାଳୀନ ପଦକ୍ଷେପ ସ୍ୱରୂପ, ଜନସାଧାରଣଙ୍କୁ ବର୍ଷାଜଳ ଅମଳ କାର୍ଯ୍ୟକ୍ରମ ପାଇଁ ପ୍ରୋତ୍ସାହିତ କରାଯାଉଛି । ଓଡ଼ିଶାର ଜନସାଧାରଣ ରାଜ୍ୟ ସରକାରଙ୍କ ଉପରେ ଯେଉଁ ଆସ୍ଥା ପ୍ରକଟ କରିଛନ୍ତି, ତାହା ଅତୁଟ ରଖିବା ନିମନ୍ତେ ଦେଇଥିବା ପ୍ରତିଶ୍ରୁତି ସମୂହକୁ ଅବିଳମ୍ବେ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ ଜାରି ରହିଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଗତ ୧୬ ବର୍ଷ ଧରି ରାଜ୍ୟର ଶାସନଭାର ସମ୍ଭାଳିଥିବା ଓଡ଼ିଶା ସରକାର ଅନେକ ଲୋକାଭିମୁଖୀ କାର୍ଯ୍ୟକ୍ରମ ପ୍ରଚଳନ କରି ଜନସାଧାରଣଙ୍କ ବିଶ୍ୱାସ ଭାଜନ ହୋଇପାରିଛି । ଗତ ଦୁଇ ବର୍ଷର ଉଲ୍ଲେଖନୀୟ ସଫଳତା ଏହି ସଂସ୍କରଣରେ ସ୍ଥାନିତ ହୋଇଛି । ଏ ସମ୍ପର୍କରେ ସହାୟତାର ହସ୍ତ ପ୍ରସାର କରିଥିବା 'ଅଭିନନ୍ଦନିକା' ଏବଂ 'ମର୍ଦ୍ଦରାଜ' ପତ୍ରିକାର ସମ୍ପାଦକ ଦ୍ୱୟଙ୍କୁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ଭାଷାଭିତ୍ତିକ ରାଜ୍ୟଭାବେ ଗଠିତ ଓଡ଼ିଶା ଆଜି ୮୦ ବର୍ଷରେ ପଦାର୍ପଣ କରିଛି । ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱାଧୀନ ସରକାର ୨୦୦୦ ମସିହାରେ ଶାସନଭାର ଗ୍ରହଣ କରିବା ଦିନଠାରୁ ଓଡ଼ିଆ ଜାତି ଏବଂ ଭାଷାର ଉନ୍ନତି ପାଇଁ ବହୁବିଧ ଉଦ୍ୟମ ଆରମ୍ଭ କରିଥିଲେ । ଫଳସ୍ୱରୂପ ଆଜି ପ୍ରାଚୀନ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିବା ସହ ଓଡ଼ିଆ ଭାଷାର ଉନ୍ନତି ପାଇଁ ୨୦୧୬ ଅଗଷ୍ଟ ୧୫ ସୁଦ୍ଧା ସଂଶୋଧିତ ଓଡ଼ିଶା ସରକାରୀ ଭାଷା ଅଧିନିୟମ- ୧୯୫୪ କାର୍ଯ୍ୟକାରୀ କରାଯିବା ପାଇଁ ନିଷ୍ପତ୍ତି ହୋଇଛି । ଓଡ଼ିଆ ଭାଷା ଓ ସାହିତ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯିବାର ଯୋଜନା ମଧ୍ୟ ଅଛି । ଓଡ଼ିଆ ଭର୍ଚ୍ୟୁଆଲ ଏକାଡେମୀ ଖୁବ୍ ଶୀଘ୍ର ପ୍ରତିଷ୍ଠା ହେବାକୁ ଯାଉଛି । ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଖାଲି ଥିବା ଓଡ଼ିଆ ଅଧ୍ୟାପକ ପଦବୀ ପୂରଣକୁ ପ୍ରାଥମିକତା ପ୍ରଦାନ କରାଯାଇଛି। ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ଓ ଫକୀର ମୋହନ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ଭାଷା ସ୍କୁଲ ପ୍ରତିଷ୍ଠା କରାଯାଉଛି ଏବଂ ଓଡ଼ିଆ ପ୍ରଫେସର ଓ ଅନ୍ୟାନ୍ୟ ଶିକ୍ଷକ ପଦବୀ ସୃଷ୍ଟି ପାଇଁ ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇଛି । ଓଡ଼ିଆ ଭାଷାରେ 'ବ୍ୟାସକବି ଫକୀର ମୋହନ ସେନାପତି ବୃତ୍ତି' ପ୍ରଚଳନ କରାଯାଇଛି । ଜବାହରଲାଲ ନେହରୁ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଚେୟାର ପ୍ରତିଷ୍ଠା ନିଷ୍ପତ୍ତି ଏକ ସାଧୁ ଉଦ୍ୟମ । ଆମ ଭାଷା ଓଡ଼ିଆର ଉତ୍ତୋରତ୍ତର ଉନ୍ନତି ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ବ୍ୟାପକ ଗବେଷଣା ଓ ପ୍ରକାଶନ ନିମନ୍ତେ ସରକାର ଉଦ୍ୟମ ଆରମ୍ଭ କରିଛନ୍ତି । ଏହି ସରକାର ସମୟରେ ଓଡ଼ିଆ ଭାଷା ପ୍ରତିଷ୍ଠାନ ଦ୍ୱାରା ନୂଆ ଓଡ଼ିଶା ପ୍ରଶାସନିକ ଶବ୍ଦକୋଷ ପ୍ରକାଶନ ପାଇଁ ହୋଇଛି ଆନ୍ତରିକ ପ୍ରଚେଷ୍ଟା । ଭାଷା ଗୋଟିଏ ଜାତିର ପରିଚୟ । ଓଡ଼ିଆ ଭାଷାର ଅଭିବୃଦ୍ଧି ତଥା ବିକାଶ ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ଐତିହାସିକ ପଦକ୍ଷେପ ପାଇଁ ତାଙ୍କୁ ଧନ୍ୟବାଦ ଜ୍ଞାପନ କରୁଛୁ ।

**କେବଳ କଥାରେ ନୁହେଁ, ମା', ମାଟି ଓ ମାତୃଭାଷାର ଉନ୍ନତି କଳ୍ପେ ସଦା ଉଦ୍ୟମରତ ରାଜ୍ୟ ସରକାରଙ୍କୁ ଆମର ଅଜସ୍ର ଧନ୍ୟବାଦ ।**

ଲେନିନ୍ ମହାନ୍ତି

ସମ୍ପାଦକ